ଅନ୍ତର୍ଭାରତୀୟ ପୁସ୍ତକମାଳା

# ଗଙ୍ଗୱା ଗଙ୍ଗାମାତା


**ଶଙ୍କର ମୋକାଶୀ 'ପୁଣେକର'**

ଅନୁବାଦ

**ଗିରିବାଲା ମହାନ୍ତି**





**ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ**

ISBN 81-237-2760-7

1999 (ଶକାବ୍ଦ 1921)

*Original Kannada* : Gangwa Gangamai
*Oriya Translation* : Gangwa Gangamata

**ଟ. 65.00**

ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ୍,
ନୂଆ ଦିଲ୍ଲୀ-110 016 କର୍ତ୍ତୃକ ପ୍ରକାଶିତ ।

# ଭୂମିକା

ନିର୍ଦ୍ଦିଷ୍ଟ କେଉଁ ସମୟରୁ କନ୍ନଡ଼ ସାହିତ୍ୟରେ ଉପନ୍ୟାସ ରଚନା ପରମ୍ପରାର ସୂତ୍ରପାତ ହୁଏ, ଏ ପ୍ରଶ୍ନର ଉତ୍ତର ସରଳ ନହେଲେ ମଧ୍ୟ ଏକଥା ନିଶ୍ଚିତ ଭାବରେ କୁହାଯାଇ ପାରେ ଯେ ଊନବିଂଶ ଶତାବ୍ଦୀର ପ୍ରାରଂଭିକ ସମୟହିଁ ଏହାର ଅଗ୍ରମାରଂଭ କାଳ। କେତେକ ସମାଲୋଚକଙ୍କ ମତରେ 1823 ମସିହାରେ କେମ୍ପୁ ନାରାୟଣଙ୍କ ଲିଖିତ 'ମୁଦ୍ରାମଞ୍ଜୁଷ' କନ୍ନଡ଼ ସାହିତ୍ୟର ସର୍ବପ୍ରଥମ ଉପନ୍ୟାସ। ଏଇ ଗଦ୍ୟକଥାର ଗଠନ କୌଶଳ ଉପନ୍ୟାସ ରଚନାର ସମୀପବର୍ତ୍ତୀ ହେଲେ ମଧ୍ୟ ପରବର୍ତ୍ତୀ କାଳରେ ଲିଖିତ ଉପନ୍ୟାସର ରୂପରେଖର ଧାରଣା କେମ୍ପୁ ନାରାୟଣଙ୍କଠାରେ ନଥିଲା। ଅବଶ୍ୟ ଏକଥା ସ୍ୱୀକାର୍ଯ୍ୟ ଯେ ଗଦ୍ୟକୁ ମାର୍ଜିତ ରୂପ ଦାନକରି ତାହାଦ୍ୱାରା ଉପନ୍ୟାସ ରଚନା ପାଇଁ ଆବଶ୍ୟକ ସାହିତ୍ୟର ପୃଷ୍ଠଭୂମି ସୃଷ୍ଟି କରିବାର ଯଶ କେମ୍ପୁ ନାରାୟଣଙ୍କୁ ମିଳିଆସିଛି। ଶ୍ରେଷ୍ଠ ଗଦ୍ୟରଚନା ମଧ୍ୟରେ ''ରାମାଶ୍ୱମେଧ''ର ଲେଖକ ପୁଟ୍ଟଣ୍ଣା (1870-1901) 'ଗୋଦାବରୀ' ନାମରେ ଏକ ଅର୍ଦ୍ଧସଂପୂର୍ଣ୍ଣ ଉପନ୍ୟାସ ଲେଖିଥିଲେ। ଭେଙ୍କଟାଚାର୍ଯ୍ୟଙ୍କ ରଚନା ସମୂହକୁ ପୁଟଣ୍ଣା ଅତି ଆଗ୍ରହର ସହିତ ପଢ଼ିଥିଲେ। ତହିଁରୁ ତାଙ୍କୁ ଉପନ୍ୟାସ ରଚନାର ପ୍ରେରଣା ମିଳିଥିଲା।

ବି. ଭେଙ୍କଟାଚାର୍ଯ୍ୟ (1900) ବଙ୍କିମଚନ୍ଦ୍ର ଓ ଅନ୍ୟାନ୍ୟ ବଙ୍ଗୀୟ ଲେଖକଙ୍କର ରଚନାବଳୀକୁ ଅନୁବାଦ କରି କନ୍ନଡ଼ ସାହିତ୍ୟର ପାଠକମାନଙ୍କୁ ଉପନ୍ୟାସ ସହ ପରିଚିତ କରାଇଥିଲେ। ପାରଂପରିକ ମୂଲ୍ୟବୋଧରେ ବିଶ୍ୱାସୀ ବଙ୍କିମଚନ୍ଦ୍ରଙ୍କର 'ବିଷବୃକ୍ଷ', 'ଦେବୀଚୌଧୁରାଣୀ', 'କୃଷ୍ଣକାନ୍ତର ଉଇଲ' ଇତ୍ୟାଦି ସାମାଜିକ ଉପନ୍ୟାସ, 'ରାଜସିଂହ', 'ଦୁର୍ଗେଶନନ୍ଦିନୀ', 'ଆନନ୍ଦମଠ' ଇତ୍ୟାଦି ଐତିହାସିକ ଉପନ୍ୟାସ କନ୍ନଡ଼ ସାହିତ୍ୟରେ ଜନପ୍ରିୟ ହୋଇଉଠିଲା। ବଙ୍ଗଳା ଉପନ୍ୟାସର ଭାଷାଥିଲା ସଂସ୍କୃତ ବହୁଳ। ଏଇ ଶୈଳୀକୁ ନିଜସ୍ୱ କରିନେଇ କନ୍ନଡ଼ଭାଷା ବଳିଷ୍ଠତା ଲାଭକଲା। ଏଠାରେ ଶିବରାମ କାରନ୍ଥଙ୍କର ଉକ୍ତି ଉଲ୍ଲେଖଯୋଗ୍ୟ– ବଙ୍ଗଳା ଉପନ୍ୟାସର କନ୍ନଡ଼ ଅନୁବାଦ ପଢ଼ିବା ଫଳରେ ଆମର ଶୈଳୀ ପ୍ରତି ମୋହ ଦେଖାଦେଇଥିଲା।

ମହୀଶୂରର ଭେଙ୍କଟାଚାର୍ଯ୍ୟ ବଙ୍ଗଳା ଉପନ୍ୟାସକୁ କନ୍ନଡ଼ରେ ଅନୁବାଦ କରୁଥିବା ବେଳେ ଉତ୍ତର କର୍ଣ୍ଣାଟକର ବି.ଟି. ଗଳଗନାଥ (1869-1942) ମରାଠୀ

ଲେଖକମାନଙ୍କର ବିଶେଷତଃ ହରିନାରାୟଣ ଆପ୍‌ଟେଙ୍କର ଉପନ୍ୟାସ ସମୂହକୁ କନ୍ନଡ଼ରେ ଅନୁବାଦ କରିଥିଲେ। 'ରାଣା ରାଜସିଂହ', 'ଲକ୍ଷ୍ମୀବାଈ', 'ଭଗବତୀ କାତ୍ୟାୟନୀ' ଆଦି ଅନୁବାଦର ଭାଷାରେ ଭେଙ୍କଟାଚାର୍ଯ୍ୟଙ୍କ ଅନୂଦିତ କନ୍ନଡ଼ ଭାଷା ଅପେକ୍ଷା ଅଧିକ ସରଳତା ଓ ସ୍ୱାଭାବିକତା ଲକ୍ଷିତ ହୁଏ। ମରାଠୀଭାଷା ସଂସ୍କୃତ ନିଷ୍ପନ୍ନ ହୋଇଥିବାରୁ ଏପରି ହୋଇପାରିଥିବା ସମ୍ଭବ। ଉତ୍ତର କର୍ଣ୍ଣାଟକରେ ପ୍ରଚଳିତ ଶୈଳୀକୁ ଗଲଗନାଥ ପରିମାର୍ଜିତ କରିଥିଲେ। ଏହି ପ୍ରଦେଶର କେତେକ ଔପନ୍ୟାସିକ ଗଲଗନାଥଙ୍କ ଶୈଳୀକୁ ଅନୁକରଣ କରିଥିଲେ। ଏଥିରୁ ଏହା ସୂଚିତ ହୁଏ ଯେ, ତାଙ୍କର ଭାଷା ଅତିଶୟ ପ୍ରଭାବଶାଳୀ ଥିଲା। ପ୍ରସିଦ୍ଧ ବୀରମାନଙ୍କର ରୋମାଞ୍ଚକର ସାହସିକ କୃତିର ଚିତ୍ରଣ, ଜନଜାଗରଣର ଆକାଂକ୍ଷା, ଭାଷାର ସରଳତା ଓ ମହାରାଷ୍ଟ୍ରର ଭୌଗୋଳିକ ନୈକଟ୍ୟ ଆଦି କାରଣରୁ ସେ ଉତ୍ତର ଭାରତର ଜନପ୍ରିୟ ଅନୁବାଦକ ହୋଇ ପଡ଼ିଥିଲେ।

ଭେଙ୍କଟାଚାର୍ଯ୍ୟ ଓ ଗଲଗନାଥଙ୍କ ଯୁଗକୁ ''ଅନୁବାଦ ଯୁଗ'' କୁହାଯାଇପାରେ। ଏଇ ଅନୁବାଦକମାନଙ୍କ ଦ୍ୱାରା ଉପନ୍ୟାସ ଜନସାଧାରଣଙ୍କ ନିକଟରେ ପହଞ୍ଚିପାରିଥିଲା। ପାଠକ ସାଧାରଣ ଉପନ୍ୟାସ ପ୍ରତି ଆଗ୍ରହୀ ହେଲେ। ଦେଶରେ ସାଂସ୍କୃତିକ, ରାଜନୈତିକ ଜାଗରଣ ଆଣିବାରେ ଅନୁବାଦକୃତି ସହାୟତା କଲା। ମୁଖ୍ୟତଃ ଏଇ ଅନୁବାଦ କର୍ମଦ୍ୱାରା କନ୍ନଡ଼ ସାହିତ୍ୟରେ ଉପନ୍ୟାସ ସୃଷ୍ଟିର କ୍ଷେତ୍ର ପ୍ରସ୍ତୁତ ହେଲା। ବିଜୟ ନଗର ସାମ୍ରାଜ୍ୟକୁ ଆଧାର କରି ଗଲଗନାଥ 'ମାଧବ କରୁଣ ବିଳାସ' ଓ 'କୁମୁଦିନୀ' ନାମକ ଦୁଇଖଣ୍ଡି ମୌଳିକ ଉପନ୍ୟାସ ରଚନା କଲେ। ଏଥିରେ ଦେଶଭକ୍ତି, ଧର୍ମାଭିମାନ, ଦୈବଭକ୍ତି ଇତ୍ୟାଦି ବିଶେଷ ରୂପରେ ଦେଖାଯାଏ। ଏଥିରେ କନ୍ନଡ଼ର ପ୍ରାଚୀନ ବୈଭବକୁ ଦେଖାଇବାର ପ୍ରୟାସ ନିହିତ। କିନ୍ତୁ ଅସ୍ପୃଶ୍ୟତା ନିବାରଣାଦି ସମକାଳିନ ସମସ୍ୟା ସହ ଐତିହାସିକ ସତ୍ୟର ଯଥାଯଥ ସମାବେଶ ଗଲଗନାଥଙ୍କ ମୌଳିକ ଉପନ୍ୟାସରେ ହୋଇପାରିନାହିଁ।

ଗଲଗନାଥଙ୍କର ମୌଳିକ ଉପନ୍ୟାସ ପ୍ରକାଶିତ ହେବା ପୂର୍ବରୁ ଦକ୍ଷିଣ କର୍ଣ୍ଣାଟକରେ ମୌଳିକ ଉପନ୍ୟାସ ରଚନା ରୀତିର ପ୍ରଚଳନ ଥିଲା। ଗୁଲୱାଡ଼ୀ ଭେଙ୍କଟରାଓଙ୍କର 'ଇନ୍ଦିରା ବାଈ' (1899) କନ୍ନଡ଼ରେ ପ୍ରଥମ ସାମାଜିକ ଉପନ୍ୟାସ। ଯେତେଦୂର ମନେହୁଏ, ଏହାହିଁ ପ୍ରଥମ ମୌଳିକ ଉପନ୍ୟାସ। ସେ ଯାହାହେଉନା କାହିଁକି, ଏହା ସ୍ପଷ୍ଟଭାବରେ କୁହାଯାଇ ପାରେ ଯେ ଊନବିଂଶ ଶତାବ୍ଦୀର ଶେଷବେଳକୁ କନ୍ନଡ଼ରେ ଉପନ୍ୟାସ ରଚନାର ଅୟମାରମ୍ଭ ହୋଇସାରିଥିଲା। 'ବାଗ୍‌ଦେବୀ' (1905)ର ରଚୟିତା ବୋଲାର ବାବୁରାଓ ଓ 'ରୋହିଣୀ' (1907)ର ରଚୟିତା ଗୁଲୱାଡ଼ୀ ଅର୍ଣ୍ଣାଜୀରାୟ ଦକ୍ଷିଣ କର୍ଣ୍ଣାଟକରେ ଉପନ୍ୟାସ ସାହିତ୍ୟକୁ ବର୍ଦ୍ଧିଷ୍ଣୁ କରାଇଥିଲେ। ପ୍ରଶାସନିକ ଦୃଷ୍ଟିରୁ କନ୍ନଡ଼ଭାଷୀ ପ୍ରଦେଶ ମହାରାଷ୍ଟ୍ର, ମାଡ୍ରାଜ ଓ ପୁରାତନ ମହୀଶୂରର ଅନ୍ତର୍ଗତ ହୋଇଥିଲେହେଁ ବିଂଶଶତାବ୍ଦୀର ପ୍ରଥମ ଦଶକର ଶେଷ ବେଳକୁ ଏଥିରେ ପର୍ଯ୍ୟାପ୍ତ ସଂଖ୍ୟାରେ ଅନୂଦିତ ଓ ମୌଳିକ ଉପନ୍ୟାସ ଲେଖା ଆରମ୍ଭ ହୋଇସାରିଥିଲା।

କନ୍ନଡ଼ ଉପନ୍ୟାସର ବିକାଶ ଦୃଷ୍ଟିରୁ 1915ରେ ପ୍ରକାଶିତ 'ମାଡ଼ିଦ୍‌ଦୁଣ୍ଣୋ ମହାରାୟ' *ଉପନ୍ୟାସ ଏକ ମହତ୍ତ୍ୱପୂର୍ଣ୍ଣ କୃତି। ଏଥିରେ ଏମ୍.ଏସ୍. ପୁଟ୍ଟଣ୍ଣା ମହୀଶୂରର ପୁରାତନ ଶିଷ୍ଟ ଶୈଳୀର ପ୍ରୟୋଗ କରିଛନ୍ତି। ସେ ପ୍ରଥମଥର ପାଇଁ ପ୍ରଚଳିତ ଭାଷାକୁ ବାର୍ତ୍ତାଳାପରେ ସମ୍ଭାବ୍ୟରୀତିରେ ପ୍ରୟୋଗ କରିବାର ପ୍ରୟାସ କରିଥିଲେ। ତାଙ୍କ ମତରେ ଉପନ୍ୟାସର ମୂଲ୍ୟ ତଥା ମର୍ଯ୍ୟାଦା ନିରୂପଣ ନିମନ୍ତେ ପୌରାଣିକ ଆଦର୍ଶ ଆବଶ୍ୟକ; ତଥାପି ସେ ଉପନ୍ୟାସର କଥାବସ୍ତୁ ଜନଗଣଙ୍କ ମଧ୍ୟରୁ ଗ୍ରହଣ କରିଥିଲେ। ଏଠାରେ ଉଲ୍ଲେଖନୀୟ ଯେ 'ରାମାୟଣ ଦର୍ଶନ'ର କବି କେ.କେ.ବୀ. ପୁଟ୍ଟପ୍ପା ନିଜ ଉପନ୍ୟାସରେ କଥାବସ୍ତୁକୁ ଜନଜୀବନରୁ ଗ୍ରହଣ କରିଥିଲେ।

ପୁଟ୍ଟପ୍ପାଙ୍କର 'କାନୁରୁ ସୁବ୍ବମ୍ମା ହେଗ୍ଗଡ଼ତୀ' ଓ 'ମଲେୟଲଲ୍ଲିମଦୁମଗଲୁ' ନାମକ ବୃହଦ୍‌କାୟ ଉପନ୍ୟାସ ଦ୍ୱୟର ପ୍ରକାଶକାଳ ମଧ୍ୟରେ ତିନୋଟି ଦଶକର ବ୍ୟବଧାନ ରହିଛି। ପୁଟ୍ଟପ୍ପା ନିଜର ବାଲ୍ୟ ଓ ଯୌବନକାଳ 'ମଲେନାଡ଼' କୋଳରେ ବିତାଇଥିଲେ। ଏଇ ଦୁଇ ଉପନ୍ୟାସରେ ଲେଖକଙ୍କର ସେଇ ଅନୁଭୂତି ବିଶେଷଭାବରେ ବ୍ୟକ୍ତ ହୋଇଅଛି। ସୌନ୍ଦର୍ଯ୍ୟର ଆରାଧକ ପୁଟ୍ଟପ୍ପାଙ୍କର ଉପନ୍ୟାସର ସବୁଠାରୁ ବଡ଼ଗୁଣ ହେଲା ସେଗୁଡ଼ିକ କାବ୍ୟରୂପଶ୍ରୀ ଲାଭ କରିଅଛି।

କାହାଣୀକାର ଭାବରେ ପ୍ରସିଦ୍ଧ ମସ୍ତି ଭେଙ୍କଟ ଆୟଙ୍ଗାରଙ୍କ ମତରେ ଉପନ୍ୟାସ ଚରିତ୍ରର ପରିପକ୍ୱ ଅନୁଭୂତିର ଆଧାର ଉପରେ ଆଧାରିତ ହେବା ଉଚିତ। ମସ୍ତିଙ୍କର ଲେଖନୀ ଅବିରାମ ଗତିଶୀଳ। କେତେବର୍ଷ ପୂର୍ବେ ସେ 'ସୁବ୍ବଣ୍ଣା' ନାମରେ ଏକ ସୁନ୍ଦର କୃତି ରଚନା କରିଥିଲେ। ପରବର୍ତ୍ତୀ କାଳରେ ସେ 'ମଲେନାଡ଼'ର ଐତିହାସିକ ପୃଷ୍ଠଭୂମି ଉପରେ 'ଚେନ୍ନବସଓନାୟକ' ରଚନା କରିଥିଲେ। 'କୋଡ଼ଗ'ର ଇତିହାସକୁ କଥାବସ୍ତୁ ଭାବରେ ଗ୍ରହଣ କରି ତାଙ୍କର ଅନ୍ୟ ଏକ ଉପନ୍ୟାସ 'ଚିକ୍କବୀର ରାଜେନ୍ଦ୍ର' ଲିଖିତ। କର୍ଣ୍ଣାଟକର ସଂସ୍କୃତି ଓ ତାହାର ଅନ୍ତଃସାର ହିଁ ମସ୍ତିଙ୍କର ଉପନ୍ୟାସର ବିଶେଷତ୍ୱ।

କନ୍ନଡ଼ର ପ୍ରଭାବଶାଳୀ ଔପନ୍ୟାସିକ ଶିବରାମ କାରନ୍ତଙ୍କ ମତରେ ଜୀବନର ଅନୁଭୂତିହିଁ ସାହିତ୍ୟ ସୃଷ୍ଟିର ଆଧାର ହେବା ବିଧେୟ। ବାସ୍ତବ ଓ ଆଡ଼ମ୍ବରରହିତ ଶୈଳୀ ହିଁ କାରନ୍ତଙ୍କ ଉପନ୍ୟାସର ସ୍ୱାଭାବିକ ଗୁଣ। ସମାଜ ସଂସ୍କାରକୁ ମୁଖ୍ୟ ଉଦ୍ଦେଶ୍ୟଭାବରେ ଗ୍ରହଣ କରି ଲେଖାଯାଇଥିବା ଉପନ୍ୟାସରେ ମଧ୍ୟ ଲେଖକଙ୍କର ସୃଜନଶୀଳତା ସଜାଗ ଓ ଅନୁଭୂତିର ଅଭିବ୍ୟକ୍ତି ବିଷୟାନୁକୂଳ ଅଟେ। ସମାଜ ଚିନ୍ତନ କାରନ୍ତଙ୍କ ଉପନ୍ୟାସକୁ ବୌଦ୍ଧିକତା ପ୍ରଦାନ କରିଛି। 'ଔପନ୍ୟାସିକ ଅନ୍ୱିତି' ଏହାଙ୍କ ସାଧନାର ଦ୍ୱିତୀୟ ସ୍ୱରୂପ। ସାହିତ୍ୟରେ ସେ କୌଣସି ମାର୍ଗ ନିର୍ଦ୍ଧାରଣ କରିନାହାନ୍ତି। କାରନ୍ତଙ୍କ ମତାନୁସାରେ ସେପରି କରାଯାଇ ନପାରେ। ତାଙ୍କର ଅଧିକାଂଶ ଉପନ୍ୟାସରେ ଦକ୍ଷିଣ କର୍ଣ୍ଣାଟକର ଜନଜୀବନ ଚିତ୍ରିତ ହୋଇଛି। ସାଧାରଣ ଲୋକଙ୍କର ସୁଖଦୁଃଖ ସହିତ ସେଠାକାର ମାଟି, ପାଣି, ପ୍ରାଣୀ, ପକ୍ଷୀ, ଗଛପତ୍ର ମୂର୍ତ୍ତିମନ୍ତ ହୋଇଉଠିଛନ୍ତି। କାରନ୍ତଙ୍କର ଶ୍ରେଷ୍ଠ ସାହିତ୍ୟ ସୃଷ୍ଟିରେ ପୁଟ୍ଟପ୍ପାଙ୍କ ଉପନ୍ୟାସପରି ବର୍ଣ୍ଣନା

ବିଭବ ସ୍ୱତନ୍ତ୍ରରୂପରେ ନଥାଇ ସୃଷ୍ଟିର ସମଗ୍ରତାରେ ଏକାତ୍ମ ହୋଇ ଯାଇଛି। 'ସରସମ୍ମର ସମାଧି' 'ଚୋମାର ଢୋଲ', ମରଲିମର୍ଣ୍ଣିଗେ' (ପ୍ରତ୍ୟାବର୍ତ୍ତନ), 'ବେଟ୍ଟାଦଜୀବ' (ପାହାଡ଼ୀଜୀବନ), 'ଅଳୀଦମେଲେ' (ମରଣପରେ)ରେ ନୂତନ ଶୈଳୀର ପ୍ରୟୋଗ କରାଯାଇଛି। ପ୍ରୟୋଗଶୀଳତା କାରନ୍ତଙ୍କ ବ୍ୟକ୍ତିତ୍ୱର ବିଶେଷତ୍ୱ ହୋଇଥିଲେହେଁ ତାହା ଔପନ୍ୟାସିକ କାରନ୍ତଙ୍କ ସାଧନାର ବିଶେଷତ୍ୱ ନୁହେଁ।

ନୂତନ ଲେଖକ ଗୋଷ୍ଠୀ ନୂତନ ଶୈଳୀର ପ୍ରୟୋଗକୁ ଯୁକ୍ତିସଙ୍ଗତ ଭାବରେ ନିଜସ୍ୱ କରିନେଇ କନ୍ନଡ଼ ସାହିତ୍ୟକୁ ନବୀନତା ପ୍ରଦାନ କରିଛନ୍ତି। ତଥାପି ଏଠାରେ ଏହାର ପୂର୍ବବର୍ତ୍ତୀ ସାହିତ୍ୟକୁ ବାଟ ଦେଖାଇ ଆଗକୁ ଆଗେଇ ନେଇଥିବା ପ୍ରଗତିଶୀଳ ସାହିତ୍ୟିକମାନଙ୍କ ବିଷୟରେ ପଦେଦିପଦ କହିବା ଉଚିତ। ଏମ୍.ଏସ୍, ପୁଟ୍ଟଣ୍ଣାଙ୍କ ଯୁଗ ପର୍ଯ୍ୟନ୍ତ ଉପନ୍ୟାସକୁ କନ୍ନଡ଼ ଉପନ୍ୟାସର ପୂର୍ବଯୁଗ କୁହାଯାଇପାରେ। କେ.ବି.ପୁଟ୍ଟପ୍ପା, ମସ୍ତି, କାରନ୍ତ ଆଦି ସାହିତ୍ୟିକମାନଙ୍କର ଉପନ୍ୟାସ ସୃଷ୍ଟିପରେ, ଅର୍ଥାତ୍ ସ୍ଥୂଳରୂପରେ 1930 ପରେ କନ୍ନଡ଼ ଉପନ୍ୟାସ ବିଶେଷ ସମୃଦ୍ଧିଶାଳୀ ହେବାକୁ ଲାଗିଲା। ଉପନ୍ୟାସର ବିକାଶରେ ପ୍ରଗତିଶୀଳ ଲେଖକମାନଙ୍କର ଦାନକୁ ଅବହେଳା କରାଯାଇନପାରେ।

'ସଂଧ୍ୟାରାଗ', 'ନଟ ସାର୍ବଭୌମ'ର ଲେଖକ ଏ.ଏନ୍.କୃଷ୍ଣ ରାଓଙ୍କ ଯୋଗୁଁ ଉପନ୍ୟାସର ଜନପ୍ରିୟତା ଏପରି ବୃଦ୍ଧି ପାଇଲା ଯାହା ପୂର୍ବେ କେବେ ନଥିଲା। ଆଲୋଚନାତ୍ମକ ତଥା ଜନରୁଚି ଦୃଷ୍ଟିରୁ ଉପନ୍ୟାସର ପାଠକର ସଂଖ୍ୟା ବୃଦ୍ଧି ପାଇଲା। କୃଷ୍ଣରାଓ ଏବଂ ଅନ୍ୟ କେତେଜଣ ଔପନ୍ୟାସିକ ଗଣିକାର ଜୀବନ, କଳାକାରର ଜଗତ, ପୁଞ୍ଜିବାଦର ଦୁଷ୍ପରିଣାମ ଇତ୍ୟାଦି ବିଷୟକୁ ନିଜର ଉପନ୍ୟାସର ବିଷୟବସ୍ତୁ ଭାବରେ ବାଛିଥିଲେ। ସାହିତ୍ୟର ବିଷୟବସ୍ତୁ ସଂପର୍କରେ ଯେଉଁ ଏକପ୍ରକାର ପବିତ୍ର ଧାରଣା ଚଳି ଆସୁଥିଲା, ତାହାକୁ ବଦଳାଇଦେବା ହେତୁ ନୂତନ ଲେଖକମାନଙ୍କର ଆଗମନ କାଳରେ ଯେଉଁ ଏକ ବିରୋଧ ସୃଷ୍ଟି ହେବାର ସମ୍ଭାବନା ଥିଲା, ତାହାର ତୀବ୍ରତାକୁ ପ୍ରଗତିଶୀଳ ଲେଖକମାନେ କମାଇଦେଇଥିଲେ। କିନ୍ତୁ ଜନପ୍ରିୟତା ପାଇଁ ପ୍ରଯୁକ୍ତ ତାଙ୍କର ଶୈଳୀ ସ୍ୱଷ୍ଟତା, ସମ୍ଭାଷଣପ୍ରିୟତା, କଥନରୋଚକତା ଏବଂ ଉତ୍ତେଜନା ପାଇଁ ଚିରକାଳ ପ୍ରସିଦ୍ଧ। ଏହି କାରଣରୁ ସର୍ବଶ୍ରୀ କୃଷ୍ଣରାଓ, ସୁବ୍ବାରାଓ, ବସବରାଜ, କଟ୍ଟୀମନୀ ନିରଞ୍ଜନ, କୃଷ୍ଣମୂର୍ତ୍ତି ପୁରାଣିକ ଆଦିଙ୍କ ଉପନ୍ୟାସ ସମ୍ବାଦପତ୍ର ସ୍ତରରୁ ଅଧିକ ଉପରକୁ ଉଠିପାରିନାହିଁ।

ପ୍ରାୟ 1960 ମସିହା ବେଳକୁ ପ୍ରକାଶିତ ଉପନ୍ୟାସଗୁଡ଼ିକ ମଧ୍ୟରେ ରାଓ ବାହାଦୂରଙ୍କର 'ଗ୍ରାମାୟଣ' ଏକ ମହତ୍ତ୍ୱପୂର୍ଣ୍ଣ କୃତି। ଗୋଟିଏ ଗ୍ରାମରେ ଘଟିଥିବା ଘଟଣାଗୁଡ଼ିକ ମଧ୍ୟରେ ଅନ୍ୟାୟର ଓଜନ ବେଶୀ ହୁଏ, ପରିଣାମ ସ୍ୱରୂପ ପ୍ରକୃତିର କୋପରେ ସାରା ଗାଁ ଉଜୁଡ଼ି ଯାଏ। ଏଇ ଦୁଃଖଦ ଅନୁଭବକୁ ଉପନ୍ୟାସରେ କ୍ଳିଷ୍ଟଭାଷାରେ ବ୍ୟକ୍ତ କରାଯାଇଛି। ଏହା ସହିତ ପ୍ରାଦେଶିକତା ଓ ପ୍ରତୀକାତ୍ମକତା ସହ ସର୍ବକାଳୀନତାର ସଫଳ ସମନ୍ୱୟ କରାଯାଇଛି।

ଏହି ଶତାବ୍ଦୀର ଷଷ୍ଠ ଦଶକରେ ବିକଶିତ ନବ୍ୟସଂପ୍ରଦାୟର କଳାପ୍ରୟୋଗକୁ

ସ୍ଫୂର୍ତ୍ତି ଦେଇଛନ୍ତି ଲେଖକ, କନ୍ନଡ଼ର ଶ୍ରେଷ୍ଠକବି ଗୋପାଳକୃଷ୍ଣ ଅଡ଼ିଗା, କିନ୍ତୁ କୌଣସି ପ୍ରଭାବର ଛାୟାରେ ବହୁକ୍ଷଣଧରି ରହିବା ନବ୍ୟସ୍ୱଭାବର ବିପରୀତ। ୟୁ.ଆର.ଅନନ୍ତ ମୂର୍ତ୍ତି, ପି.ଲଙ୍କେଶ, ଗିରୀ ଆଦି ଏ କ୍ଷେତ୍ରରେ ଅତିଶୀଘ୍ର ନିଜର ପ୍ରଭାବ ପକାଇଲେ। ମସ୍ତିଙ୍କ ପରି କାହାଣୀର ପରିସରରୁ ଉପନ୍ୟାସର ପରିସରକୁ ଆସିଥିବା ଏଇସବୁ ନୂଆ ଲେଖକମାନଙ୍କ ମଧ୍ୟରେ ଅତ୍ୟନ୍ତ ପ୍ରଭାବଶାଳୀ ଉପନ୍ୟାସକାର ଅନନ୍ତ ମୂର୍ତ୍ତିଙ୍କର ପ୍ରସିଦ୍ଧ ଉପନ୍ୟାସ 'ସଂସ୍କାର'ରେ ଜୀବନର ଅନୁଭବକୁ ବୌଦ୍ଧିକତାର ଆଧାର ଉପରେ ଏକ ସଂବେଦନଶୀଳ ବ୍ୟକ୍ତିତ୍ୱ ଦ୍ୱାରା, ଓ ସାଂସ୍କୃତିକ ନିଗ୍ରହ ଦ୍ୱାରା, ଏକ ନୂତନ ଠାଣିରେ ପ୍ରସ୍ତୁତ କରାଯାଇଛି। ଅନନ୍ତ ମୂର୍ତ୍ତିଙ୍କର ଦ୍ୱିତୀୟ ଉପନ୍ୟାସ 'ଭାରତୀପୁର' ସଂପ୍ରତି ପ୍ରକାଶ ପାଇଛି। ଏ.କେ.ରାମାନୁଜନଙ୍କ 'ହଳଦିମୀନ' (ହଳଦିଆ ମାଛ) ଶାରୀଙ୍କ ଅପ୍ରକାଶିତ ଇଂରାଜୀ ଉପନ୍ୟାସର ଅନୁବାଦ ହେଲେ ମଧ୍ୟ ଶୈଳୀ ତଥା ସ୍ଥାୟୀ ଅନ୍ତର୍ମୁଖୀ ଭାବର ବିବେଚନା ଦୃଷ୍ଟିରୁ ଏହା କନ୍ନଡ଼ ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି। ପି.ଲଙ୍କେଶଙ୍କର 'ବିରୁକୁ' (ଫାଟ), ତେଜସ୍ୱୀଙ୍କର 'ସ୍ୱରୂପ', ଗିରୀଙ୍କର 'ଗତିସ୍ଥିତି', ଯଶବନ୍ତ ଚିତ୍ତଲାଙ୍କର 'ମୁରୁଦାରିଗଲୁ' (ଭିନ୍ନବାଟ) ଓ ଶାନ୍ତିନାଥ ଦେଶାଇଙ୍କର 'ମୁକ୍ତି' ଉପନ୍ୟାସରେ ନୂଆ ଲେଖକମାନଙ୍କର ପ୍ରତିଭା ସ୍ପଷ୍ଟ ହୋଇଉଠିଛି। ନୂତନ ସାହିତ୍ୟମାନଙ୍କର ସାମାଜିକ ପରିବେଶ ତଥା ବ୍ୟକ୍ତିଗତ ଅନୁଭୂତି ଓ ବାସ୍ତବତାକୁ ସୂକ୍ଷ୍ମ ଅଥଚ ତୀକ୍ଷ୍ଣ ବ୍ୟଙ୍ଗ ଓ କାବ୍ୟମୟ ଭାଷାରେ, ବଳିଷ୍ଠ ରୂପରେ ବ୍ୟକ୍ତ କରୁଛି। ସ୍ତ୍ରୀ-ପୁରୁଷ, ବ୍ୟକ୍ତି-ସମାଜ ଓ ସଂସ୍କୃତି– ଏଇମାନଙ୍କର ସମ୍ବନ୍ଧରେ ଅବ୍ୟବସ୍ଥା ଯେତେବେଳେ ବଢ଼େ, ସେତେବେଳେ ମଣିଷ ଜଗତ ଓ ତା ମଧ୍ୟରେ ଥିବା ବ୍ୟବଧାନକୁ ଚିହ୍ନିବାକୁ ସମର୍ଥ ହୁଏ। ଏହା ଫଳରେ ତା ମଧ୍ୟରେ ହତାଶା ସ୍ଥାୟୀରୂପ ଲାଭ କରେ, ଏହାର ଚିତ୍ରଣ ନବ୍ୟ ଉପନ୍ୟାସରେ ଅନୁମିତ ହୁଏ। ନବ୍ୟ-ପୂର୍ବ ଉପନ୍ୟାସ ବର୍ଣ୍ଣିତ ଜୀବନରେ ଏକ ଗୂଢ଼ ଅର୍ଥ ନିରନ୍ତରତା ଦେଖାଯାଏ; ଫଳରେ ଏଥିରେ ଅର୍ଥହୀନତା ଓ ସାଂସ୍କୃତିକ ନିର୍ଜୀବତା ବ୍ୟକ୍ତ ହୁଏ। ନବ୍ୟ ଲେଖକ ମଧ୍ୟରେ ଜୀବନପ୍ରତି ହତାଶା ଓ ଅନାସ୍ଥା ହେତୁ ସମକାଳୀନ ୟୁରୋପୀୟ ସାହିତ୍ୟରେ ବ୍ୟକ୍ତ ଅସ୍ତିତ୍ୱବାଦ, ଅସଂଗତ ପରଂପରା ଓ ମୁଖ୍ୟତଃ କାଫ୍‌କା ଓ କାମ୍ୟୁଙ୍କର ପ୍ରଭାବ ଲକ୍ଷିତ ହୁଏ। ଯେଉଁମାନେ ନୂତନ ସାହିତ୍ୟର ପ୍ରାମାଣିକତା ବିଷୟରେ ସନ୍ଦେହ କରନ୍ତି, ସେମାନେ ଏକଥା ପ୍ରତି ବିଶେଷ ଧ୍ୟାନ ଦେବା ଉଚିତ ଯେ ଆମ ଜୀବନ ଉପରେ ୟୁରୋପୀୟ ସଂସ୍କୃତିର ପ୍ରଭାବ ଅତ୍ୟଧିକ ବେଶୀ। ଏକକଥାରେ, ଏବେ ଯାଏଁ ପ୍ରକାଶିତ ଉପନ୍ୟାସର ଆଧାରରେ ବର୍ତ୍ତମାନ କୁହାଯାଇପାରେ ଯେ, କନ୍ନଡ଼ର ପ୍ରତିଭାଶାଳୀ ଲେଖକମାନଙ୍କ ମଧ୍ୟରେ ଅଧିକାଂଶ ଆଧୁନିକ ଲେଖକ ଅଟନ୍ତି।

ଏଠାରେ କନ୍ନଡ଼ ଉପନ୍ୟାସର ସଂକ୍ଷିପ୍ତ ଆଲୋଚନା ପୌରାଣିକ, ଐତିହାସିକ, ରାଜନୈତିକ ତଥା ସାମାଜିକ– ଏଇପରି ଅଲଗା ଅଲଗା ଶୀର୍ଷକ ଦେଇ କରାଯାଇନାହିଁ। ଏପର୍ଯ୍ୟନ୍ତ ଯେଉଁ ଲେଖକମାନଙ୍କର ଉଲ୍ଲେଖ କରାଯାଇଛି, ଏମାନଙ୍କ ବ୍ୟତିତ ଆହୁରି କେତେକ ଲେଖକ ଅଛନ୍ତି ଯେଉଁମାନେ ଏ କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି।

ଯେପରି ଦେବଡୁ, ଗୋକାକ, ଶ୍ରୀରଙ୍ଗ, ଭୈରପ୍ପା, କେ.ବି. ଆୟାର, ଇନାମଦାର, ମିର୍ଜି, ଅଣ୍ଣାରାଓ, ଆର.ଶ୍ରୀ.ମୁଗଲି, ବୀରକେଶରୀ, ସୀତାରାମ ଶାସ୍ତ୍ରୀ, କୋରଟୀ ଶ୍ରୀନିବାସ ରାଓ, ଚଦୁରଙ୍ଗ, ବ୍ୟାସରାୟ ବଲ୍ଲାଳ, ଏସ.ଅନନ୍ତ ନାରାୟଣ, ରାମମୂର୍ତ୍ତି, ତ୍ରିବେଣୀ, ଏମ୍.କେ. ଇନ୍ଦିରା ଆଦି। କନ୍ନଡ଼ ଉପନ୍ୟାସ ସାହିତ୍ୟ ଅତିଶୟ ସମୃଦ୍ଧ। ବର୍ତ୍ତମାନ ତା'ର ମୂଲ୍ୟାୟନ କରାଯାଇଛି।

କନ୍ନଡ଼ ତଥା ଇଂରାଜୀ ଲେଖକ ଶଙ୍କର ମୋକାଶୀ 'ପୁଣେକର' କେବଳ ପ୍ରାନ୍ତୀୟ ସାହିତ୍ୟରେ ନୁହନ୍ତି, ରାଷ୍ଟ୍ରୀୟ ସାହିତ୍ୟ ସ୍ତରରେ ମଧ୍ୟ ପର୍ଯ୍ୟାପ୍ତ ପ୍ରସିଦ୍ଧ। 'ଗଙ୍ଗଓ୍ୱା ଗଙ୍ଗାମାତା' ଉପନ୍ୟାସ ବ୍ୟତିତ ସେ 'ମାଙ୍ଗକେତିନ୍ ମୁଖ' ନାମରେ ଏକ କାବ୍ୟସଙ୍କଳନ, 'ବ୍ରୋନ୍ଦେଙ୍କ କାବ୍ୟ ମୀମାଂସା' ନାମକ ଏକ ଆଲୋଚନାତ୍ମକ ଗ୍ରନ୍ଥ ଓ କେତେକ ଆଲୋଚନାତ୍ମକ ପ୍ରବନ୍ଧ ଲେଖିଛନ୍ତି। ସେ ନିଜର ଆଲୋଚନାରେ ନବ୍ୟଲେଖକମାନଙ୍କର ବିରୋଧ କରିଛନ୍ତି। ତାଙ୍କର ମତ ହେଲା ଆଲୋଚନାର ମୁଖ୍ୟ କାମ ହେଉଛି ରସଗ୍ରହଣ, ମୂଲ୍ୟାଙ୍କନ ନୁହଁ। ଅତଃ ନବୀନ କନ୍ନଡ଼ ସାହିତ୍ୟ ଆଲୋଚନାରେ 'ଶଲ୍ୟଚିକିତ୍ସା' ପ୍ରବୃତ୍ତି ସ୍ଥାନରେ ଉତ୍ସାହ ସ୍ଥାନପାଇବା ଉଚିତ।

ମୋକାଶୀ କନ୍ନଡ଼ରେ ଖଣ୍ଡିଏ ମାତ୍ର ଉପନ୍ୟାସ ଲେଖିଛନ୍ତି – 'ଗଙ୍ଗଓ୍ୱା ଗଙ୍ଗାମାତା।' ତଥାପି ଏଇ ଉପନ୍ୟାସ ଏକ ବିଶିଷ୍ଟ ସ୍ଥାନର ଅଧିକାରୀ। ଏଥିରେ ପରଂପରାଗତ ନୈତିକତା, ଗୃହ-ବନ୍ଧନରେ ନିହିତ ମାନବର ସମ୍ମାନ, ନିଜର ପରିବେଶର ବାହାର ଓ ଭିତରର ଘଟଣା ସମୂହର ଚିତ୍ରଣ ଅତିଶୟ ବଳିଷ୍ଠ। କାହାଣୀର ସମାପ୍ତି ସମୟରେ ପ୍ରାୟ ସକଳ ଚରିତ୍ର ନିଜର ଦୋଷ ଗୁଣକୁ ହୃଦୟଙ୍ଗମ କରି ନିଜକୁ ସୁଧାରିବାର ପ୍ରୟାସ ସୁସ୍ପଷ୍ଟ। ମନୁଷ୍ୟର ଦୁର୍ବଳତାକୁ ମୋକାଶୀ ସ୍ୱାଭାବିକ ବୋଲି ମନେକରୁଥିଲେ। ତର୍କସଙ୍ଗତ ସ୍ୱୀକାର୍ଯ୍ୟ ପାରଂପରିକ ତତ୍ତ୍ୱ ଓ କଳା ଦୃଷ୍ଟିଗୋଚରକୁ ଆସୁଥିବା ଜୀବନର ସୂକ୍ଷ୍ମ ତଥା ସ୍ଥୂଳ ସମସ୍ୟାର ସଫଳ ଅଭିବ୍ୟକ୍ତି ହେତୁ 'ଗଙ୍ଗଓ୍ୱା ଗଙ୍ଗାମାତା' କନ୍ନଡ଼ ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ଲାଭକରିଛି।

ମୋକାଶୀଙ୍କ ଅଭିବ୍ୟକ୍ତ ସିଦ୍ଧାନ୍ତର ସାରାଂଶ ହେଲା ବିନାଶକାରୀ ପ୍ରବୃତ୍ତିସମୂହ ସମାଜଦ୍ୱାରା ସଚଳହୋଇ ରହେ। ଉପନ୍ୟାସର ପରିବେଶରେ ଏକଥା ଦୁର୍ବଳ ହୋଇଯିବା ଉଚିତ ନୁହଁ। 'ଗଙ୍ଗଓ୍ୱା ଗଙ୍ଗାମାତା'ର ଏହାହିଁ ମୁଖ୍ୟ ଉଦ୍ଦେଶ୍ୟ। ଉପନ୍ୟାସରେ ଦୁଃଖାତ୍ମକ ଛାୟା ଥିଲେହେଁ ଏହାର ସାମଗ୍ରିକ ଦର୍ଶନ ସୁଖାନ୍ତକ ଅଟେ। ଏଇ ସିଦ୍ଧାନ୍ତକୁ ପ୍ରାଧାନ୍ୟ ଦେଇ ବିକଶିତ ହୋଇଥିବା କୃତିରେ ଅନୁଭବର ମନ୍ଥନରୁ ବାହାରି ଆସିଥିବା ବିଷକୁ ସଂପୂର୍ଣ୍ଣ ଭାବରେ ନଷ୍ଟ କରିବାକୁ ଶକ୍ତିର ଆବଶ୍ୟକତା ପଡ଼େନାହିଁ। କାରଣ ସାଂସ୍କୃତିକ ଓ ବୌଦ୍ଧିକ ଦୁଇ ସ୍ତର ଉପରେ ଏହା ପରଂପରା ରୂପରେ ତିଷ୍ଠିରହେ। ଏଇ ଉପନ୍ୟାସର ସଫଳତା ହେଉଛି, ଏହାର ପରିଣତି କାହାରି ବିଶେଷ ଅନୁଭବ ଦ୍ୱାରା ନିର୍ଦ୍ଧାରିତ ନୁହେଁ।

ଏ ଦୃଷ୍ଟିରୁ 'ଗଙ୍ଗଓ୍ୱା ଗଙ୍ଗାମାତା' ଏକ ପାରିବାରିକ ଉପନ୍ୟାସ। ଏହାର କଥାବସ୍ତୁର କ୍ଷେତ୍ର ସୀମିତ। ମୁଖ୍ୟତଃ ଧାରଓ୍ୱାଡ଼ର ଗଙ୍ଗଓ୍ୱା, ରାଘପ୍ପା ଓ ଦେଶାଇ – ଏଇ

ତିନିଜଣ ଗୃହସ୍ଥଙ୍କର ଚାରିପଟେ ଯେଉଁ ଘଟଣା ଘଟୁଥିଲା, ତା'ରି ଉପରେ ଉପନ୍ୟାସର ବିକାଶ ହୋଇଛି। ତାହାସହିତ ଏହି କୃତିରେ ନିଜର ସୀମାର ବାହାରେ ଓ ଭିତରେ ପରିଦୃଷ୍ଟ ଘଟଣାମାନ ଦେଖାଯାଇପାରେ। ଏଇପରି ଭାବରେ ଉପନ୍ୟାସର ସୀମା ବିସ୍ତାର ଲାଭ କରିଛି। ବସନ୍ତର ଗାଁକୁ ଯିବା ଓ ଅଚ୍ୟୁତର ବମ୍ବେରେ ରହିବା ଦ୍ୱାରା ଘଟଣାର କେନ୍ଦ୍ର ଧାରୱାଡ଼ର ପୃଷ୍ଠଭୂମିରେ ଗ୍ରାମ୍ୟ ଜୀବନ ସହିତ ଏକ ବୃହତ୍ ନଗର ମଧ୍ୟ ଆସିଛି। ଧାରୱାଡ଼ ବା ଗ୍ରାମ ବା ବମ୍ବେକୁ ପ୍ରାଧାନ୍ୟ ଦେବାର ପ୍ରୟାସ ଉପନ୍ୟାସରେ ହୋଇନାହିଁ। ଚରିତ୍ରମାନଙ୍କର ଅନିବାର୍ଯ୍ୟ ସ୍ପଷ୍ଟତାରୁ ଏଠାରେ ପ୍ରାଦେଶିକତା ରକ୍ଷିତ ହୋଇଛି। ଧାରୱାଡ଼ ଓ ବମ୍ବେର ସଂପର୍କ ଉଦ୍ଦେଶ୍ୟହୀନ ନୁହେଁ। ତିନିପରିବାରର କ୍ଲେଶ ବା ସମ୍ବନ୍ଧ ଦ୍ୱାରା ଧାରୱାଡ଼ର ସହରୀ ଜୀବନ ପ୍ରଭାବିତ ହୋଇନାହିଁ। କିନ୍ତୁ ଦେଶାଇ ବୁଝିଥିଲେ ଯେ ବସନ୍ତର କାର୍ଯ୍ୟକଳାପ ଗାଁର ଶାନ୍ତ ବାତାବରଣକୁ ଅଶାନ୍ତ କରି ତୋଳୁଛି। ବମ୍ବେରେ ଅଚ୍ୟୁତର ସତ୍ୟାଗ୍ରହରେ ଭାଗ ନେବା, ତଥା ଧାରୱାଡ଼ର ସ୍କୁଲରେ ଶାନ୍ତାର ଶୋଭାଯାତ୍ରାରେ ଅଗ୍ରଣୀ ହେବା– ଏଇ ଦୁଇ ଘଟଣା ତଥା ତାହାର ପରିଣାମକୁ ଏକତ୍ର ମିଳାଇ ଦେଖିଲେ ଏକଥା ସ୍ପଷ୍ଟ ହୁଏ ଯେ ଜୀବନକୁ 'ଏକତ୍ୱ' ରୂପ ଦେଇପାରୁଥିବା ଶକ୍ତିକୁ ଏ ଉପନ୍ୟାସ ସ୍ୱୀକାର କରିଚି। ରତ୍ନାକୁ କଳ୍ପନାରେ ସୁଦ୍ଧା ମିଳିନଥିବା ସ୍ୱାଧୀନତା ଶାନ୍ତାକୁ ରାଜନୈତିକ ଆନ୍ଦୋଳନ ହେତୁ ମିଳିଛି। ଏଥିରୁ ଗୋଟିଏ ଯୁଗଠାରୁ ଆଉ ଗୋଟିଏ ଯୁଗ ପର୍ଯ୍ୟନ୍ତ ହୋଇଥିବା ପରିବର୍ତ୍ତନ ଓ ତାହାଦ୍ୱାରା ସୃଷ୍ଟ ହୋଇଥିବା ସମସ୍ୟାମାନ ଆଲୋଚିତ ହୋଇଛି। (ପ୍ରତ୍ୟେକ ଯୁଗର ନିଜସ୍ୱ ସମସ୍ୟା ଥାଏ। ପୁରୁଣା କାଳିଆ ସ୍ତ୍ରୀଲୋକ ଏଇ ନବୀନ ଯୁଗର ସମସ୍ୟାକୁ ବୁଝିପାରିବ ନାହିଁ। ତୁମକୁ ଭବିଷ୍ୟତରେ ଯେପରି ହେବାକୁ ହେବ ତାକୁଇ ବିଚାର କର।) ପରଂପରାଗତ ସମସ୍ୟା ମୋକାଶୀଙ୍କର ଉପନ୍ୟାସକୁ ନିରନ୍ତର ବଦଳୁଥିବା ଜୀବନଠାରୁ ମୁହଁ ଫେରାଇବାକୁ ଦିଏନାହିଁ, ଶାନ୍ତାର ବିବାହରେ ତଥା ତା'ର ମା'ର ବିବାହରେ ପରିସ୍ଥିତିବଶରୁ ଯେଉଁ ସାମ୍ୟର ଉଲ୍ଲେଖ କରାଯାଇଛି ତାହା ଏକଦୃଷ୍ଟିରୁ ଏଇ କଥାକୁ ସ୍ପଷ୍ଟ କରୁଛି। ପରମ୍ପରା ବିଷୟରେ ପର୍ଯ୍ୟାପ୍ତ ଆଲୋଚନା ହେବା ଫଳରେ ଏଇସବୁ ଘଟଣାର ପୁନରାବୃତ୍ତିର ବ୍ୟଙ୍ଗରେ ରସିକତା ନିହିତ।

ଉପନ୍ୟାସରେ ଜୀବନପ୍ରତି ବିମୁଖ ହେବା କେତେଦୂର ଉଚିତ, କେତେଦୂର ସମ୍ଭବ– ଏ ପ୍ରଶ୍ନ କରାଯାଇଛି। ଜୀବନପ୍ରତି ବିମୁଖ ହୋଇପଡ଼ିଥିବାରୁ 'ଗଙ୍ଗୱ୍ୱା' ଗଙ୍ଗାମାତାଙ୍କର ଆଶ୍ରୟ ନେବାକୁ ବିଚାରିଛି। ମାତ୍ର ତା'ର କର୍ତ୍ତବ୍ୟ ଏବେବି ପୂରା ହୋଇନାହିଁ। ବାହାହୋଇ ଗୃହସ୍ଥି ନସଜାଡ଼ିବା ଯାଏଁ କିଟ୍ଟୀପାଇଁ ମା'ର ଆଶ୍ରୟ ଆବଶ୍ୟକ। ଏ ଚିନ୍ତା ଆସିବାମାତ୍ରେ ସେ ପୁଅପାଇଁ ଚିନ୍ତିତ ହୋଇପଡ଼ିଛି। ଗଙ୍ଗାର ଆହ୍ୱାନକୁ ଅବହେଳା କରି ଗଙ୍ଗୱ୍ୱା ଘରପ୍ରତି ଧ୍ୟାନ ଦେଇଛି। ରେଳ ଡବାରୁ ଗଙ୍ଗାଜଳକୁ ଢାଳି ଦେଇଥିବାର ପାପ ମଧ୍ୟ କରିଛି। ଗଙ୍ଗାଙ୍କୁ ତ୍ୟାଗ କରିବା ଫଳରେ ତାର ବ୍ୟକ୍ତିତ୍ୱ ଅଧିକ ଶକ୍ତିଶାଳୀ ହୋଇଛି। ସେ କର୍ତ୍ତବ୍ୟ ପ୍ରତି ବିମୁଖ ନୁହଁ, ଅଥଚ

ପାପଠାରୁ ବି ମୁକ୍ତ ନୁହଁ। ନିଜ ଭାଇ କୃତ ଅନ୍ୟାୟକୁ ଭୁଲିପାରି ନାହିଁ। ଭୂତକାଳକଥା ଚିନ୍ତାକରି ସେ ମନେମନେ ଦୁଃଖିତ ଓ କଠୋର ହୋଇଛି। ତା ମୁହଁରୁ ବ୍ୟଙ୍ଗବାଣ ବାହାରିଛି। ରାଘଷା ଓ ଚମ୍ପାର ମୃତ୍ୟୁରେ ତା'ର ମନ ବିକଶିତ ହୋଇଛି। ସେପର୍ଯ୍ୟନ୍ତ ହୃଦୟରେ ସକଳ ପ୍ରେମ ଓ ଚିନ୍ତା କେବଳ କିଟ୍ଟୀପାଇଁ ଥିଲା।

ଜୀବନ ସହ ସଂଘର୍ଷ କରି ଜିତିଯିବାର ବ୍ୟକ୍ତିତ୍ୱ କିଟ୍ଟୀର ନାହିଁ। ସେ ମୂଳତଃ ପରମୁଖାପେକ୍ଷୀ। ଶେଷପର୍ଯ୍ୟନ୍ତ ସେ କୈଶୋରାବସ୍ଥାଠାରୁ ଊର୍ଦ୍ଧ୍ୱକୁ ଉଠିପାରିନାହିଁ। ତା'ର ନିଜସ୍ୱ ବ୍ୟକ୍ତିତ୍ୱ ନଥିବାରୁ ସେ ଦୁର୍ବଳ ହୋଇପଡ଼ିଛି। ଏହି ମୁଖ୍ୟ ଚରିତ୍ରକୁ ଧୀରୋଦାତ୍ତ ନାୟକଭାବରେ ଚିତ୍ରଣ କରାଯାଇଛି। ମାନବସ୍ୱଭାବ ସହ ମୋକାଶୀ ସବିଶେଷ ପରିଚିତ ଥିଲେ। ତେଣୁ ସେ କୌଣସି ଚରିତ୍ରକୁ ସଂପୂର୍ଣ୍ଣତାର କୋଟୀରେ ପହଞ୍ଚାଇ ନାହାନ୍ତି। ମାନବିକ ଦୁର୍ବଳତାକୁ ବ୍ୟକ୍ତ କରିବା ଫଳରେ ଉପନ୍ୟାସର ସ୍ୱାଭାବିକତା ରକ୍ଷିତ ହୋଇଛି। ମାନବର ଅହଂକାର, ଶଠତା, ଅଜ୍ଞତା, ଦୁଃଖ ଓ ସଂଘର୍ଷ ଗଙ୍ଗୁଆ ଓ ରାଘଷା ମଧ୍ୟରେ ବର୍ତ୍ତମାନ। ଗଙ୍ଗୁଆପରି ଦୂରେଇରହିବାର ପ୍ରୟାସ କରି ପରିସ୍ଥିତି ସହିତ ତାଳଦେଇ ସଂଘର୍ଷ ଭିତରକୁ ଡେଇଁ ପଡୁଥିବା ଅନ୍ୟ ଏକ ବ୍ୟକ୍ତିତ୍ୱ ହେଲେ ଦେଶାଇ। ସେ ବାରଂବାର ଭାବନ୍ତି ଅପରର ଅଶାନ୍ତିରେ ମୁଣ୍ଡ ଖେଳାଇବେ ନାହିଁ। ତଥାପି ଗଙ୍ଗୁଆର ଦୁଃଖ ଦେଖି ରାଘଷାର ମୁକାବିଲା କରିବାପାଇଁ ଆସିଛନ୍ତି। ଏହାର ଗୋଟିଏ ପରିଣାମ ହେଲା କିଟ୍ଟୀ ରାଘଷାର ଜାଲରେ ପଡ଼ି ଜିଦ୍‌କରି ରତ୍ନାକୁ ବାହା ହୋଇଛି। ଅପର ପକ୍ଷରେ ଶାନ୍ତା ପଛରେ ବସନ୍ତ ଧାଇଁଛି। ପରିଶେଷରେ ଅନେକ ଉତ୍ପାତପରେ ସଭିଏଁ ଏକ ହୋଇଛନ୍ତି। ଏଥିରେ ମୁହାଁମୁହିଁ ସଂଘର୍ଷଲିପ୍ତ ମୁଖ୍ୟ ତିନି ଅଭିଜ୍ଞ ଚରିତ୍ର ପର୍ଯ୍ୟାପ୍ତ ଶକ୍ତିଶାଳୀ ଓ ତୀକ୍ଷ୍ଣ ବୁଦ୍ଧି ସଂପନ୍ନ। ରାଘଷାର ବ୍ୟକ୍ତିତ୍ୱ ଗଙ୍ଗୁଆ ଓ ଦେଶାଇ ଅପେକ୍ଷା ଜଟିଳ। ତା'ର ଅଭିଜ୍ଞତା ମଧ୍ୟ ଅଧିକ। ନିଜର ସ୍ୱାର୍ଥ ପାଇଁ ସେ ସବୁକିଛି କରିବାକୁ ପ୍ରସ୍ତୁତ। ସମୟ ପଡ଼ିଲେ ନିଜେ ଘରୁ ଗହଣା ନେଇଯାଇ ଚୋରିଯାଇଛି ବୋଲି ଖୋଜିବାର ବାହାନା କରିବାରେ ତାର କୁଣ୍ଠା ନାହିଁ। ଅପରପକ୍ଷରେ ସେ ଏକାବେଳକେ ହୃଦୟହୀନ ମଧ୍ୟ ନୁହେଁ। ତାର ଝିଅର ବାହାଘର ଦିନ ମର୍ଯ୍ୟାଦାରକ୍ଷା ପାଇଁ ମହବୁବ ନିଜର ସ୍ୱାସ୍ଥ୍ୟକୁ ପରୁଆ ନକରି ତା ପାଇଁ ଟଙ୍କା ଯୋଗାଡ଼ କରିଛି। ତାକୁ ଦେଖିଲେ ତା'ର ହୃଦୟ ବିଗଳିତ ହୋଇଉଠେ। ଏପରି ବ୍ୟକ୍ତି, ଯିଏ ଜୀବନରେ କେବେ ହାର ନମାନିବାର ପଣ କରିଥିଲା, ମୁହୂର୍ତ୍ତରେ ପରାଜୟ ପ୍ରତି ସଜାଗ ହୋଇଛି। ସେଇ ମୁହୂର୍ତ୍ତରୁ ହିଁ ତା ମଧ୍ୟରେ ମନୁଷ୍ୟତା ଓ ନୈତିକତାର ଜାଗରଣ ହୋଇଛି। ଏକ କଥାରେ, ନୂଆ ରୀତିରେ ସତ୍ୟ ଓ ଅସତ୍ୟର ଚିନ୍ତନ ପରେ ରାଘଷା ଜୀବନପ୍ରତି ବିମୁଖ ହୋଇଛି; ଯାହାଫଳରେ ଆତ୍ମହତ୍ୟା କରିଛି। ରାଘଷାର ଚାରିତ୍ରିକ ବିକାଶ ଗଙ୍ଗୁଆ ଓ ଦେଶାଇଜୀଙ୍କଠାରୁ ଭିନ୍ନ ରୀତିରେ ହୋଇଛି। ବିବେକର ସଦ୍ ଓ ଅସଦ୍ ଜ୍ଞାନ ଏ ଦୁହିଁଙ୍କୁ ଜୀବନମୁଖୀ କରାଇଛି।

ଘଟଣା ସମୂହର ବିକାଶରେ ସ୍ଥାନ ନଥିଲେ ମଧ୍ୟ ଜର୍ଜ ଉପନ୍ୟାସର ଏକ

ବିଶିଷ୍ଟ କେନ୍ଦ୍ର। ସ୍ୱାଭାବିକ ନୈତିକତା ତା'ଠାରେ ଏକୀଭୂତ। ଯେକୌଣସି ପରିସ୍ଥିତିରେ ସେ ଅନାସକ୍ତ ରହିପାରେ। ସମୟ ଅନୁସାରେ ଲାଞ୍ଚ ନିଏ। ତା'ର ବ୍ୟକ୍ତିତ୍ୱରେ ଅସ୍ପଷ୍ଟତା ନାହିଁ। ତାର ନିସ୍ପୃହତା କିଙ୍ଗୀର ଅସହାୟ ଅବଲମ୍ବନ ପାଇଁ ସହାୟକ ହୋଇପାରିନାହିଁ। ଏତିକିନୁହଁ, ତାହାର ତଟସ୍ଥତା ଉପନ୍ୟାସର ଅନ୍ତଃଚାଳିତ ପ୍ରଜ୍ଞାର ଅନୁକୂଳ। ପରିସ୍ଥିତି ସଚେତନତା ଆସିଲା ପରେ ମଧ୍ୟ ସେଥିପ୍ରତି ଆକର୍ଷିତ ନହୋଇ ତଟସ୍ଥ ରୂପରେ ଠିଆହୋଇ ତୃପ୍ତ ହେବାର ସ୍ୱାଭାବିକ ଶକ୍ତି ତା'ଠାରେ ଅଛି। ବାସ୍ତବତାର ସହାୟତାରେ ଉପନ୍ୟାସର ଉଚିତ ମହତ୍ତ୍ୱକୁ ବିନଷ୍ଟ କରିବାର ସାହସ ମୋକାଶୀଙ୍କ ଲେଖନୀରେ ନାହିଁ।

'ଗଙ୍ଗଓ୍ୱା ଗଙ୍ଗାମାତା'ର ପ୍ରଥମ ଦୁଇ ପରିଚ୍ଛେଦ ପଢ଼ିଲେ ଏପରି ମନେହୁଏ ଯେପରି ଏଥିରେ ପ୍ରତୀକର ପ୍ରୟୋଗ ବହୁଳଭାବରେ କରାଯାଇଛି। ଜୀବନରୁ ନିବୃତ୍ତି, ମୃତ୍ୟୁର ଆହ୍ୱାନକୁ ସ୍ୱୀକାର, ଗଙ୍ଗାମାତାର ଏକ ସ୍ୱରୂପ। ଏହା ଗଙ୍ଗଓ୍ୱାଠାରେ ଏକାନ୍ତ ଭାବରେ ନିହିତ। ଏ ରୂପକ ପ୍ରଥମେ କିଛି ସମୟ ପାଇଁ ଅଦୃଶ୍ୟ ଭାବରେ ରହିଛି। ଉପନ୍ୟାସର ପରିବେଶ ସଂଯୋଜନା, ଓ ପାତ୍ର ନିର୍ବାଚନ ଦିଗରେ ପାଠକର ଏକାଗ୍ରତା ଆକର୍ଷିତ ହୋଇଛି, କିନ୍ତୁ ଶାଶୁ ବୋହୂର ସଂଘର୍ଷ ଓ ମନାନ୍ତର ମଝିରେ ଗୁପ୍ତଗାମିନୀ ରୂପରେ ବହୁଥିବା ନଦୀରେ ବିଷସ୍ରବତାର ସଂକେତ ମିଳୁଛି। ପରିଶେଷରେ ଗଙ୍ଗଓ୍ୱାର ଅନୁଭବର କଳସୀ ଶୁଖି ଯାଇଛି। ଗଙ୍ଗା ଜଳ ମାଠିଆ ଗଙ୍ଗଓ୍ୱା ପାଖକୁ ଆସୁଛି। ସେତେବେଳେ ଜୀବନ ଓ ମୃତ୍ୟୁର ବିରୋଧ, 'ଗଙ୍ଗଓ୍ୱା ଗଙ୍ଗାମାତା' ମଧ୍ୟସ୍ଥ ଭିନ୍ନତାର ଦୃଷ୍ଟିକୋଣ ଲୁପ୍ତ ହୋଇଯିବାର ଧ୍ୱନି ଉଠୁଛି। ଗଙ୍ଗାମାତାର ରୂପକରେ ଯେଉଁ ଗୌଣ ଦୈବିକତା ରହିଛି, ତାହା ଶାଳଗ୍ରାମରେ ପ୍ରାଧାନ୍ୟ ପାଇଛି। ଶାଳଗ୍ରାମଙ୍କୁ ଅନୁଭବ କରି ଗଙ୍ଗଓ୍ୱା ଏଇ ସମୟରେ ଏହା କିଞ୍ଚିତ ବୁଝିପାରିଛି; ଯାହା ଫଳରେ ଘରର ଅଶାନ୍ତି କମିଯାଇଛି। ଗଙ୍ଗାନଦୀପରି ଗର୍ଜୁଥିବା ଗଙ୍ଗଓ୍ୱାର ବ୍ୟକ୍ତିତ୍ୱ ତଥା ଏକ ତଟସ୍ଥ ରୂପକୁ ଏହା ଧ୍ୱନିତ କରୁଛି। ଏହା ମୌନଗମ୍ଭୀର ଗଙ୍ଗାମାତାଙ୍କର ଅନ୍ୟ ଏକ ରୂପ। ଶାଳଗ୍ରାମ ଓ ଗଙ୍ଗଓ୍ୱାସହ ସାଙ୍କେତିକ ଭାବରେ ଜର୍ଜର ସଂବନ୍ଧର କଳ୍ପନା କରି ନୈତିକତାର ସାଧାରଣ ପ୍ରତୀକ ଶାଳଗ୍ରାମ ପରି ତଟସ୍ଥ ଆଶ୍ରୟକୁ ମୋକାଶୀ ଉପନ୍ୟାସରେ ବଳିଷ୍ଠତା ଦାନ କରିଛନ୍ତି। ଗଙ୍ଗାମାତା ଓ ଶାଳଗ୍ରାମର ସାଙ୍କେତିକ ପ୍ରୟୋଗ ଉପନ୍ୟାସର ଶେଷ ପର୍ଯ୍ୟନ୍ତ ସମଭାବରେ ହୋଇନାହିଁ। ଗୁପ୍ତାସ୍ତ୍ର, ଶଲ୍ୟ, କିଲ୍ଲା, ନେତୃତ୍ୱ ଆଦି ରଢ଼ିଗତ ପ୍ରୟୋଗ ନିଷ୍କ୍ରିୟ ହୋଇଯାଇଛି। ଏହାର ଅର୍ଥ ହେଲା ବିଷୟ ନିର୍ବାଚନରେ ନିପୁଣତା ପ୍ରକାଶ ପାଇଥିଲେ ହେଁ ଶେଷ ପର୍ଯ୍ୟନ୍ତ ତାହା ରକ୍ଷିତ ହୋଇନାହିଁ।

ଉପନ୍ୟାସରେ ପାରିବାରିକ ଜୀବନର ବ୍ୟାଖ୍ୟା କରିବାର ପ୍ରୟାସ କରାଯାଇଛି ଓ ଏଇ ପ୍ରୟାସ କେତେକ ପ୍ରାଚୀନ ଶୈଳୀକୁ ନିଜସ୍ୱ କରିନେଇଛି। ଯେପରି ଅଧ୍ୟାୟର ଶୀର୍ଷକ ଦାନ, ସଂସ୍କୃତ ଶ୍ଳୋକର ପ୍ରୟୋଗ, ଡିକେନ୍ସଙ୍କ ପରି ନାଟକୀୟ ହାସ୍ୟର ସନ୍ନିବେଶ। ଏସବୁ ସହ ଅଷ୍ଟାଦଶ ଶତାବ୍ଦୀର ଇଂରାଜୀ ଉପନ୍ୟାସ ପରି କଥାବସ୍ତୁର

ବିକାଶ ପାଇଁ ଚରିତ୍ର ସମାବେଶ କରାଯାଇଛି। ଉପନ୍ୟାସର ଅନ୍ତିମ ଅଂଶରେ କଥାକାର ଅଲଗା ଅଲଗା ସୂତ୍ରକୁ ଯୋଡ଼ିବାର ପ୍ରୟାସ ସହ ଚରିତ୍ର ସମାବେଶର ବିରୋଧ ସୃଷ୍ଟିହୋଇଛି। ମୋକାଶୀଙ୍କ ମତରେ ସାଧାରଣ ଶୈଳୀ ସାହାଯ୍ୟରେ ଉପନ୍ୟାସର ବିକାଶ ହେବା ଉଚିତ। ପରଂପରାଗତ ସିଦ୍ଧାନ୍ତର ପରିଚିତ ପାଚେରୀ ମଧ୍ୟରେ ହିଁ ମାନବ କ୍ଷମତାକୁ ସହୃଦୟତା ଦୃଷ୍ଟିରୁ ଦେଖି ଓ କେବେବା ସାହିତ୍ୟର ପରଂପରାଗତ ସୀମାକୁ ଉଲ୍ଲଂଘନ କରି ଏକ ସାହିତ୍ୟ ସୃଷ୍ଟି ସମ୍ଭବ ହୋଇପାରେ, ଏହାର ସଫଳ ଉଦାହରଣ 'ଗଙ୍ଗଓ୍ୱା ଗଙ୍ଗାମାତା'।

ବି. ଦାମୋଦର ରାଓ

# 1. ଦହନ

ଗଙ୍ଗାଓ୍ୱାକୁ ସମସ୍ତେ ଜାଣନ୍ତି। ଚାଳିଶି ପାରି ନହେଉଣୁ ସ୍ୱାମୀକୁ ହରାଇ ବସିଲା; କେବଳ ନିଜର ଗୋଟିଏ ବୋଲି ପୁଅ କିଟୀ (କୃଷ୍ଣ) ପାଇଁ ସେ ଆପଣା ଜୀବନ ବଞ୍ଚାଇ ରଖିଛି। ମୂଳରୁ ଦାରିଦ୍ର୍ୟ ଥିଲା; ତା'ଉପରେ ଘରର ରୋଜଗାରିଆ ମଣିଷଟି ଚାଲିଯିବାରୁ ଘରର ଅବସ୍ଥାରେ ଭଗବାନହିଁ ଭରସା ଥିଲେ। ଏବେ କିଟୀକୁ ଅଠର ବର୍ଷ ହେଲାଣି। ଏଇ ଆଠ ବର୍ଷ ଭିତରେ ସେ କେତେକେତେ କଷ୍ଟ ନସହିଛି। କିନ୍ତୁ କେବଳ କିଟୀପାଇଁ ସେ ସବୁ ବରଦାସ୍ତ କରିଛି। ନିଜେ ଅଧାପେଟ ଖାଇ ପୁଅକୁ ପୂରାପେଟ ଖୁଆଇଛି। ପରଘରେ ରନ୍ଧାବଢ଼ା କରି ତାକୁ ପାଠ ପଢ଼ାଇଛି। ଯାହେଉ ଏବେ କିଟୀ ମାଟ୍ରିକ୍ ପାଶ୍ କରି ତହସିଲଦାର କାର୍ଯ୍ୟାଳୟରେ ଯୋଗଦେଇଛି। ନିଜ ଯତ୍ନର ସାର୍ଥକତା ଦେଖି ଗଙ୍ଗାଓ୍ୱା ବହୁତ ସୁଖୀ। ହେଲେ' ଆଶାର କ'ଣ କେବେ ଶେଷ ଅଛି! ମନରେ ଏବେବି ଏକ ଆଶା ପୋଷଣକରି ରଖିଛି ଯେ କିଟୀ ପାଇଁ ଏକ ସୁନ୍ଦରୀ ବୋହୂ ଆଣିବା ପରେ, ସେ ଆଖିବୁଜିବ। ଯେତେବେଳେ ନିଜଘର ନିଜେ ଚଳାଇବାକୁ ଲାଗିବ ସେତେବେଳେ ସେ ଆପଣା କର୍ତ୍ତବ୍ୟର ଇତିଶ୍ରୀ ବୋଲି ବୁଝିବ।

ଏଇ ସମୟରେ ପଡ଼ୋଶୀ ଦେଶାଇସାହେବଙ୍କ ଗୃହିଣୀ, କାଶୀ ଦର୍ଶନ କରି ଯାଉଥିଲେ। ଏହାକୁ ଭଲ ସୁଯୋଗଟିଏ ମନେକରି, ଗଙ୍ଗାଓ୍ୱା ମଧ୍ୟ ତାଙ୍କରି ସାଥୀ ଧରିଲା। ଭଗବାନ ବିଶ୍ୱନାଥଙ୍କ ଆଗରେ ଆପଣାର ଅନ୍ତିମ ଆକାଂକ୍ଷା ନିବେଦନ କରିବା ପାଇଁ କିଟୀକୁ ସାଙ୍ଗରେ ନେଇଯିବା ସମ୍ଭବ ନଥିଲା, ସେଥିପାଇଁ ସେ ଏକାକୀ ତାଙ୍କ ସହ ଚାଲିଲା।

କାଶୀରେ ପହଞ୍ଚି ସେ ଗଙ୍ଗାରେ ବୁଡ଼ ପକାଇଲା। ବିଶ୍ୱେଶ୍ୱର, କାଳଭୈରବ, ଘୁଣ୍ଡିରାଜ, ବିନ୍ଦୁମାଧବଆଦି ଦେବତାଙ୍କୁ ଦର୍ଶନ କଲା। ହରିଶ୍ଚନ୍ଦ୍ର ଘାଟରେ ଦୀପାର୍ପଣ କଲା। ପଞ୍ଚାର୍ତ୍ତି, ଗୋପୁରାର୍ତ୍ତି, କର୍ପୂରାର୍ତ୍ତି ଇତ୍ୟାଦି ଆରତି କରାଇ ପ୍ରସାଦ ପାଇଲା। ସବୁଠାରେ ଗଙ୍ଗାଓ୍ୱା ଆଖିବୁଜି ଭକ୍ତିଭରେ ପ୍ରଣାମ କରି ମାଗୁଣି କଲା ଭଗବାନ, କୃଷ୍ଣର ବିବାହ ହୋଇଯାଉ, ତା'ର ଘର ଭରପୂର ହେଉ। କେବଳ ଏତିକିମାତ୍ର ଦେଖିବାକୁ ଦିଅ ଭଗବାନ! କିଟୀ ଐଶ୍ୱର୍ଯ୍ୟବାନ୍ ହେଉ, ମଣିଷ ହେଉ, ତାର ଜୀବନ ସୁଖମୟ ହେଉ ଏହାହିଁ ତାର ଇଚ୍ଛା। ତା' ହୃଦୟ ବାତ୍ସଲ୍ୟ ମମତାରେ

ଉଚ୍ଛୁଳି ଉଠିଲା । ବିଶ୍ୱେଶ୍ୱରଙ୍କ ସମ୍ମୁଖରେ ଯେତେବେଳେ ଗୋପୁର ଆରତି ହେଲା, ସେତେବେଳେ ସେ ନିରଞ୍ଜନଙ୍କୁ ସାକ୍ଷୀ ରଖି ଭଗବାନଙ୍କ ସମ୍ମୁଖରେ ଲୋଟିଗଲା ।

କାଶୀରୁ ଗାଁକୁ ଫେରିବା ବେଳ ହେଲା । ସମସ୍ତେ ଯେ ଯାହାର ଜିନିଷପତ୍ର ସଜଡ଼ାସଜଡ଼ି କଲେ । ଗଙ୍ଗୱା ମଧ୍ୟ ଆପଣାର ଛୋଟ ଗଣ୍ଠିଲିଟି ସଜାଡ଼ି ନେଲା । ଯିବା ଦିନ ସମସ୍ତଙ୍କ ଦେଖାଦେଖି ସେ ତମ୍ବାର ଢ଼ାଙ୍କୁଣୀବାଲା ଗରାଟିଏ କିଣିନେଇଥିଲା । ସମସ୍ତଙ୍କ ପରି ସେ ମଧ୍ୟ ସେଥିରେ ଗଙ୍ଗାଜଳ ପୂରାଇଲା ଓ ମହମ ଦେଇ ଢାଙ୍କୁଣୀ ବନ୍ଦ କରିଦେଲା । ଓହଳାଇ ଧରିବା ପାଇଁ ଗରାବେକରେ ଦଉଡ଼ି ମଧ୍ୟ ବାନ୍ଧିଦେଲା । ଗରାଟି ଓଜନିଆ ହୋଇଥିବାରୁ ବୋହିବାକୁ ଟିକିଏ ଅସୁବିଧା ହେଲା । କିନ୍ତୁ କାଶୀକୁ ଆସି ଗଙ୍ଗାଜଳ ବିନା କେବେ କ'ଣ ଫେରିହୁଏ ? ମୃତ୍ୟୁ ସମୟରେ ଅନ୍ତିମ ନିଃଶ୍ୱାସ ନେଲାବେଳେ ଯେପର୍ଯ୍ୟନ୍ତ କିଟ୍ଟୀ ମୁଣ୍ଡପାଖରେ ବସି ତା' ମୁହଁରେ ଗଙ୍ଗାଜଳ ନଦେବ, ସେ ପର୍ଯ୍ୟନ୍ତ ତାର ସଦ୍‌ଗତି କାହିଁ ?

ଗାଡ଼ିଛାଡ଼ିବାର ଘଣ୍ଟାଏ ଆଗରୁ ସବୁ ଲୋକ ଆସି ଡବାଟିଏ ଆବୋରି ବସି ପଡ଼ିଲେ । କେତେଜଣ ମଝିରେ ଆଉଜିକରି ବସିଲେ । ଆଉ କେତେଜଣ ଢୁଳେଇବାକୁ ଲାଗିଲେ । ଗାଡ଼ି କେତେବେଳେ ଷ୍ଟେସନ ଛାଡ଼ିବାକୁ ଆରମ୍ଭକଲା, ସେକଥା ଅଳ୍ପ କେତେଜଣ ମାତ୍ର ଜାଣିପାରିଲେ ।

ଗଙ୍ଗୱା ଆପଣାର ଗଣ୍ଠିଲି ସମ୍ଭାଳି ଝରକାକୁ ଆଉଜି ବସିରହିଲା । ଚଳନ୍ତା ଗାଡ଼ିର ଦୋହଲା ଓ ଚାରିପାଞ୍ଚ ଦିନର କ୍ଳାନ୍ତି ହେତୁ ତା'ର ଆଖି ମଧ୍ୟ ମୁଦି ହୋଇ ଆସିଲା ।

ସେ ଦି' ତିନି ଘଣ୍ଟା ଶୋଇ ପଡ଼ିଥିଲା । ଅଚାନକ ଗାଡ଼ିର ସିଟିରେ ତା'ର ନିଦ ଭାଙ୍ଗିଗଲା । ଡବାର ସବୁ ଝରକା ବନ୍ଦ, କେବଳ ଗଙ୍ଗୱାର ପାଖ ଝରକାଟି ଖୋଲାଥିଲା । ଥଣ୍ଡାରେ ତାର ହାତ ଦେହ କମ୍ପୁଥିଲା । ସେ ବାହାରକୁ ଚାହିଁ ଦେଖିଲା ଯେ ଗାଡ଼ି ଡାହାଣକୁ ବଙ୍କାଉଛି । ଉପରେ ଇଞ୍ଜିନର କଳାଧୂଆଁ ଛାଇ ହୋଇଯାଇଛି । ମୁଣ୍ଡ ଉପରେ ପୂର୍ଣ୍ଣଚନ୍ଦ୍ର, ଚତୁର୍ଦ୍ଦିଗରେ ଜ୍ୟୋତ୍ସ୍ନା, ଚିକିମିକି ତାରା, ଦୂର ଦୂରାନ୍ତରର ପାହାଡ଼ ଓ ଦୁର୍ଗପରି ଦିଶୁଥିବା ଗଛର ଛାୟା, ଏସବୁ ଉପରେ ଥରେ ଦୃଷ୍ଟି ବୁଲାଇ ନେଇ ଗଙ୍ଗୱା ଝରକା ବନ୍ଦ କରିଦେଲା । ନିଦ ଆସୁନଥାଏ । ତାର ଭାବନାର ସୁଅ ବୋହିଯିବାକୁ ଲାଗିଲା । ଦେଖିଆସିଥିବା ମନ୍ଦିର, ମୂର୍ତ୍ତି, ଗଙ୍ଗା ଗୋଟିଗୋଟି କରି ତା' ଆଖି ଆଗରେ ନାଚିବାକୁ ଲାଗିଲେ । ସେ ସେଥିରେ ବୁଡ଼ିଗଲା । ତାକୁ କାଶୀଯାତ୍ରା ସ୍ୱପ୍ନପରି ମନେହେଲା । ବିଶ୍ୱନାଥଙ୍କ ଦର୍ଶନ ସ୍ମରଣ କରି ସେ ରୋମାଞ୍ଚିତ ହୋଇ ଉଠିଲା । ସେଥିପାଇଁ ସେ ନିଜେ ନିଜକୁ ଧନ୍ୟ ମନେ କଲା ।

ମଣିଷ ପାଇଁ ସବୁ ଧର୍ମଭାବନାଠାରୁ ବଳି ଏକ ଅନ୍ତିମ ଆଶ୍ରୟ ଥାଏ; ବାତ୍ସଲ୍ୟ ଓ ପ୍ରେମ । ଅଚାନକ ତାର କିଟ୍ଟୀକଥା ମନେପଡ଼ିଗଲା । ସମ୍ଭବତଃ ଏଇନେ ସେ ଧାରୱାଡ଼ରେ ଶୋଇଥିବ । ସ୍ୱପ୍ନରେ ମା' ବୋଲି ଡାକି ବିଲବିଲାଉ ଥିବ । ବିଚରା ! ଏ କେଇଦିନ ନିଜପାଇଁ ନିଜେ ରାନ୍ଧୁଥିବ । ତାକୁ କେତେ କଷ୍ଟ ହେଉନଥିବ ! ଏବେ

ଖାଲି ତା’ ବେକରେ ପଘାଟିଏ ଗଳେଇଦେଲେ ମୋର ଅନ୍ତିମ କର୍ତ୍ତବ୍ୟ ଶେଷ ହେଲା ବୋଲି ଜାଣ। ତା’ପରେ ମୁଁ ଆରାମରେ ମରିପାରିବି।

ତାର ବିଚାରଧାରା ଆଗକୁ ବଢ଼ିଚାଲିଲା। ମୃତ୍ୟୁର ଭୟଙ୍କର ରୂପ ତା ମନକୁ କ୍ଷୁବ୍ଧ କରିବାକୁ ଲାଗିଲା। ମୃତ୍ୟୁ ମାନବର ସକଳ ଆକାଂକ୍ଷାର ପ୍ରତିବନ୍ଧକ ପ୍ରାଚୀର ସ୍ୱରୂପ। ବୋହୂ ମୁହଁ ଦେଖିସାରିଲା ପରେ ମୋର ମରିଯିବାଟା କଣ ଠିକ୍‌ହବ? କେବଳ କିଟ୍ଟୀକୁ ବାହା କରେଇଦେଲେହିଁ କ’ଣ ମୋର କର୍ତ୍ତବ୍ୟ ଶେଷ ହୋଇଯିବ? ତା’ପରେ ତା ଜୀବନର ସାର୍ଥକତା ଆସିବ। ପୁଅର ଘରକରଣାତ ତା’ପରେ ଦେଖିବାର କଥା - ସେଥିପାଇଁ ମୋତେ ଆଗକୁ ମଧ ବଞ୍ଚିରହିବାକୁ ପଡ଼ିବ। ପାଞ୍ଚଜଣ ଯେତେବେଳେ ତାର ପ୍ରଶଂସା କରିବେ ସେ ପ୍ରଶଂସା ମୋ କାନକୁ ଆସିବା ଦରକାର। ତା ପିଲାମାନେ ଜେଜେମା ହାତରୁ ଦିଗୁଣ୍ଡା ଖାଇବା ଦରକାର। ମୋର ସେମାନଙ୍କୁ କାହାଣୀକହି ଗୀତଗାଇ ଶୁଆଇବା ଦରକାର। ଏସବୁ ବିନା ମୁଁ ମରିପାରିବି ନାହିଁ। ଯେତେ ପର୍ଯ୍ୟନ୍ତ ସମ୍ଭବ ମୋତେ ବଞ୍ଚିବାକୁ ପଡ଼ିବ। ବଞ୍ଚିବାର ଇଚ୍ଛା ତା’ର ମନକୁ ଅଧିକ ଉତ୍ସାହରେ ଭରିଦେଲା।

ଡବାର ବଲ୍‌ବର କ୍ଷୀଣ ଆଲୋକରେ ଗଙ୍ଗାଜଳ ଗରା ଚକ୍‌ମକ୍ ଝଲସୁଥିଲା। ତାର ତୀକ୍ଷ୍ଣ ଝଲକ ତୀରପରି ତା’ମନରେ ବିନ୍ଧିଗଲା। ଗରାଭିତରେ ଗଙ୍ଗାଜଳ ଛଳଛଳ ଶବ୍ଦ କରୁଥିଲା। ସେ ଶବ୍ଦ ତାକୁ ଯମରାଜାଙ୍କ ପାଖକୁ ଫୋପାଡ଼ି ଦେଲାପରି ଲାଗିଲା। ଏଇ ଗଙ୍ଗାଜଳ କଣ ପାଇଁ? ମଲାବେଳେ ଆପଣା ମୁହଁରେ ଦେବା ପାଇଁ ତ? ନାଁ ନାଁ, ସେ ଏବେ ମରିବ ନାହିଁ। ସେ ବଞ୍ଚିବ। ତାକୁ ବଞ୍ଚିବାକୁ ହେବ। ତାକୁ ତ କାଶୀ ବିଶ୍ୱେଶ୍ୱରଙ୍କର ପ୍ରସାଦ ମିଳିଛି।

ଚତୁର୍ଦ୍ଦିଗରେ ନୀରବତା ବ୍ୟାପୀଥିଲା। ଗଙ୍ଗାଜଳ ଗରା ଝଲସୁଥିଲା। ତା’ମଧ୍ୟସ୍ଥ ଗଙ୍ଗାଜଳ ଛଳଛଳ ଧ୍ୱନିରେ ମୃତ୍ୟୁ ସମ୍ବାଦ ଦେଇଚାଲିଥିଲା। ଗଙ୍ଗୱା ଅଧୀର ହୋଇ ଉଠିଲା। ତାର ଛାତି ଜୋରରେ ଧଡ଼ପଡ଼ ହେଲା। ଏକ ଦିଗରେ ବଞ୍ଚିବାର ଇଚ୍ଛା, ଅପର ଦିଗରେ ମୃତ୍ୟୁର ଡାକରା - ଏ ଦୁଇଟି ମଧ୍ୟରେ ସେ ବିବ୍ରତ ହୋଇ ଉଠିଲା, ଡରିଗଲା, ସହି ପାରିଲା ନାହିଁ। ମନରେ ଦ୍ୱନ୍ଦ୍ୱ ଦେଖା ଦେଲା। ବଞ୍ଚିବାର ଇଚ୍ଛା ଜିତିଗଲା। ସେ ଝରକା ଖୋଲିଲା। ଗଙ୍ଗାଜଳ ଗରାକୁ ଧୀରେ ଉଠାଇ ନଖରେ ମହମକୁ ଉଖାରି ଢ଼ାଙ୍କୁଣୀ ଖୋଲିଲା। ଗଙ୍ଗାଜଳକୁ ଆପଣା କପାଳରେ ଲଗାଇ ‘ଜୟଗଙ୍ଗାମାତା’ କହି ଗରାକୁ ଝରକା ପାଖରେ ଓଲଟାଇ ଧରିଲା। ଗଙ୍ଗାମାତା କଳକଳ ହୋଇ ବୋହିଗଲେ।

ଶେଷବୁନ୍ଦା ରହିଲା ପର୍ଯ୍ୟନ୍ତ ସେ ଗରାକୁ ସେମିତି ଧରିରଖିଲା। ସବୁ ଯାତ୍ରୀ ଶୋଇଥିଲେ। ଫେର ଢାଙ୍କୁଣୀ ବନ୍ଦକରି ସେଥିରେ ମହମ ଲଗାଇଲା। ଗରାକୁ ପୁଣି ତଳେ ରଖିଲା ବେଳେ ଢ଼ଙ୍ଗ୍‌ଢ଼ଙ୍ଗ୍ ଶବ୍ଦ ଶୁଣି କଞ୍ଚାନିଦିଆ ସ୍ୱରରେ କିଏ ଜଣେ ପଚାରିଲା, ‘‘କିଏରେ?’’

‘‘କିଛି ନାହିଁ’’ କହି ଗଙ୍ଗୱା ଗଭୀର ଶାନ୍ତିରେ ନିଃଶ୍ୱାସ ନେଲା।

# 2. ପିଛିଲା ସମ୍ପର୍କ

କାଶୀଯାତ୍ରାରୁ ଫେରିବା ପରେ ସମସ୍ତେ ଗଙ୍ଗୱାର ପ୍ରଶଂସା କରିବାକୁ ଲାଗିଲେ। ପାଖ ପଡ଼ୋଶୀ ସଭିଙ୍କୁ ଗଙ୍ଗୱା ନିଜ ଯାତ୍ରାର ବିଭିନ୍ନ ଅନୁଭୂତି ବନେଇ ଚୁନେଇ ରସାଳଭଙ୍ଗୀରେ ଶୁଣାଇଲା। କିନ୍ତୁ ଗଙ୍ଗାମାତାଙ୍କୁ ରେଳଗାଡ଼ିର ଝରକାଦେଇ ଢ଼ାଳିଦେବା କଥାଟା ଶୁଣାଳୀଙ୍କୁ ସେତେ ଭଲ ଲାଗିଲା ନାହିଁ। କାଶୀ ମା' କହିଲେ, ଏଇଟା କିନ୍ତୁ ତୁ ଭଲକାମ କଲୁନାହିଁ ଗଙ୍ଗୱା। ଘରକୁ ଆସୁଥିବା ଗଙ୍ଗାଙ୍କୁ ତୁ ବାହାରକୁ ବାହାର କରିଦେଲୁ। ତୋତେ ପୁଣି ଯାଇ ତାଙ୍କୁ ଦର୍ଶନ କରିବାକୁ ପଡ଼ିବ। 'ଯାହା ହୋଇଗଲାଣି ଗଲାଣି; ହୁଏତ ପୁଣିଥରେ କାଶୀଯାତ୍ରାର ଯୋଗ ଆସିବ!' –ଏହା କହି ଗଙ୍ଗୱା ନିଜ ମନକୁ ସାନ୍ତ୍ୱନା ଦେଲା।

କିନ୍ତୁ ନିଜର ଗୋଟିଏ ଅନୁଭୂତି ଗଙ୍ଗୱା କାହାକୁ କହିଲା ନାହିଁ। ସେ ବିଷୟରେ କେବଳ ନୀରସ ବର୍ଣ୍ଣନା କରିବାକୁ ଲାଗିଲା।

ଏକ ତୀଖ ପାହାଡ଼ରୁ ଗଙ୍ଗାମାତା ତଳକୁ ବୋହିଯାଉଛନ୍ତି। ଯାତ୍ରୀମାନଙ୍କୁ ହଜାରେ ଫୁଟ ଉଚ୍ଚତାରୁ ଅଧିକ ଉପରକୁ ଉଠିବାକୁ ପଡ଼େ। 'ତଳର ଢ଼ାଲୁ ଆଡ଼କୁ ଚାହଁ ନାହିଁ, ମୁଣ୍ଡ ବୁଲାଇ ଦେବ', ଜିନିଷ ବୋହୁଥିବା କୁଲି ଯାତ୍ରୀମାନଙ୍କୁ ଏଇ ଚେତାବନୀ ଦିଏ। ଅନେକ ଲୋକ ଏଇଥିପାଇଁ ପଡ଼ିଯାନ୍ତି, କିନ୍ତୁ ଗଙ୍ଗାୱା ସେ ଆଡ଼କୁ ନଚାହିଁ ରହିପାରିଲା ନାହିଁ। ଦୂରର ଅନ୍ଧକାର ଗହ୍ୱରରେ ଗଙ୍ଗାମାତାଙ୍କର ଶୁଭ୍ର ପ୍ରବାହ ଚକ୍‌ମକ୍ ହୋଇ ବୋହିଯାଉଥିଲା। ଗଙ୍ଗାୱାର ମନେହେଲା ଯେପରି ଗଙ୍ଗାସ୍ରୋତ ତାକୁ ଡାକୁଛି। ସେ ଚଟ୍‌କରି ଆଖି ଫେରାଇନେଲା; ଦ୍ୱିତୀୟଥର ପାଇଁ ଆଉ ସେଆଡ଼େ ନଚାହିଁ ଆଗେଇ ଚାଲିଲା। ସେ ଏକ ବିଚିତ୍ର ଅନୁଭୂତି। ସେପରି କିଛି ବିଶେଷ କଥା ନୁହଁ, କିନ୍ତୁ ତାର ମାନସିକ ଚିତ୍ର, ଗହନ ଅନୁଭବ, ଭୟ, ଆଶା, ଏସବୁ ମିଶି ତା' ମନରେ ଏକ ବିଚିତ୍ର ସ୍ୱପ୍ନପରି ବସା ବାନ୍ଧିଥିଲା। ସେ ସମସ୍ତ ଅନୁଭବ ତା' ଜୀବନର ଅଂଶ ପାଲଟି ସାରିଥିଲା। ଏହାର ବିଶଦ ବର୍ଣ୍ଣନା କରିବା ସମ୍ଭବ ନଥିଲା, ଏହାକୁ ଲୁଚାଇ ରଖିବା ମଧ୍ୟ ସମ୍ଭବ ନଥିଲା।

ଜୀବନଚକ୍ର ଧୀରେ ଧୀରେ ଗଡ଼ୁଥାଏ। କିଛୀ ପକ୍ଷରେ ମାକୁ ଛାଡ଼ି ଏକାକୀ ରହିବା ଏଇ ଥିଲା ପ୍ରଥମ। ସେ କିଛି ଦୁଧଖିଆ ପିଲା ନୁହଁ, ତଥାପି ଏକୁଟିଆ ରହିବାରୁ ତାକୁ ଟିକିଏ ଖରାପ ଲାଗିଲା। ପ୍ରଥମେ ରନ୍ଧାରନ୍ଧି କରିବାକୁ ଇଚ୍ଛା ହେଲା

ନାହିଁ, ତହିଁରେ ପୁଣି ମା'ର ଅନୁପସ୍ଥିତି। ଦ୍ୱିତୀୟରେ ତାର ଦପ୍ତରର କଟୁ ଅନୁଭବକୁ ସହାନୁଭୂତିପୂର୍ବକ ଶୁଣି ତାକୁ ପ୍ରବୋଧନ ଦେବାଲାଗି ମାର ଉପସ୍ଥିତି ଦରକାର ଥିଲା। କିଙ୍ଗୀର କଷ୍ଟ ମଧ୍ୟ ଊଣା ନୁହେଁ। ନୂଆ ନୂଆ ଚାକିରୀ। ତାକୁ ଜଣେ ଉପଦେଶ ଦେଇଥିଲେ ଯେ ରାଜସ୍ୱ ବିଭାଗରେ କାହାରିକୁ ବିଶ୍ୱାସ କରିବା କଥା ନୁହେଁ। ସେଥିପାଇଁ ସେ ଅନ୍ୟକାହାକୁ ନପଚାରି ଯେତିକି ବୁଝିପାରେ ସେଇ ଅନୁସାରେ କାମ କରେ। ଫଳରେ ଉପରିସ୍ଥଙ୍କଠାରୁ ଗାଳିଖାଏ, ପୁଣି ସହକର୍ମୀମାନଙ୍କର ପରିହାସ ସହେ। ତାକୁ ଚାକିରୀ ଯୋଗାଡ଼ କରି ଦେଇଥିବା ତହସିଲଦାର ପ୍ରଥମେ ପ୍ରଥମେ ସହାନୁଭୂତିପରବଶ ହୋଇ ତା'ର ଭୁଲତ୍ରୁଟି ସୁଧାରି ଦେଇଥିଲେ। କିନ୍ତୁ ଦି'ମାସ ପରେ ମଧ୍ୟ କିଙ୍ଗୀ ଯେତେବେଳେ ଠିକ୍ ଭାବରେ କାମ କରିପାରିଲା ନାହିଁ, କିମ୍ବା ନିଜର ଅସୁବିଧା କଥା କହିପାରିଲା ନାହିଁ, ତାର ଭୁଲ୍‌ଭାଲ୍ କାଗଜ ପାଇ ତହସିଲଦାର ଜାଣିପାରିଲେ ଯେ ସେ ଏବେବି କାମ ଶିଖିପାରିନାହିଁ, ସେତେବେଳେ ସେ ତାକୁ ମାଡ଼ ମାରିଲାପରି କହିଲେ ''ତୁମକୁ ଚାକିରୀ ଦେଇ ମୁଁ ବୋକାମି କରିଛି।'' ତହୁଁ କିଙ୍ଗୀ ତାଙ୍କଠାରୁ ଆଉରି ଦୂରେଇ ରହିବାକୁ ଲାଗିଲା। କ୍ରମେ ଯୋଶୀରାମ ରାୟ ନାମକ ଜଣେ କିରାଣୀସହ ବନ୍ଧୁତା କରି ତାରି ପରାମର୍ଶାନୁଯାୟୀ କିଛି କିଛି କାମ କରିବାକୁ ଲାଗିଲା। କିନ୍ତୁ ସେଥିରେ ମଧ୍ୟ ଭୁଲ୍ ରହିଯାଏ। ରାମ ରାୟର ପରାମର୍ଶ ନେଇ ଥରେ ସେ ଏକ ଚିଠା ତହସିଲଦାରଙ୍କ ପାଖକୁ ପଠାଇଲା। ସେ କିଙ୍ଗୀକୁ ଗାଳିଦେଲେ ଓ ରାମ ରାୟକୁ ଡାକି ସେଇ ଚିଠାଟି କରିବାକୁ ଦେଲେ। ଏପରି ଅଦ୍ଭୁତ ପରିସ୍ଥିତିରେ ମା' ଥିଲା ତାର ପରାମର୍ଶଦାୟିନୀ। ମା' ଆଗରେ ହସି, ରୁଷି ଯେପର୍ଯ୍ୟନ୍ତ ସେ ସବୁକଥା ଶୁଣିନେଉନଥିଲା, ସେପର୍ଯ୍ୟନ୍ତ ତାକୁ ଶାନ୍ତି ମିଳୁନଥିଲା।

ଯେଉଁ ଆଧିପତ୍ୟ କିଙ୍ଗୀ ଦପ୍ତରରେ ବେଳେବେଳେ ଦେଖାଇପାରୁ ନଥିଲା, ତାକୁ ଅନାୟାସରେ ଘରେ ଦେଖାଇ ପାରୁଥିଲା। ଅପାଠୋଇ ମା'ର ଅଜ୍ଞତାବଶରୁ କଥିତ କେତେକ କଥାକୁ ପରିହାସ କରି ଅଥବା ତାର ପ୍ରଦତ୍ତ ମରହଟ୍ଟିଆ ଉପଦେଶକୁ ନିନ୍ଦା କରି କିଙ୍ଗୀ ଏକ ପ୍ରକାର ସନ୍ତୋଷ ଲାଭ କରୁଥିଲା। ମା' ସହ ଛୋଟ ଛୋଟ କଥାରେ କଳି ତାର ଦୈନିକ କାର୍ଯ୍ୟକ୍ରମ ଥିଲା। ଏବେ ମା' କାଶୀ ଯାଇଥିବାରୁ କିଙ୍ଗୀର ଶକ୍ତି ସଙ୍କୁଚିତ ହୋଇଯାଇଛି। ଦେଢ଼ମାସ ପର୍ଯ୍ୟନ୍ତ କିଙ୍ଗୀ ଏକାକୀ ରହିଲା।

ଗଙ୍ଗମ୍ମା ଫେରିବା ପରେ କେତେଦିନ କିଙ୍ଗୀ ବଡ଼ ଉତ୍ସାହରେ କଟାଇଲା। ମା'ର ଅନୁପସ୍ଥିତିରେ ଦପ୍ତରରେ ଘଟିଥିବା ବହୁକଥା କହିଲା। ସଜଳନୟନା ମା'ଠାରୁ କାଶୀରେ ପୁଅକୁ ଝୁରି ବିତାଇଥିବା ଦିନଗୁଡ଼ିକର ଘଟଣା ଶୁଣିଲା ପରେ କିଙ୍ଗୀ ଲଜ୍ଜିତ ହେଲା, କିନ୍ତୁ ସବୁ କଥା ଆଗ୍ରହପୂର୍ବକ ଶୁଣିଲା। ଗଙ୍ଗମ୍ମା ବଡ଼ ଦୁଃଖିତ ଓ ଅନୁତପ୍ତ ସ୍ୱରରେ ଗଙ୍ଗାଜଳ ତ୍ୟାଗ କଥା କହିବାରୁ କିଙ୍ଗୀ ତାକୁ ଉତ୍ସାହଦେଇ କହିଲା, ''ତୁ ଚିନ୍ତା କରନା ମା', ଫେର ଥରେ ବୁଲିଆ।''

ଦିନ ବିତୁବିତୁ ପୁଣି ସେଇ ପୁରୁଣା କାର୍ଯ୍ୟକ୍ରମ ଆରମ୍ଭ ହୋଇଗଲା। ମଝିରେ ମଝିରେ ସାନବଡ଼ କଳିକଜିଆ ଜୀବନରେ ବୈଚିତ୍ର୍ୟ ଆଣି ଚାଲିଗଲା।

କିଟ୍ଟୀର ନିଜର ଦୁଇମାମୁଁ ଥିଲେ। ଜଣକର ନାଁ ଭେଙ୍କଟରାୟ, ଅନ୍ୟଜଣର ନାଁ ରାଘପ୍ପା। କିଟ୍ଟୀ କେବଳ ସେମାନଙ୍କ ନାଁ ଶୁଣିଥିଲା। ହୁଏତ ପିଲାବେଳେ ଦେଖିଥିବ, ଏବେ ତାର କିଛି ମନେ ନାହିଁ। ଗଙ୍ଗଓ୍ୱା ଯେତେବେଳେ କାଶୀ ଯାଇ ଥିଲା, ସେତେବେଳେ ଜଣେ ମାମୁଁ ପୁଣି ଦିଗ୍‌ବଳୟରେ ଉଦିତ ହେଲେ। ଥରେ ରାଘପ୍ପା ଦପ୍ତରକୁ କୌଣସି କାମରେ ଆସିଥିଲା। ସେତେବେଳେ ସେ କିଟ୍ଟୀକୁ ଖୋଜି ତା'ସହ ଦେଖା କଲା ଓ ନିଜର ଆତ୍ମୀୟତା ସମ୍ପର୍କରେ କହିଲା। ଆତ୍ମୀୟ ସହ ଅପରିଚିତ ଋଷ୍ୟଶୃଙ୍ଗ ପରି କିଟ୍ଟୀର ଜରିପଗଡ଼ିଧାରୀ, ଲମ୍ବା, ଗହମଗୋରା ମାମୁଁ ପ୍ରତି କୌଣସି ବିଶେଷ ଆସକ୍ତି ଜାତ ହେଲାନାହିଁ। ରାଘପ୍ପା ଗଙ୍ଗଓ୍ୱାର ସ୍ୱାସ୍ଥ୍ୟ, ତାର ନିତିଦିନିଆ କାମଧନ୍ଦା ବିଷୟରେ ପଚରାଉଚରା କଲା। ପରେ ନିଜ ବିଷୟରେ କହିଲା ଯେ ନିଜର ଧାରଓ୍ୱାଡ଼ର ଘରକୁ ସେ ଛଅମାସ ହେଲା ଆସିଲାଣି। କେଉଁ ଏକ ଲେନବଜାରର ଠିକଣାଦେଇ ସେ କିଟ୍ଟୀକୁ ଘରକୁ ଆସିବା ପାଇଁ ନିମନ୍ତ୍ରଣ ମଧ କଲା। ପୁଣି କହିଲା ଯେ ସେ ଏପର୍ଯ୍ୟନ୍ତ ନିଜଗାଁ 'ବିନ୍ଦଗୋଠ'ରେ ଥିଲା। ଏବେ ତାର ବଡ଼ ଝିଅ 'ମୁଲ୍‌କୀ' ପରୀକ୍ଷାରେ ପାଶକରିବାରୁ ତାକୁ ଦି'ଅକ୍ଷର ଇଂରାଜୀ ପଢ଼ାଇବ ଭାବି ସେ ସପରିବାରେ ଧାରଓ୍ୱାଡ଼ ଆସିଛି। ଅନ୍ୟମନସ୍କ ଭଙ୍ଗୀରେ କିଟ୍ଟୀ ସେ ସବୁ ଶୁଣିଲା ଓ ସେ ସବୁ ସେଇଠାରେ ହିଁ ଭୁଲିଗଲା। ଗଙ୍ଗଓ୍ୱା ଆସିବାର ଦି' ମାସପରେ ଦିନେ ରାଘପ୍ପାର ସବାରୀ ଘରେ ଆସି ହାଜର।

# 3. ଅପ୍ରତ୍ୟାଶିତ ସାକ୍ଷାତ

ଗଙ୍ଗୱା ସ୍ୱପ୍ନରେ ସୁଦ୍ଧା ଭାବି ନଥିଲା ଯେ ନିଜ ସାନଭାଇ ସହ ଭେଟ ହେବ। କିଟ୍ଟୀ ମଧ୍ୟ ଦପ୍ତରରେ ରାଘପ୍ପାସହ ସାକ୍ଷାତକଥା ଭୁଲି ଯାଇଥିଲା। ସେ ଗଙ୍ଗୱା ଆଗରେ ସେକଥା ପକାଇ ନଥିଲା। ଯଦି ପକାଇଥାନ୍ତା ତେବେ ଗଙ୍ଗୱା ରାଘପ୍ପାର ମୁହାଁମୁହିଁ ହେବା ପାଇଁ ପ୍ରସ୍ତୁତ ରହିଥାନ୍ତା। ମାତ୍ର ଦଶ ବର୍ଷ ପରେ ରାଘୁ ସଶରୀରେ ଗଙ୍ଗୱା ଘରେ ଆସି ହାଜର ହେଲା। ଗଙ୍ଗୱାକୁ ନିଜର ଭାବ ବ୍ୟକ୍ତ କରିବାର ଅବସର ନଦେଇ ଅଗଣାର ଖଟଉପରେ ବସିପଡ଼ି ସେ ନିଜର ଦଶବର୍ଷର ସୁଖଦୁଃଖ ବଖାଣିବାକୁ ଲାଗିଲା। କ'ଣ କଥା ହେବ, ପ୍ରଥମେ ଗଙ୍ଗୱା ଏହା ବୁଝିପାରିଲା ନାହିଁ। ଭାଇ ପ୍ରତି ତାର ଥିଲା ଭୟ ଓ ଘୃଣା। ଆଗରୁ ଯଦି ଜାଣିଥାନ୍ତା ତେବେ ଜିଭକୁ ଶାଣ ଦେଇ ରଖିଥାନ୍ତା। ଦଶବର୍ଷ ଭିତରେ କଥାର ଧାର କମିଯାଇଛି। ତା'ସହ ଏହି ଦଶବର୍ଷ ଭିତରେ ଭାଇର ଖବର ଜାଣିବାର ଇଚ୍ଛା ଜାତହୋଇଛି। ସେଥିପାଇଁ ସେ ତାର ସବୁକଥା ଶୁଣିଲା। ରବିବାର ହେତୁ କିଟ୍ଟୀ ସେଦିନ ଘରେ ଥିଲା। ଅନ୍ୟମନସ୍କ ଭାବରେ ସେ ମଧ୍ୟ ଅପ୍ରତ୍ୟାଶିତ ଅଭ୍ୟାଗତର କଥା ଶୁଣିବାକୁ ଲାଗିଲା।

ଏ କେତେବର୍ଷ ରାଘପ୍ପା ଗାଁରେ କଟାଇଛି। ଦ୍ୱିତୀୟ ଝିଅ ଜନ୍ମ କଲାପରେ ତାର ସ୍ତ୍ରୀ ଅସୁସ୍ଥ ହୋଇ ପଡ଼ିଥିଲା, ଏଯାଏଁ ଅସୁସ୍ଥ ଅଛି। ମଝିରେ ମଝିରେ ଛାତିରେ ବ୍ୟଥା ହୁଏ। ବର୍ଷରେ ତିନିଚାରିମାସ ଶଯ୍ୟାଶାୟୀ ହୋଇ ରହେ। ''ବିନ୍ଦଗୋଠ''ରେ ସେ କେତେବର୍ଷ ଧରି ଗୋଶାଳାଟିଏ କରିଥିଲା। ଉତ୍କୃଷ୍ଟ ଧରଣର ଗାଈ ପାଳିଥିଲା। କେତେଦିନ ଧରି ସେଇ ବ୍ୟବସାୟ କରୁଥିଲା। କିନ୍ତୁ ସେଥିରେ ବିଶେଷ ଲାଭ ହେଲା ନାହିଁ, କେବଳ ଘର ଚଳିଯାଉଥିଲା। ଏବେ ଅନେକ ବୟସ ହେଲାଣି; ସବୁଥିରେ ହଇରାଣ ହୋଇ ଜମିଜମା ଭାଗ ଲଗାଇଦେଇ ଝିଅମାନଙ୍କ ପଢ଼ାପଢ଼ି ପାଇଁ ଧାରବାଡ଼ରେ ଫେର ଘରକରଣା ସଜାଡ଼ିଛି। 'ଲେନ୍‌ବଜାର'ରେ ଘର ମିଳିଛି। ସବୁଥିରେ ସୁଖ; କିନ୍ତୁ ପିଛିଲା କଥା ମନେପଡ଼ିଲେ ଦୁଃଖ ଲାଗୁଛି। କେତେ ଗହନ ବନ୍ଧୁତା ଥିଲା, ସବୁ ତୁଟିଗଲା। ମନେହୁଏ ଏସବୁ ଯେପରି ପୂର୍ବଜନ୍ମର ଫଳ। ଫେର ସଭିଏଁ ଏକାଠି ହେବା... ଇତ୍ୟାଦି ଇତ୍ୟାଦି।

ଗଙ୍ଗୱା ତାର ସବୁକଥା ଚୁପ୍‌ଚାପ ଶୁଣିଲା। ସେ ଅପେକ୍ଷା କରିଥିଲା ରାଘପ୍ପା

କେତେବେଳେ ନିଜର ଭାଷଣ ଶେଷ କରିବ। ଧୀରେ ଧୀରେ ତାର ବକ୍ତବ୍ୟ ଏକ ନିର୍ଦ୍ଦିଷ୍ଟ ରୂପନେବାକୁ ଲାଗିଲା। ଆତ୍ମୀୟତା, ନିଜନିଜ ଭିତର ମନାନ୍ତର, ସ୍ନେହ ଆଦି ଗୌରଚନ୍ଦ୍ରିକା ପରେ, ପ୍ରାଣଭରି କିଟ୍ଟୀର ବୁଦ୍ଧିମତ୍ତାର ପ୍ରଶଂସା କରି ସାରି ତା'ଆଡ଼କୁ ବୁଲି ରାଘପ୍ପା ଦାନ ପକାଇଲା।

''କିଟ୍ଟର୍ଣ୍ଣା, ଆମ ରତ୍ନାକୁ ଆମେ ତୋ'ରି ପାଇଁ ରଖି ଦେଇଛୁ। ତା ପାଇଁ ଆମେ ଅନ୍ୟବର ଖୋଜିବୁଁ ନାହିଁ। ... କଣ କହୁଛୁ ଗଙ୍ଗୱା ?''

ଅତିଥି ଭାବରେ ରାଘପ୍ପା ଘରକୁ ଆସିଥିଲା, ଭାଇ ଭାବରେ ନୁହେଁ। ଗଙ୍ଗୱା ହସି ହସି ବ୍ୟଙ୍ଗକରି କହିଲା, ''ତୁମ କଥାରୁ କିଟ୍ଟୀ କଣ ବାହାରିଯିବ ଭାଇ ?''

କିଟ୍ଟୀ ଚାକିରୀ ପାଇଲା ପରେ ବେଶ୍ କେତୋଟି ଭଲ ପ୍ରସ୍ତାବ ଆସିଥିଲା। ସବୁଥିରେ କିଟ୍ଟୀର ଗୋଟିଏ ଉତ୍ତର - ବିବାହ କରିବାକୁ ତାର ଏବେ ଇଚ୍ଛା ନାହିଁ। କିନ୍ତୁ ରାଘପ୍ପା ଜୋକପରି ଲାଗିରହିବା ଲୋକ, ସହଜେ ଛାଡ଼ିବାବାଲା ନୁହେଁ।

''ଇଚ୍ଛା ହେଲେ ଏବେ କର ... ନ ହେଲେ ଦି' ବର୍ଷ ପରେ କର ...। ଆମେ ଆମ ରତ୍ନାକୁ ତୁମର କରିଦେଇଛୁଁ। କହିବାକୁ ଗଲେ ଆମଘରେ ସେ ତମରି ପାଇଁ ଜନ୍ମ ହୋଇଛି। ଥରେ ତୋ' ମା' କହିଥିଲା ଯେ ''ତୋ ଘରୁ ମୋ କିଟ୍ଟୀ ପାଇଁ ବହୂଟିଏ ଲୋଡ଼ା। ତାର ତିନିମାସ ପରେ ରତ୍ନା ଜନ୍ମନେଲା। ବିଶ୍ୱାସ ହେଉନାହିଁ ଯଦି ନିଜ ମା'କୁ ପଚାର।''

ଗଙ୍ଗାୱା ମଝିରେ ଟିପ୍ପଣୀ ଦେଲା ''ବାପା କିଟ୍ଟୀ, ରାଘୁ ମୋରି କଥାମାନି ବାହା ହୋଇଥିଲା, ପିଲାବି ମୋରି କଥାମାନି ଜନ୍ମ କରିଛି। ମୁଁ ନକହିଲେ ସେ କିଛି କରିବା ଲୋକ ନୁହେଁ। ଝାଳ ପୋଛୁ ପୋଛୁ ରାଘପ୍ପା କଥାର ମୋଡ଼ ବଦଳାଇଦେଲା। ତାର ମନେହେଲା ଗଙ୍ଗୱା ଏପର୍ଯ୍ୟନ୍ତ ପୁରୁଣା କଥା ଭୁଲି ନାହିଁ, କିମ୍ବା ତାକୁ କ୍ଷମା ଦେଇନାହିଁ।

''କିଟଣ୍ଣା, ଆମ ରତ୍ନା ରୂପରେ କିଛି ଊଣା ନୁହେଁ। ଗୋରା। ତେବେ ହଁ ... ତୁ ଯଦି ସିନେମାବାଲୀଙ୍କ ପରି ରୂପ ଚାହିଁବୁ ପାଇବୁ ନାହିଁ। ସବୁ କାମଦାମ କରୁଛି। ଏବେ ତୋ ମାଇଁ ଘରକାମକୁ ପାରୁନାହିଁ। ରତ୍ନା ଘରର ସବୁ ଦେଖାଶୁଣା କରୁଛି। ଗଙ୍ଗୱା, ତୋତେ ସେ ଗଦିରେ ବସେଇ ରଖି ଘରକରଣା ସମ୍ଭାଳିନବ !''

''ମୋ ପାଇଁ ଗଦି କାହିଁକି ? ବିଛଣା କଣ ଅଣ୍ଟୁନାହିଁ ?'' ବ୍ୟଙ୍ଗ କରି ଗଙ୍ଗୱା ହସି ଉଠିଲା।

ରାଘପ୍ପା ବୁଝିଲା। କଥାରେ ଦୁନିଆ ଜିଣିଲାବାଲା ରାଘପ୍ପାର ବାକ୍ଶକ୍ତି ଗଙ୍ଗାୱାସହ କଥାହେଲାବେଳେ ଟିକିଏ ଦହରା ହୋଇଗଲା। ଗଙ୍ଗୱାର କଥାରେ ବିଷଥିଲା, ରାଘପ୍ପା ବୁଝିପାରିଲା। ସେ ଅନୁଭବ କଲା ଯେ ଦଶବର୍ଷ ମଧ୍ୟରେ ଯେଉଁ ପରିବର୍ତ୍ତନ ହୋଇଛି ତାହା ତାପାଇଁ ଅନୁକୂଳ ନୁହଁ। ସେଥିପାଇଁ ସେ ଏପରି ଭାବ ଦେଖେଇଲା ଯେପରି ଭଉଣୀକଥା ତା କାନରେ ବାଜିନାହିଁ। କିଟ୍ଟୀଆଡ଼କୁ ବୁଲି ମୁରୁକି ହସି ଆପଣାର ଗପାସ୍ତ୍ର ପଯୋଗ କଲା।

''କିଟ୍ଟଣ୍ଡା, ଏବେ ମୋର ପେନ୍‌ସନ୍ ନେବାର ସମୟ ହେଲାଣି, ତୋ ମା'ର ମଧ୍ୟ। ମୂଳକଥା ହେଲା ଏବେ ନୂଆ ସମ୍ପର୍କ ଲମ୍ବିଯିବ ଓ ଆମର ପୁରୁଣା ମନକଷାକଷି ପଛରେ ପଡ଼ି ରହିବ। ତୁମ ତହସିଲଦାରଙ୍କ ସହ ମୋର ବହୁଦିନରୁ ଘନିଷ୍ଠତା ଅଛି। କାଲି ତାଙ୍କ ସାଙ୍ଗରେ ମୋର ଦେଖା ହୋଇଗଲା; ଦେଖୁ ଦେଖୁ ଚିହ୍ନି ପକାଇଲେ। ତାଙ୍କ ଘରକୁ ଯିବାକୁ କହିଲେ। ମୁଁ ମଧ୍ୟ ଆମଘର ପଟେ ଆସିବାକୁ ନିମନ୍ତ୍ରଣ କଲି; ସେ ଆସିବାକୁ ରାଜି ହୋଇଗଲେ। ତୋର ଏବେ କୌଣସି କଥାକୁ ଡରିବା ଦରକାର ନାହିଁ...।'

ଏ ଯାଏଁ କିଟ୍ଟୀ ଏମିତି ବସିଥିଲା, ସତେଯେମିତି ଏସବୁ କଥାସହ ତାର କୌଣସି ସମ୍ପର୍କ ନାହିଁ। କିନ୍ତୁ ରାଘସ୍ୱାର ଶେଷ କଥା ଶୁଣିଲା ମାତ୍ରେ ତା' ମୁହଁରେ ଝାଳ କଣ୍ଟିଗଲା। ସେ ଚାକିରୀରେ ଯୋଗଦେବା ଦିନରୁ ପିଅନଠାରୁ ତହସିଲଦାର ଯାଏଁ ସଭିଏଁ ନିଜନିଜର ପଦ ଅନୁସାରେ ତାକୁ ଥଟ୍ଟା ପରିହାସ କରିଆସିଛନ୍ତି। କଥା ହେଉଛି ଦପ୍ତରରେ ତାର ଭୁଲ୍‌ଭଟକା ହୋଇଯାଏ, ଆଉ ସେଇଥିପାଇଁ ତହସିଲଦାର ତା'ଉପରେ ରାଗନ୍ତି। ସେଥିରେ ଲଜ୍ଜିତହୋଇ ସେ ଆଉରି ବେଶୀ ଭୁଲ୍ କରି ପକାଏ। ବିଶେଷତଃ ତାପରି ନୂଆକାମ ଶିଖୁଥିବା କିରାଣୀ ପୁରୁଣା କିରାଣୀ ମାନଙ୍କର ଥଟ୍ଟା ତାମସାର ପାତ୍ର ଥିଲେ। ସେ ମନରେ ଅନେକ ସ୍ୱପ୍ନ ପୋଷଣ କରିଥିଲା ଯେ ସେ ଦିନେ ପୁରୁଣା କିରାଣୀ ହୋଇଯିବ ଏବଂ ନୂଆଶିଖାଳୀର ଭୁଲଭଟକାକୁ ଧରି ତାକୁ ଧମକ୍ ଦେବ। କେବେକେବେ ମା' ତାର ସେ ସ୍ୱପ୍ନର ଲକ୍ଷ୍ୟରେ ପରିଣତ ହୋଇଯାଉଥିଲା। କିଟ୍ଟୀର ମୁହଁରେ ବିଜୟର ବାତୁଳ ହସ ଝଲସି ଉଠିଲା।

ଏବେ ବିବାହ କଥା ଉଠାଇ କିଛି ଲାଭନାହିଁ, ଏହାଭାବି ରାଘସ୍ୱା ତହସିଲଦାର କଥା ପକାଇଲା। କହିଲା ତହସିଲଦାର ଓ ସେ ଏକାସ୍କୁଲରେ ପଢୁଥିଲେ। ଏକାଠି ଫୁଟ୍‌ବଲ ଖେଳୁଥିଲେ। ସେ ମ୍ୟାଟ୍ରିକ୍ ପାଶ୍ କରି ସରକାରୀ ଚାକିରୀରେ ଯୋଗଦେଲେ। ରାଘସ୍ୱା ଚତୁର୍ଥଶ୍ରେଣୀରୁ ହିଁ ସ୍କୁଲକୁ ଦୂରୁଜୁହାର କଲା ଇତ୍ୟାଦି କଥାକୁ ରଙ୍ଗେଇ ରସେଇ ଶୁଣାଇ ସାରିଲାପରେ କହିଲା ''ଅନେକ ଡ଼େରି ହେଲାଣି, ଏବେ ଉଠେଁ।'' ଏତେବେଳଯାଏଁ ଆଖି ବଡ଼ବଡ଼ କରି ମଝିରେ ମଝିରେ ମୁରୁକି ହସି କଥାଶୁଣୁଥିବା କିଟ୍ଟୀ ଏତିକିବେଳେ ମା'କୁ କହିଲା, ''ମା' ଟିକିଏ ଚା' କର।''

ଅଧଘଣ୍ଟା ଆଗରୁ କିଟ୍ଟୀ ଏକଥା କହିଥିଲେ ଗଙ୍ଗାୱା କରିଦେଇଥାନ୍ତା। କିନ୍ତୁ ରାଘସ୍ୱାର କଥା କହିବାର ଢ଼ଙ୍ଗ ଓ କିଟ୍ଟୀର ଶୁଣିବାର ଢ଼ଙ୍ଗ ଦେଖି ବୁଦ୍ଧିମତୀ ଗଙ୍ଗାୱା ବୁଝିଲା ଏକଥାକୁ ଆଗକୁ ବରଦାସ୍ତ କରିବା ଠିକ୍‌ହବନାହିଁ। ସେ ନିରୁତ୍ସାହିତ ହୋଇ କହିଲା, ''ରାଘୁ ଚା ପିଏନାହିଁ ରେ ପୁଅ।''

କିଟ୍ଟୀ ଭାବିନଥିଲା ଯେ ମା' ଏଡ଼େ କଠୋର। କିଟ୍ଟୀର କଥାମଧ୍ୟ କାଟି ଦେଲା। ସେ ଚାକିରୀଆ। ତା'ସହ ଦେଖା କରିବାକୁ ଆସିଥିବା ଲୋକ, ପୁଣି ତହସିଲଦାରର ବନ୍ଧୁ, ତାକୁ ଏ ଅପମାନ!

ରାଘସ୍ୱା ହସି ହସି କହିଲା ''ଗଙ୍ଗାୱା, ବୟସ ବଢ଼ିବାରୁ ଶକ୍ତି କମିକମି

ଯାଉଛି। ତୁ ଆଗେ ଯେତେବେଳେ ମୋତେ ଦେଖିଥିଲୁ, ଆଉ ଏବର ଦେଖିବା ଭିତରେ ଢ଼େର ତଫାତ୍। ଏବେ ଚା ଓ ଧୂଆଁପତ୍ର ସବୁବେଳେ ଦରକାର। ହେଲେ ଚା ପିଇ କରି ଆସିଛି, ଏବେ ଦରକାର ନାହିଁ। ସେ କଥାଛାଡ଼, ତୋ ସହ ଓ କିଟ୍ଟୀ ସହ ଦେଖା ହୋଇଗଲା, ଏଇଟା ଚାଠୁ ବଳି ବଡ଼ କଥା।''

ଏତିକିରେ ସେ ଛାଡ଼ିବା ଲୋକ ନୁହେଁ। କିହିଲା ''କିନ୍ତୁ ୟାଠୁ ବଳି ବଡ଼ କଥା ଥିଲା, ନା ତାହା ବି ତୁଟିଯାଇଛି କହିଲୁ ଦେଖି ?''

ତା'ପରେ ହସରେ ଫାଟିପଡ଼ି କହିଲା, ''ଆଛା, ଏବେ ମୁଁ ଯାଏଁ। ତୋ ମା'କୁ ନେଇ ଆମଘରକୁ ଥରେ ନିଶ୍ଚୟ ଆସିବୁ ବାପା। ଗରୀବମାନଙ୍କୁ ଏକାବେଳକେ ଭୁଲିଯିବ ନାହିଁ।' ଏତକ କହି ସେ ବାହାରକୁ ବାହାରି ଗଲା। ନିଜମା'ର ଅସଭ୍ୟ ବ୍ୟବହାର ପାଇଁ କିପରି ଯେ କ୍ଷମାଚାହିଁବ ଏହା ନବୁଝିପାରି, ''ଚା ପିଇକରି ଯାଇଥିଲେ ଭଲ ହୋଇଥାନ୍ତା'' କହି ମାମୁଁକୁ ବଳେଇ ଦେବା ଲାଗି କିଟ୍ଟୀ ସାଙ୍ଗରେ ଚାଲିଲା।

ଦୁଆର ଟପିଲା ବେଳେ ରାଘବା ଗଙ୍ଗୁଆ ଉପରେ ଏକ କ୍ରୁର ଦୃଷ୍ଟି ବୁଲାଇ ନେଲା। କିଟ୍ଟୀ ଏହାକୁ ଦେଖି ପାରିଲା ନାହିଁ, ମାତ୍ର ଗଙ୍ଗୁଆ ଦେଖି ପାରିଲା। ଏତେଦିନ ବାଦ୍ ଭାଇକୁ ଦେଖି ମନରେ ଯେଉଁ ଅଳ୍ପବହୁତ ସ୍ନେହ ଜାଗି ଉଠିଥିଲା ତାହା ସେ ଚାହାଣୀକୁ ଦେଖିଲାପରେ ନିଃଶେଷ ହୋଇଗଲା ଏବଂ ସେ ମନକୁ ପୁଣି ପଥର କରିଦେଲା।

# 4. କିଟ୍ଟୀର କ୍ରୋଧ

କିଟ୍ଟୀ ଗଳିରୁ ଫେରିଲା ବେଳକୁ ''ରାଘପ୍ପା ମାମୁଁ''ର ସ୍ୱୟଂରଚିତ ଡାକଟି ତାର କାନରେ ମଧ୍ୟ ଢ଼ାଳୁଥାଏ; କିନ୍ତୁ ଘରେ ପଶିଲାବେଳେ ତାର ମନେ ପଡ଼ିଗଲା ଯେ ମା'ର ଭୁଲ୍ ପାଇଁ ତା'ଉପରେ ଟିକିଏ ବିରକ୍ତି ଦେଖାଇବା ତାର କର୍ତ୍ତବ୍ୟ। ସେ ଦୁଃଖିତ ହେଲାଭଳି ପାଦପକାଇ ଭିତରକୁ ପଶିଲା। ଖରାରୁ ଆସି ଏକାବେଳକେ ଅନ୍ଧାରିଆ ଘରେ ପଶିବାରୁ ତା' ଆଖିକୁ ସବୁ ଜାଲଜାଲୁଆ ଦିଶୁଥାଏ। ଅଣ୍ଡାଳି ଅଣ୍ଡାଳି ଦରଛିଣ୍ଡା ଆରାମ ଚଉକି ଉପରେ ଧଡ଼୍ କରି ବସିପଡ଼ିଲା। ଚୌକିର ବାକିତକ ମଧ୍ୟ ଛିଣ୍ଡିଗଲା। ଚୌକି ଭିତରୁ ବାହାରକୁ ବାହାରିଲାବେଳକୁ ତାକୁ ହସଲାଗୁଥିଲେ ସୁଦ୍ଧା ଏବେ ହସିବା ଉଚିତ ନୁହେଁ ଭାବି ରାଗିମାଗି ସପ ଉପରେ ଗଡ଼ିପଡ଼ିଲା। ଗଙ୍ଗମ୍ମା ଚଶମା ପିନ୍ଧି ରୋଷେଇ ଘରେ ବସି 'ଭକ୍ତିବିଜୟ'ର ପୃଷ୍ଠା ଓଲଟାଉ ଥାଏ। କିଟ୍ଟୀର ଧଡ଼ଧାଡ଼ ଶବ୍ଦଶୁଣି ବହିଉପରୁ ଦୃଷ୍ଟି ଉଠାଇ ସେଆଡ଼େ କାନ ଦେଲା। କିଛି ସମୟ ପର୍ଯ୍ୟନ୍ତ ଦି'ହେଁ ଚୁପ୍‌ଚାପ୍ ରହିଲେ। ଗଙ୍ଗମ୍ମା ବୁଝି ପାରିଲା ଯେ କିଟ୍ଟୀ ରାଗିଛି, କିଛି କହିଲେ ହିଁ ଫାଟି ପଡ଼ିବ। ଚୁପ୍ ବି ରହି ହେଉନାହିଁ। ଭିତରେ ଥାଇ କହିଲା,

''କିଟ୍ଟୀ ଭିତରକୁ ଆ।''

''କାହିଁକି ?''

''ଭିତରକୁ ଆ, କହୁଛି।''

''ସେଇଠୁ କହ, ଶୁଭୁଛି।''

''ଭଲ କଥା। ମୋର କହିବାର କଥା ଏତିକି ଯେ ସେ ରାଘପ୍ପାସହ ମିଳାମିଶା ମୋର ପସନ୍ଦ ନୁହେଁ।''

''ହୁଁ।''

''ତୁ ତା' ଫାନ୍ଦରେ ପଡ଼ନାହିଁ।''

''ହୁଁ।''

ଗଙ୍ଗମ୍ମା ବୁଝିଲା ଏବେ କଥାବାର୍ତ୍ତ କରିବାର ଠିକ୍ ବେଳ ନୁହେଁ। ସେ ଜାଣେ ଯେ କିଟ୍ଟୀ ତା'କଥାର ବାହାର ନୁହେଁ, କିନ୍ତୁ ତାକୁ ବୁଝାଇବାର ଏଇଟି ଉପଯୁକ୍ତ ସମୟ ନୁହେଁ। କିଟ୍ଟୀ ପାଖରେ, ତାର ଜଣେ ନିଜର ମାମୁଁ ଅଛି, ତାର ଏକ

ଝିଅ ଅଛି, ମାମୁଁ ସେ ଝିଅ ସହ ତାର ବିବାହ କରିବାକୁ ଚାହୁଁଛି, ଏ ସବୁକଥା ଗୁରୁତ୍ୱହୀନ। ତାର ଦୁଃଖ ଯେ ନିଜଘରେ ମଧ୍ୟ ତା'କଥାର ଦାମ ନାହିଁ। ସରକାରୀ ଚାକିରିଆ ହୋଇ ସୁଦ୍ଧା ତହସିଲଦାରଙ୍କର ଚିହ୍ନା ପରିଚିତ ମାମୁଁଙ୍କୁ ଚା ନଦେଇ ପଠାଇବାକୁ ପଡ଼ିଲା। ଘରେ ଯଦି ମା' ତାର ସମ୍ମାନରକ୍ଷା ନକରିବ, ତେବେ କଣ ଦପ୍ତରର ପିଅନ କରିବ! ତା ମନରେ ଏଇ ଚିନ୍ତା ଖେଳି ବୁଲିଲା। ତେଣୁ ସେ ମଉକା ଖୋଜୁଥିଲା, ମା' କଥାବାର୍ତ୍ତ ବଢ଼େଇଲେ ସେ ଦି'ପଦ ଚଢ଼ାଉତ୍ତର ଶୁଣାଇଦେବ। ପନ୍ଦର ମିନିଟ ବିତିଗଲେ ସୁଦ୍ଧା ଗଙ୍ଗୱା ମୁହଁରୁ କୌଣସି କଥା ବାହାରିଲା ନାହିଁ। ମା' ମୁହଁରୁ କଣ ଗୁଣୁଗୁଣୁ ଶବ୍ଦ ଶୁଣାଯାଉ ଥିଲା ... ମା' 'ଭକ୍ତିବିଜୟ' ପଢ଼ିବାକୁ ଆରମ୍ଭ କରିଥିଲା।

କିଟ୍ଟୀର ରାଗ ଆଉରି ବଢ଼ିଗଲା। ଏବେ ଘଣ୍ଟାଏ ଯାଏଁ ମା'ର ଧ୍ୟାନ ଆଉ କୁଆଡ଼େ ଯିବନାହିଁ। ଏବେ ତାକୁହିଁ କଥା ଆରମ୍ଭ କରିବାକୁ ହେବ।

''ମା'...ମା'...ମା''... ସେ ଚିତ୍କାର କରିଉଠିଲା। ପୁରାଣରେ ବୁଡ଼ିଯାଇଥିବା ଗଙ୍ଗୱାକୁ ତା'କଥା ସ୍ପଷ୍ଟ ଭାବରେ ଶୁଣାଗଲା ନାହିଁ। ପଚାରିଲା କଣ କହିଲୁ ?''

ରାଘପ୍ପା ଆସିଥିଲେ, ଚା କଲୁନାହିଁ କାହିଁକି ? ଶୁଭିଲା... ?''

''କଣ କହିବି ବାପା, ଛାଡ଼।''

''ଘରକୁ ଆସିବା ଲୋକ ସାଙ୍ଗରେ ଯଦି ଏମିତି ବ୍ୟବହାର କରିବୁ ତେବେ ମୋର ମାନସମ୍ଭ୍ରମ ମାଟିରେ ମିଶିଯିବ। ବୁଝିଲୁ ନାଁ ନାହିଁ? ମୁଁ ସରକାରୀ ଚାକିରିଆ। ମୋ ନିଜଘରେ ଯଦି ମୋ କଥା ନରହିବ ତେବେ ଲୋକେ କଣ କହିବେ ? ଏଇଆ କହିବେ ଯେ...।'' କିଟ୍ଟୀ କଥା ଆଗକୁ ବଢ଼ାଇଲା।

''କିଟ୍ଟୀ, ଚା ସରିଯାଇଛି ବାପା। ସକାଳେ ଆଣିବାକୁ କହିଥିଲି ପରା।''

'ଆରେ ଆରେ, ଭୁଲି ଯାଇଛି। ମା' ପରା ସକାଳେ ଶେଷ ଚା ଚାମଚଟିଏ ପକାଇ ଡ଼ବାଝାଡ଼ି ଦେଖେଇ ଦେଇଥିଲା। ମୁଁ 'ଏଇ ଆଣୁଛି' କହି ଅଫିସର କାଗଜପତ୍ରରେ ବୁଡ଼ି ଯାଇଥିଲି।' ପାଶୋରି ଯାଇଥିବା ସବୁକଥା ମନେପଡ଼ିଲା। ହେ ଭଗବାନ୍, ମୋ ସ୍ମରଣ ଶକ୍ତିକୁ ଧିକ୍! କିଟ୍ଟୀର ରାଗର ଦାଢ଼ ମୁଣ୍ଡା ହୋଇଗଲା। ହସ ମଧ୍ୟ ଲାଗିଲା। ସେତେବେଳେ ଚା ପାଇଁ ମା ସହ ଅଧିକ ଜିଗର ଧରିନାହିଁ ଭାବି ନିଜକୁ ବାହବା ଦେଲା। ନହେଲେ ତହସିଲଦାରର ପରିଚିତ ମାମୁଁ ଆଗରେ ସରକାରୀ ଚାକିରୀଆର ହାଣ୍ଡିଶାଳର ଖାଲିଡ଼ବାର କରୁଣ ଅବସ୍ଥାର ରହସ୍ୟ ପ୍ରକାଶ ପାଇଯାଇଥାନ୍ତା, ଏବଂ ଆଜି ଯିଏ ଝିଅ ଦେବାକୁ ଆସିଥିଲା କାଲି ସେ ହୁଏତ ନାହିଁ କରିଥାନ୍ତା। ଏହାଭାବି ମନକୁ ମନ ହସି ଚୁପ୍ ରହିଲା।

ମା' ଆଗରେ ଭାରୀ ରାଗିଲା ମୁହଁ ଉପରେ ହସ ଫୁଟାଇବାକୁ ତାକୁ ଆତ୍ମସମ୍ମାନ ହାନୀ ହେଲାପରି ଲାଗିଲା। ତେଣୁ ସେମିତି ଭାରୀମୁହଁ କରି କୋର୍ଟ ଓ ଟୋପି ପିନ୍ଧି ବାହାରକୁ ବୁଲି ବାହାରି ଗଲା।

ଏଇ ପରିବର୍ତ୍ତିତ ଦୃଶ୍ୟର ସୁରାକ୍ ଗଙ୍ଗୱାକୁ ମିଳିଲା ନାହିଁ। ସେ ନିଜ ବୁଦ୍ଧିରୁ

ମନମୁତାବକ ଏକ ଉପାୟ ବାହାର କଲା। ଶନିବାର ଥିବାରୁ ଗତକାଲି ହନୁମାନ ଜୀଓଙ୍କ ମନ୍ଦିରରେ ଯେଉଁ ନଡ଼ିଆ ଫଟାଇଥିଲା ସେଥିରୁ ଏବେବି ଫାଳେ ଥାଏ। ସେ ତାକୁ କୋରିଲା। ଭିତରୁ ଭଜା ଚଣାଡ଼ାଲି ବାହାର କଲା। ଫେରିଲେ କିଟ୍ଟୀ ରୋଟିରେ ଲଗାଇ ଖାଇବ ବୋଲି ବଢ଼ିଆ ନଡ଼ିଆଚଟଣୀ କରି ରଖିଲା। ଘରକୁ ଫେରି କିଟ୍ଟୀ ସନ୍ଧ୍ୟାହ୍ନିକ ସାରି ଖାଇବସିଲା। ଖରାବେଳେ ମା'ସହ କରିଥିବା କଳିକୁ ମେଣ୍ଟାଇବା ଲାଗି ତାକୁ ଏକ ଭଲ ଅବସର ମିଳିଲା। ଚଟଣୀର ବହୁତ ପ୍ରଶଂସା କରି ମା ସହ ଆପୋସ କରିନେଲା। 'କଣ କରିବି ପୁଅ, ତୁ'ତ ଏତେ ରାଗିଗଲୁ', କହି ଗଙ୍ଗମ୍ମା ମଧ୍ୟ ଶାନ୍ତିପାଠ କଲା।

ମା ପୁଅ ବହୁତରାତିଯାଏଁ ଢ଼େର କଥା ହେଲେ।

# 5. ପିଛିଲା ସ୍ମୃତି

''କିଟୀରେ, ଆଜି ଖରାବେଳେ ତୁ ରାଗିଗଲୁ। ତୋତେ ସେ ରାଘସ୍ବା କଥା ଜମା ମାଲୁମ ନାହିଁ। ଆମେ ସମସ୍ତେ ବହୁତ ସହିଛୁଁ। ମୋତେ ଏଇ ବେଦନା ସବୁବେଳେ କୋରି ଖାଉଛି। ତୋତେ ଅବୁଝାଭାବି ଯେତେ ମିଛ କହିପାରୁଛି କହିବାକୁ ଦେ। ମୋ ଆଗରେ ଯେତେ ଭଲେଇ ହେଉଛି ହେଉ। କିନ୍ତୁ ମନେରଖିବୁ, ତୋତେ ସେ ଯେମିତି ଧୋକା ନଦିଏ। କୌଣସି କଥାରେ ଦ୍ୱିଧା କରିବା ଲୋକ ସିଏ ନୁହେଁ, ସେ କ'ଣ ଦି'ଚାରିଟା ମିଛ କହିବାକୁ ଆଗପଛ ଭାବିବ! ତାର ଚିକ୍କଣିଆ କଥାରେ ତୁ ଯେମିତି ତରଳି ନଯାଉ!

''ତାରି ଯୋଗୁଁ ଆମେ ଆଜି ଦରିଦ୍ର। ତୁ କଣ ଭାବିଛୁ ଆମେ ସବୁବେଳେ ଗରିବ ଥିଲୁ। ନାହିଁରେ ପୁଅ, ମୋରି ଦେହରେ ସେରେ ସୁନା ଲଦା ହୋଇଥିଲା। ସବୁ ଗହଣା ପିନ୍ଧିଲେ ହାତ ଉଠାଇ ହେଉନଥିଲା। ପ୍ରତିବର୍ଷ ଲକ୍ଷ୍ମୀନାରାୟଣଙ୍କ ଦର୍ଶନ ପାଇଁ ମୁଁ ଏଇ ନାୟବାଣୀ ଲକ୍ଷ୍ମୀବାଈଙ୍କ ସହିତ ଯାଉଥିଲି। ସିଏ ସେସବୁ ଦେଖିଛନ୍ତି। ସେଇଥିପାଇଁ ସେ ମୋତେ ଆଜିଯାଏ ଏତେ ଖାତିର କରନ୍ତି। ଛାଡ଼ ସେ ସବୁ କଥା! ଏବେ ତାକୁ ମନେପକାଇ ଲାଭବା କ'ଣ ?

''ମୋର ଯେତେବେଳେ ସେମିତି ଦିନ ଥିଲା, ଏଇ ରାଘସ୍ବା ଆସି ତୋ ବାପାଙ୍କ ଆଗରେ ନାକଘଷି କହିଥିଲା, 'ଜମି ବନ୍ଧା ପଡ଼ିଛି, ପାଞ୍ଚଶହ ଟଙ୍କା ଦିଅ, ଅଛସଛ ମୁକୁଳାଇ ଆଣିବି! ତୋ ବାପାଙ୍କର ସ୍ୱଭାବ ଭାରୀ ଉଦାର ଥିଲା। କଣ କରିଥାନ୍ତେ କହ ? ତୁ ସେତେବେଳେ ଏଡ଼େ ବକଟେ। ସିଏ ମୋତେ ଏକାଛାଡ଼ି ଚାଲିଗଲେ.....।' ମା କଇଁ କଇଁ କାନ୍ଦି କହିଲା, 'ଏବେ ସବୁ କଥା ଭୁଲିଯା। କାନ୍ଦିକାଟି ଭାଙ୍ଗିପଡ଼ିବା ସ୍ତ୍ରୀଲୋକ ମୁଁ ନୁହେଁ। କିନ୍ତୁ ତୋ ଆଗରେ ତାଙ୍କ କଥା ମନେ ପଡ଼ିଗଲେ, ମନଖରାପ ହୋଇଯାଏ! ଆଜି ଯଦି ସିଏ ଥାନ୍ତେ, କିଏ ଜାଣେ କେତେ ଖୁସି ହେଉଥାନ୍ତେ। ତୋ ପାଇଁ ବହୂ ଖୋଜିବାକୁ କାହିଁକୁଆଡ଼େ ଯାଉଥାନ୍ତେ। ଛାଡ଼ ଏଇ ନୀଚକୁ ପାଞ୍ଚଶହଟଙ୍କା ଦେଇ ଜମି ଖଲାସ କରାଇ ଦେବା ପରେ ଯାର ଦର୍ପ ଆରମ୍ଭ ହୋଇ ଗଲା। ଯାର ସ୍ତ୍ରୀ ଚମ୍ପୀ ଆଜିକାଲି ଐଶ୍ୱର୍ଯ୍ୟ ଭିତରେ ବୁଡ଼ିରହିଛି। ସେ ସମୟରେ ତୋ'ବାପା 'ଯାଅ, ତୁମ ସ୍ତ୍ରୀ ପାଇଁ ଦି'ଖଣ୍ଡ ନୂଆଶାଢ଼ୀ କିଣିଆଣବୋଲି ନକହିଲା ଯାଏଁ ଚମ୍ପା କପାଳରେ ନୂଆଶାଢ଼ୀ ଯୁଟୁ ନଥିଲା। ଏମିତି

ବି ଦିନେ ସମୟ ଥିଲା !....ଶେଷରେ ସେଇ ଉପକାରର ଫଳ ସେ ଦେଲା ନାଁ ? ଇଏଭାଇ ନାଁ ପୂର୍ବ ଜନ୍ମର ଶତ୍ରୁ !

''ତୋର ଆଉରି ଜଣେ ମାମୁଁ ଅଛି, ଏଇ ରାଘସ୍ବାଠୁ ସାନ। ତା ନାଁ ଭେଙ୍କଟୀ।...ଜାଣେ ନାହିଁ ଏବେ ଅଛି କି ମଲାଣି। ତା'ଖବର ଶୁଣିଥିଲି ଦଶବର୍ଷ ତଳେ। ଟିକିଏ ଆଡ଼ପାଗଲା ଥିଲା। କିନ୍ତୁ ମନଟା ଭଲ। ଭଗବାନଙ୍କ ପ୍ରତି ଭାରୀ ଭକ୍ତି। ଅନ୍ୟର ଲକ୍ଷେ ଟଙ୍କା ପଡ଼ିଥାଉ ପଛକେ ପଇସାଟିଏ ଛୁଇଁବ ନାହିଁ। ସାରାଦୁନିଆର ସବୁ ଖରାପ ଗୁଣ ଆମଘରେ ଏଇ ରାଘସ୍ବାଠାରେ। ଆମ ଭେଙ୍କଟୀ ଟିକିଏ ଆଡ଼ପାଗଲା। ଚତୁର୍ଥ ଶ୍ରେଣୀଯାଏଁ ପଢ଼ିଥିଲା। ରଘୁର ବିବାହପରେ କିଏ ଜଣେ ଥଟ୍ଟାରେ କହିଲା ଯେ ଏବେ ତୋତେ ମଧ୍ୟ ବାହା କରିଦେବେ। ଏତିକି ଶୁଣି ଘରଛାଡ଼ି କୁଆଡ଼େ ପଳେଇ ଗଲା। କିଛିଦିନ ପୁନାରେ ଥିଲା; ବୋକାଟା, କାହାରିକୁ କହିଲା ନାହିଁ; ତା ଅଂଶ ନିଜେ ପାଇ ଯିବ ଭାବି ଏଇ ରଘୁ ତାର ଖୋଜଖବର ନେଲା ନାହିଁ। ନିଜେ ଧାରୱାଡ଼ରେ ଘରକରି ନିତି କିଛିନାଁକିଛି ଧନ୍ଦା କରିବାକୁ ଲାଗିଲା।

''ପୁନାରେ କିଏ ଜଣେ ଗୁଜରାଟୀ ଲୋକଘରେ ଭେଙ୍କଟୀ ପୂଜାପାଠ କାମ କରୁଥିଲା। ସେ ଜଣେ ବିରାଟ ଶେଠ। ତା'ଉପରେ ପୂରା ବିଶ୍ୱାସ ରଖିଥିଲେ। କେଜାଣି କିଏ କଣ ଶିଖେଇ ଦେଲା, ତାଠାରେ ମଧ ଧନଲାଳସା ଦେଖାଦେଲା। ଦିନେ ଦି'ହଜାର ଟଙ୍କାର ଚେକ୍‌ରେ ଜାଲ ଦସ୍ତଖତ୍‌କରି କେଉଁ ବେଙ୍କରୁ ପଇସା ହାତେଇଲା। ମୂଳରୁ ତ ଅଧାପାଗଲା ଥିଲା, ସେ କାରସାଦୀ ସେ ଏକା କରି ପାରିନଥିବ। ସେଇ ସମୟରେ ପୁନାରେ ତାର ଖୋଜଖବର ପାଇ ରଘୁ ତା'ପାଖରେ ଦି'ଦିନ ରହିକରି ଆସିଥାଏ। ସେଇ ତାକୁ ମନ୍ତ୍ର ଦେଇଥିବ।

''ଦି'ଚାରିଦିନ ଭିତରେ ରହସ୍ୟ ଫିଟିଗଲା। ସେ ଶେଠ ପୋଲିସରେ ଖବର ଦେଲା। ବାସ୍, ଏକାବେଳେକେ ପୋଲିସ ପହଞ୍ଚିଯାଇ ଏ ପାଗଳକୁ ଥାନାକୁ ନେଇଗଲେ। ତହୁଁ ସେ କାହାରିଦ୍ୱାରା ରଘୁପାଖକୁ ତାର କଲା; 'ମୋତେ ଜେଲ ହୋଇଯିବ, ଉଦ୍ଧାର କର।' ତାର ପାଇ ରଘୁ ଆମ ପାଖକୁ ଦଉଡ଼ି ଆସିଲା। ୟାଙ୍କ ପାଦତଳେ ପଡ଼ି କହିଲା, ''ଯେମିତି ହେଉ ମୋ ଭାଇକୁ ଖଲାସ କରି ଆଣନ୍ତୁ। ଥରେ ଯଦି ଲୋକ ଜାଣିଯିବେ ଯେ ଆମବଂଶରୁ ଜଣକୁ ଜେଲ ହୋଇଯାଉଛି, ତେବେ ମୁଁ ଏବେ ଯାହାବା ଦି'ପଇସା ଭିଆଉଛି, ତା'ବି ପାରିବି ନାହିଁ।'' ମୋର ମନରକ୍ଷା କରିବା ପାଇଁ ଇଏ ସେକାମରେ ହାତଲଗାଇଲେ। ସେଇ ରାତିରେ ରଘୁକୁ ସାଙ୍ଗରେ ନେଇ ପୁନାରେ ପହଞ୍ଚିଲେ। ରଘୁର ସବୁ ଜମି ବନ୍ଧାପଡ଼ିଥାଏ। ଇଏ ପାଞ୍ଚହଜାର ଟଙ୍କାର ଜାମିନ ଦେଲେ; ଭେଙ୍କଟକୁ ଖଲାସ କରି ଧାରୱାଡ଼ ନେଇ ଆସିଲେ।

''ତାଙ୍କ ନିଜର ଅନେକ କାମଦାମ, ତଥାପି ସବୁବେଳେ ଭେଙ୍କଟ ଉପରେ ନଜର ରଖୁଥିଲେ। କିଏ ଜାଣେ, ଏଇ ନୀଚ ରଘୁ କଣ କଲା। ଦିନେ ଇଏ ଭେଙ୍କଟକୁ ରଘୁସହ ଶୋଇବାକୁ ପଠାଇଲେ। ରଘୁ ତା ମୁଣ୍ଡରେ କି ଭୂତ ପଶାଇଲା କେଜାଣି, ସେଇ ରାତିରେ ତାକୁ ଗାଁରୁ ଘଉଡ଼ି ଦେଲା, ଆଜିଯାଏ ସେ ପାଗଳାର

ଖବର ନାହିଁ।

''ତା ପରେ ଯାହା ହବାର ଥିଲା ହେଲା। ତା' ପାଇଁ ଜାମିନ୍ ହୋଇ ଇଏ ଯେଉଁ ଭୁଲ୍ କରିଥିଲେ, ସେଇଥିପାଇଁ ସମ୍ପତ୍ତି, ଘରଦ୍ୱାର ହରାଇ ବସିଲେ। ଘରର ସବୁ ଦାମିକା ଜିନିଷ ପାଣିଦରରେ ନିଲାମ ହୋଇଗଲା। ସାରାଘର ଉଜାଡ଼ ହୋଇ ଗଲା। ସେତେବେଳେ ରଘୁ ଆସି କାନ୍ଦିବାର ବାହାନା କଲା। ବହୁତ ଛଇ ଦେଖେଇଲା। ସେ ସବୁ ୟାଙ୍କୁ ଭଲ ଲାଗିଲା ନାହିଁ। ଏଇ ଚିନ୍ତାରେ ତାଙ୍କର ଛାତିରୋଗ ହେଲା। ସେଇଥିରେ ଭୋଗିଭୋଗି ଶେଷରେ ସେ....କହି ଗଙ୍ଗାଓ୍ୱା କଇଁ କଇଁ ହେଲା। କିଛି ସମୟ ପରେ ଶାନ୍ତ ହୋଇ ପୁଣି କହିଲା,

''ଛାଡ଼, ଏବେ କାନ୍ଦିଲେ କଣ ମିଳିବ! ଏସବୁ ରାମାୟଣକୁ ଘାଣ୍ଟି କଣ ହବ! କେତେବର୍ଷତଳେ ଏଇ ରଘୁ ଧାରଓ୍ୱାଡ଼ ଛାଡ଼ି ବିଦ୍ଦଗୋଠରେ ରହିବ ବୋଲି ଗଲା। ସେଠାରେ ଚାଷବାସ କରି ଅମୀର ହୋଇଗଲା। ଏବେ ଆମକୁ ଆପଣାର ଧନ ଦେଖେଇ ଉପହାସ କରିବାକୁ ଆସିଛି।

''କିଟ୍ଟର୍ଣ୍ଣା, କେତେକ କଥା ଅଛି ଯାହାକୁ ବତାଇବାକୁ ପଡ଼େ, ଆଉ କେତେକ କଥା ଅଛି ବତେଇବାକୁ ପଡ଼େନାହିଁ...ସାର କଥା ହେଉଛି ଏଇ ଯେ ଏ ଲୋକ ବିଶ୍ୱାସଭାଜନ ନୁହେଁ, ତୁ ତା କଥାରେ ପଡ଼ିବୁ ନାହିଁ।''

ଗଙ୍ଗୱା ଆଉ କେତେ ଦରକାରୀ ଅଦରକାରୀ କଥା କହିଲା। ରାତି ବାରଟା ଯାଏଁ ମା ପୁଅ କଥାବାର୍ତ୍ତା ହେଲେ। ଚାକିରୀ କଲାପରେ ପ୍ରଥମ ଥର ପାଇଁ କିଟ୍ଟୀ ମା'ଠାରୁ ଏତେକଥା ଶୁଣିଲା। ଅତୀତର ଚିତ୍ର ପ୍ରତ୍ୟକ୍ଷ ଭାବରେ ଦେଖି ନପାରିଲେ ସୁଦ୍ଧା ତାର ମାନସପଟରେ ସାରାଚିତ୍ର ବିସ୍ତାରିତ ରୂପ ନେଲା। ଏହାଫଳରେ ମା' ପ୍ରତି ତା ମନରେ ଅଧିକ ମମତା ଜାତ ହେଲା।

# ୬. ସଂଘର୍ଷ

ମା' ମରହଟ୍ଟିଆ, ସେ ଆଧୁନିକ। ପ୍ରତି ଯୁଗର ନିଜସ୍ୱ ସମସ୍ୟା ଥାଏ। ତାର ବିଚାରକୁ ବିରୋଧ କରି ଆଗେଇବା କିଟ୍ଟୀ ପକ୍ଷରେ ଅସାଧ ଥିଲା। ତାର ବିବାହ କରିବା ପାଇଁ ସାହସ ନଥିଲା। ଆମ ସମାଜରେ ପୁଅଟିଏ ଯେତେବେଳେ ଅଠର କୋଡ଼ିଏ ବର୍ଷରେ ପାଦ ଦିଏ, ସେତେବେଳେ କନ୍ୟାବାପାମାନେ ତାକୁ ଭୁଲେଇ ଭାଲେଇ ତା ମନରେ ଏ ଭାବ ଜାତ କରାନ୍ତି ଯେ ବିବାହ ଜୀବନ ପାଇଁ ଦରକାରୀ। ଯେଉଁ ଯୁବକମାନଙ୍କ ପାଖରେ ନିଜସ୍ୱ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ନଥାଏ ସେମାନେ ସେଇ ସିଦ୍ଧାନ୍ତ ଆଗରେ ନିଜ ମୁଣ୍ଡ ନୁଆଇଁ ଦିଅନ୍ତି। ବିବାହ ନାଁ ଶୁଣିଲେ କିଟ୍ଟୀ ଡରେ, କିନ୍ତୁ ଏକଥା ସେ ମାନିନେଇଥାଏ ଯେ ଆଜି ନହେଲେ କାଲି ବିବାହ କରିବାକୁ ପଡ଼ିବ। ତା ଉପରେ ପୁଣି ପ୍ରତିଦିନ ଦପ୍ତରରେ ତିକ୍ତ ଅନୁଭୂତି ଜାତହେଉଥାଏ।

ସଡ଼କ ଉପରେ ବିଦାୟ ନେଲାବେଳେ ରାଘସ୍ୱାର ସେଦିନର ଶେଷକଥାତକ ଦପ୍ତରରେ ମଧ୍ୟ କିଟ୍ଟୀ କାନରେ ଧ୍ୱନିତ ହେଉଥିଲା। "କିଟ୍ଟର୍ଣ୍ଣା, ମୁଁ ଆଉ ତୋର ମା ପେନସନ୍ ନେବା ଅବସ୍ଥାରେ ପହଞ୍ଚିଲୁଣି। ଆମକଥା ଆମରି ପରି ହବ। ଏଥିରେ ତୁ ତୋ ମା ଉପରେ ରାଗିବୁ ନାହିଁ। ପୁରୁଣା କାଳିଆ ସ୍ତ୍ରୀଲୋକେ ଏ ନୂଆ ଯୁଗ କଥା ବୁଝିପାରିବେ ନାହିଁ। ଆମର କଳିତକରାଳ ଲାଗିରହିଥିବ। ମୂଳକଥା ହେଲା ତୁମେମାନେ ଅତୀତ ପ୍ରତି ଧ୍ୟାନ ନଦେବା ଉଚିତ। ଆଗକୁ ଆଗେଇ ତୁମମାନଙ୍କୁ ଯେପରି ହେବାକୁ ପଡ଼ିବ ତାକୁଇ ଦେଖ...।" ରାଘସ୍ୱାର ଏକଥା ତାକୁ ଠିକ୍ ମନେହେଲା।

କିଟ୍ଟୀ ଆଗରେ ଅନେକ ସମସ୍ୟା। ତା' ଭିତରେ ନୂଆ ମନୁଷ୍ୟତା ଜନ୍ମନେବାକୁ ଲାଗିଛି। ଅତୀତ ସହ ସୁସଂପର୍କ ରକ୍ଷା କରିବା ଦିନକୁ ଦିନ କଷ୍ଟକର ହୋଇଉଠୁଛି। ଆପଣାର ଛାତ୍ର ଜୀବନରେ ଯାହାଙ୍କ ଘରେ "ବାର-ଭୋଜନ"* କରୁଥିଲା, ତାଙ୍କୁ ମୁହାଁମୁହିଁ ହୋଇଗଲେ ନମସ୍କାର କରିବା ଉଚିତ କି ନୁହେଁ ଏଇ ଧର୍ମ ସଂକଟରେ ସେ ପଡ଼ିଯାଉଥିଲା। ଏମିତି ଉପକାରୀ ଲୋକ କିଟ୍ଟୀପାଇଁ ସାରାଗାଁରେ ପୂରି ରହିଥିଲେ। ସେ ପେଣ୍ଟଛାଡ଼ି ପାଇଜାମା ପିନ୍ଧିବା ଆରମ୍ଭ କରିଛି, ଏଥିପାଇଁ ଲୋକେ ତାକୁ କାଳେ ହସିବେ ଏକଥାକୁ ତାର ଭୟ। ବାଳ କ୍ରମଶଃ ଲମ୍ବା ହେଉଛି, ଚୁଟି ସାନ

* ଅବସ୍ଥାପନ ଘରମାନଙ୍କରେ ଗରୀବ ବିଦ୍ୟାର୍ଥୀମାନେ ପ୍ରତ୍ୟେକ ସପ୍ତାହ ପାଳିକରି ଭୋଜନ କରୁଥିଲେ। ଏବେ ଏ ରୀତି ଲୋପ ପାଇଯିବାକୁ ବସିଲାଣି।

ହେବାକୁ ଲାଗିଛି। ସେ ଦର୍ପଣ ଆଗରେ ଠିଆ ହୋଇ ସିଂଥା କାଟିବା ଆରମ୍ଭ କରିଛି। ଚୁଟିକୁ ଲୁଚାଇବା ପାଇଁ ବଡ଼ ଚତୁରତାର ସହିତ ଏକ କଳାଟୋପି ପିନ୍ଧିନିଏ। କେବେ କେମିତି ଚୁଟିର ବାଳ ଟୋପି ବାହାରକୁ ବାହାରିପଡ଼େ, ତା ଉପରେ ବନ୍ଧୁମାନେ ଟିକାଟିପ୍ପଣୀ ଦିଅନ୍ତି। ଥରେ ଥରେ ସେ ଭାବେ ଯେ କହିଦବ 'ମୋ ଲୁଗାପଟା, ମୋ ବାଳ, ଏସବୁ ମୋର ବ୍ୟକ୍ତିଗତ ବସ୍ତୁ। ଏଥିରେ ତୁମର କଣ ଯାଏ ଆସେ!' କିନ୍ତୁ ଏସବୁ କହିବା ପାଇଁ ମଧ୍ୟ ତାର ତାଠାରୁ ଅଭିଜ୍ଞ କିରାଣୀର ପରାମର୍ଶ ନେବା ଦରକାର। ସେ ଭାବୁଥିଲା ଆଜି ନହେଲେ କାଲି ଏଇ ଲୋକମାନେ ତାର କାମରେ ଆସିବେ। ଦ୍ୱିତୀୟତଃ ସେ କାହାକୁ କିଛି କଡ଼ା କରି କହିପାରେ ନାହିଁ।

ଏଇ ଡ଼ର କିଙ୍ଗୀର ସବୁଠାରୁ ବଡ଼ ସମସ୍ୟାଥିଲା। ଛାତ୍ରଜୀବନରେ ଅନେକ କଷ୍ଟ ପାଇଲା ବେଳେ ସେ ନିଜକୁ ଏଇଆ କହି ବୁଝାଉଥିଲା ଯେ ସେ 'ବାର-ଭୋଜନ' କରୁଥିବା ପିଲା, ରାଗିଲେ ଚଳିବ କେମିତି! ନିଜକୁ ଏମିତି ନିୟନ୍ତ୍ରଣ କରିବା ତାର ଅଭ୍ୟାସରେ ପଡ଼ିଯାଇଥିଲା। ସେଥିପାଇଁ ସେ ଏବେ ରାଗି ପାରେ ନାହିଁ। ଆଉ ଯଦିବା କେବେ କେମିତି ରାଗେ, ତେବେ ସେ ନିଜଘରେ ମା'ଉପରେ। ନିଜର ରାଗକୁ ବ୍ୟକ୍ତକରିବାର ଅଭ୍ୟାସର ଅଭାବରୁ ତାର ଏବେ ନିଜର ବାପା ମା'ଠାରୁ ଭଗବାନ ପର୍ଯ୍ୟନ୍ତ ସଭିଙ୍କୁ ଅଭିଶାପ ଦେବାକୁ ଇଚ୍ଛାହୁଏ। ଏପର୍ଯ୍ୟନ୍ତ ମା ବହୁଥର ନିଜର ବଡ଼ଲୋକୀର ବର୍ଣ୍ଣନା କରି ସାରିଛି। ସେ ସବୁ ଯଦି ଥାନ୍ତା, ତେବେ ତା ଭିତରେ ଆଜି କଣ ଏଇ ମାନସିକ ଦୁର୍ବଳତା ଥାନ୍ତା ?

ଏସବୁ ବିରକ୍ତି ସତ୍ତ୍ୱେ ମଧ୍ୟ କିଙ୍ଗୀର ମା ପ୍ରତି କରୁଣା ଓ ମମତା ଥିଲା। କିଙ୍ଗୀ ଚାକିରୀ ପାଇଲା ପରେ ପଡ଼ୋଶୀ ଦେଶାଇବାବୁଙ୍କ ଘର ତାକୁ ଖାଇବାକୁ ଡ଼ାକିଲେ ଓ କହିଲେ, ''କିଙ୍ଗୀ ତୋ ମା ଅନେକ ଦୁଃଖ ସହିଛି। ସେ ଯେ ତୋତେ କେମିତି ପାଳିଲା ସେ କଥା ଆମେ ଜାଣୁ। ତାକୁ ସୁଖ ଦେବୁ ପୁଅ। ଚାକିରୀ ମିଳିଥିବାର ଖୁସିରେ ସେ କହିଲା, 'ତାରି ପାଇଁ ତ ମୋତେ ଚାକିରୀ ମିଳିଛି।' କଥାଟି ତା ମୁହଁରୁ ବାହାରିବାମାତ୍ରେଇ ସେ ବୁଝିପାରିଲା ଯେ ସେ ବୋକାଙ୍କ ପରି କଥା କହି ବସିଛି। ସେତିକି ନୁହେଁ, ଭିତରକୁ ପରଷିବାକୁ ଆସୁଥିବା ଦେଶାଇବାବୁଙ୍କର ଝିଆରୀ ସେ କଥା ଶୁଣି ଫେଁ କରି ହସି ପକାଇଲା। ଦେଶାଇବାବୁଙ୍କ ସ୍ତ୍ରୀ ବିଶୁବାଈ କହିଲେ 'ବାୟାଟିଏ! ଆମ କହିବାର ଉଦ୍ଦେଶ୍ୟ ତାହା ନୁହେଁ; ଏବେ ତୁ ବାହା ହୋଇ ଘର କରିବାକୁ ଉପଯୁକ୍ତ ହେଲୁଣି। କାହାରି ବୁଦ୍ଧିରେ ପଡ଼ିବୁ ନାହିଁ। ମନେରଖିବୁ।' କିଙ୍ଗୀ ସେ କଥାକୁ ମନେପକାଇ ନିଜର ଅଯୋଗ୍ୟତା ତଥା ଅପମାନକୁ ଅନୁଭବ କରେ।

କଚେରୀରେ ଘଟଣାଟିଏ ଘଟିଲା। କିଙ୍ଗୀର ସ୍ଥାନ ବଦଳିଗଲା। ପିଆଦା ହୁସେନକୁ କିଙ୍ଗୀ ଟିକିଏ ଡ଼ରେ। ଦପ୍ତରରେ ସଭିଏଁ ତା ସଂପର୍କରେ ଏକଥା ଜାଣନ୍ତି ଯେ ସେ ଭାରୀ ହୁସିଆର ଓ ଲାଭ ଉଠାଇ ପାରିବାର ବହୁତ ଯୋଗ୍ୟତା ତାର ଅଛି।

କିଙ୍ଗୀର ହୁସେନ ସହ ଆଜିଯାଏଁ କେବଳ ମାମୁଲି ପରିଚୟ ଥିଲା। କଚେରୀରେ ହାଜିର ହେବା ଆଗରୁ କିଙ୍ଗୀ ଯେତେବେଳେ ସାବୁନ ସଫା କାମିଜ, ଖାକି ପ୍ୟାଣ୍ଟ ଓ ଟୋପି ପିନ୍ଧି ପହଞ୍ଚୁଥିଲା; ସେତେବେଳ ମାଡ଼ ମାରିଲା ଭଙ୍ଗୀରେ ହୁସେନ ତା ଆଡ଼େ ଚାହିଁଥିଲା। ସେଇ ଦିନୁ କିଙ୍ଗୀର ଚାଲିଚଳନ, ବେଶଭୂଷା ଓ କଥାବାର୍ତ୍ତା ଆଉ କାହା ଦୃଷ୍ଟିରୁ ଏଡ଼ାଇ ଯିବ ପଛକେ ହୁସେନର ତୀକ୍ଷ୍ଣ ଦୃଷ୍ଟିରୁ ଉଦ୍ଧାର ପାଇବ ନାହିଁ। ରାସ୍ତାରେ ଦେଖା ହେଲେ ହୁସେନ ଯେତେବେଳେ ତାକୁ ସଲାମ କରେ କିଙ୍ଗୀର ମନେହୁଏ ସେ ଯେମିତି ତାକୁ ତାଚ୍ଛଲ୍ୟ କରୁଛି। କିନ୍ତୁ ଆଜି ହୁସେନ ନିଜେ ଆସି ତାକୁ ସଲାମ କଲା। କିଙ୍ଗୀ ତାର ଏ ନୂଆ ଢଙ୍ଗକୁ ଦେଖି ହତଚକିତ ହୋଇ ପଚାରିଲା, 'କଥା କଣ ?'

ହୁସେନ କହିଲା, 'ବାହାରେ କିଏ ଜଣେ ସାହେବଙ୍କୁ ସାକ୍ଷାତ କରିବାକୁ ଚାହେଁ।''

ଚୁପ୍‌ଚାପ୍ କିଙ୍ଗୀ ବାହାରକୁ ଆସିଲା। ସେଠାରେ 'ତହମଦ୍'ପିନ୍ଧା କଳାଚଶମାଧାରୀ ଜଣେ ଲୋକ ଠିଆ ହୋଇଥିଲେ। ଟିକିଏ ଦୂରରେ ହୁସେନ ଏମିତିଭାବରେ ଠିଆ ହେଲା ଯେମିତି ସେ ମଧ ସେମାନଙ୍କ କଥାରେ ଅଂଶ ଗ୍ରହଣ କରୁଛି। କିଙ୍ଗୀ ବୁଝିପାରିଲା ଏ ସବୁ ଆସନର ମହିମା। ଏବେ ବି କିଙ୍ଗୀ ନୂଆ ଜାଗାର ଦାୟିତ୍ୱ ନେଇନାହିଁ। ଦିନଟିଏ ଆଗରୁ ତାର ବଦଳି ଆଦେଶ ଆସିଥାଏ। କିଙ୍ଗୀ ଜାଣିନଥିଲାଯେ ଏତେ ସହଳ ଏ ବଦଳି ଖବର ଦପ୍ତର ବାହାରେ ରାଷ୍ଟ୍ର ହୋଇ ଯିବ।

ଖଣ୍ଡିକାଶ ମାରି କଳାଚଶମାଧାରୀ କହିଲେ, 'ମୋ ନାଁ କୀଟଲ୍ଲୀ ଭୀମର୍ଣ୍ଣା। ମୋର ଗୋଟିଏ କଳିତକରାଳଜନିତ କେଶ ଆପଣଙ୍କ ପାଖକୁ ଆସିବ। କେଶ୍‌ର ସବୁ କ୍ଲିଅର ହୋଇ ଯାଇଛି, ଏତେବେଳକୁ ମିଳାମିଶା ହୋଇ ସାରନ୍ତାଣି। ଆପଣଙ୍କ ଜାଗାରେ ଯେଉଁ ସାହେବ ଥିଲେ ସେ ପୂରା ରାଫ୍‌ନୋଟ କରିରଖିଛନ୍ତି। ତାଙ୍କର ବଦଳି ହୋଇଯିବାରୁ ଆମେ ଚିନ୍ତାରେ ପଡ଼ିଛୁ। କେଶ୍ କ୍ଲିୟର। ଦୟାକରି ତାଙ୍କରି ନୋଟକୁ ଯଦି ଆପଣ ପେଶ୍ କରି ଦିଅନ୍ତେ ! କେଶ୍ କ୍ଲିୟର ଥିବା ସତ୍ତ୍ୱେ.....।'

ସବୁଶୁଣି କିଙ୍ଗୀ ଏତିକି ଉତ୍ତର ଦେଲା, 'ମୁଁ ଏଯାଏଁ ଚାର୍ଜ ନେଇ ନାହିଁ। ପରେ ଦେଖିବା।'

ହୁସେନ ଆଶ୍ଚର୍ଯ୍ୟ ହୋଇଗଲା। କିଙ୍ଗୀର ଉତ୍ତର ଶୁଣି ତା'ମନରେ ଶ୍ରଦ୍ଧା ଜାତ ହେଲା। 'ଦେଖିବା' ଏଇ ସରଳ ଶବ୍ଦର କେବଳ ଗୋଟିଏ ଅର୍ଥ ହୁସେନ ବୁଝେ। 'ଦେଖିବା' କହୁଥିବା ସାହେବହିଁ ଅସଲି ସାହେବ। 'ସ ଏବ ବକ୍ତା ସଚ ଦର୍ଶନୀୟ': ଯେପରି ବିକ୍ରମାଦିତ୍ୟଙ୍କର ସିଂହାସନ ଉପରେ ବସିଲେ ପିଲାଟିଏ ମଧ ନ୍ୟାୟ ଦେଇ ପାରେ, ସେଇପରି ଭଲ ଆସନ ମିଳିଲେ ବେକୁଫ୍ ମଧ ସାହେବ ପାଲଟି ଯାଇପାରେ— ଆସନଉପରେ ହୁସେନର ଏଇପରି ଅଗାଧ ବିଶ୍ୱାସ ଥିଲା। ତାର ଅନୁଭବର ଏଇ ରତ୍ନାକର ମଧ୍ୟରେ କିଙ୍ଗୀ ଏକ ନୂତନ ରତ୍ନ। ନୂଆ ଜାଗାର ଚାର୍ଯ ନ ନେଇ ମଧ କିଙ୍ଗୀ ଯଦି 'ଦେଖିବା' କହିପାରୁଛି, ତେବେ ତାହା ଆସନର ମହିମାବିନା ଆଉ ବା କଣ ହୋଇପାରେ !

ହୁସେନ ମନରେ କିଟ୍ଟୀ ପ୍ରତି ଯେଉଁ ଶ୍ରଦ୍ଧାଭାବ ଜାତହୋଇଥିଲା, ତାରି ଉତ୍ସାହରେ ସେ କଳାଚଷମାଧାରୀ ଉପରେ ଫାଟିପଡ଼ିଲା, ''କଣ କେଶ୍ କ୍ଲିୟର, କେଶ୍ କ୍ଲିୟର ବକ୍ ବକ୍ କରୁଛି! ଚୌକିକୁ ସମ୍ମାନ ଦେଇ ଶିଖ! କଳାଚଷମାଧାରୀ ଅଣ୍ଡାଳିଲାକରି ବି' ତିନି ଟଙ୍କାର ନୋଟ୍ ଖସ୍ ଖସ୍ କରିବାକୁ ଲାଗିଲା। ହୁସେନ ଧମକ ଦେଇ କହିଲା, 'ସାହେବ ନୂଆ, ସେଥିପାଇଁ ଏତେ ବାହାଦୁରୀ ଦେଖେଇ ହେଉଛ।' ତାପରେ କିଟ୍ଟୀକୁ କହିଲା, 'ସାହେବ, ଆପଣ ଭିତରକୁ ଯାନ୍ତୁ, ମୁଁ ୟା ସହ କଥା ହଉଛି।'

ପରବର୍ତ୍ତୀ ପନ୍ଦର ମିନିଟରେ କିଟ୍ଟୀ ହାତରେ ଏକ ପାଞ୍ଚଟଙ୍କିଆ ନୋଟ୍ ପହଞ୍ଚିଗଲା। ହୁସେନର ପକେଟରେ ମଧ୍ୟ ଟଙ୍କାଟିଏ ପହଞ୍ଚି ଯାଇଥାଏ। ଏପରି ପ୍ରାପ୍ତିର ଅନୁଭୂତି ଏଯାଏଁ କିଟ୍ଟୀର ହୋଇ ନଥିଲା। ହୁସେନର ବନ୍ଧୁତାର ଅର୍ଥ ଯାହାକେବଳ ଶୁଣିଥିଲା। କିଟ୍ଟୀର ଏଜାଗାକୁ ବଦଳି ହୋଇଥିବାରୁ ପ୍ରଥମରୁହିଁ ଅନେକଙ୍କର ଗାତ୍ରଦାହ ଆରମ୍ଭ ହୋଇଥିଲା। ହେଡ୍‌କ୍ଲର୍କ ଯୋଶୀରାମରାୟ ଜାଣିଥିଲେ ଯେ କଳାଚଷମାଧାରୀ ଲୋକଟି ଯୋଗୁଁ ହିଁ ତହସିଲଦାର କିଟ୍ଟୀପରି ନୁଆଶିଖାଳୀକୁ ସେ ସ୍ଥାନଟି ଦେଇଛନ୍ତି। କିନ୍ତୁ ପ୍ରଥମ ଦିନରୁ ହିଁ କିଟ୍ଟୀର ପାଞ୍ଚଟଙ୍କା ପ୍ରାପ୍ତି ଓ ହୁସେନର ବନ୍ଧୁତା ହେତୁ ସେ ବହୁତ ଖୁସି ହେଲେ। ହୁସେନର ଧାଁ ଦଉଡ଼ ଉପରେ ନଜର ରଖିଥିବା କେତେଜଣ କ୍ଲର୍କ ଦପ୍ତରରୁ ବାହାରିବା ମାତ୍ରେ କିଟ୍ଟୀକୁ ଘେରି ଚାଦୋକାନକୁ ଭିଡ଼ି ନେଇ ଗଲେ। ଆଜି ଯାଏଁ କିଟ୍ଟୀ ଚାଦୋକାନକୁ ଯାଇ ନଥିଲା, କିନ୍ତୁ ସେ ଦିନ ହୁସେନର ସ୍ନେହର ପ୍ରାରମ୍ଭୋତ୍ସବ କରିବାକୁ ପଡ଼ିଲା। ଫଳରେ ଚା ଦୋକାନରେ ପ୍ରବେଶ କରିବାକୁ ପଡ଼ିଲା।

ଛୁଆଁଛୁଇଁ ଭୟରେ କିଟ୍ଟୀ କେବଳ କପେ ଦୁଧ ନେଲା। ବନ୍ଧୁମାନଙ୍କ ପାଇଁ ପନ୍ଦର ଅଣା ଖର୍ଚ୍ଚ କରି ଦେଲା। କିଟ୍ଟୀ ଖୁଆଉଥିବା ଜଳଖିଆର ରସାସ୍ୱାଦନ କରୁକରୁ ରାମରାୟ ଅଧଘଣ୍ଟା ଯାଏଁ ଟିକାଟିପ୍ପଣୀ ଦେଇ ଦେଇ ତାମୁଣ୍ଡରୁ ଝାଳ ବୁହାଇଦେଲା। ପଚାରିଲା, ତୁମର ଚା ଦରକାର ନାହିଁ, ସିଗାରେଟ୍ ଦରକାର ନାହିଁ, ଧୂଆଁପତ୍ର ଦରକାର ନାହିଁ, ଗପସପ ଦାରକାର ନାହିଁ, ସ୍ତ୍ରୀ ଦରକାର ନାହିଁ— ତେବେ କୃଷ୍ଣବାବୁ, ତୁମେ ଚାକିରୀ କରିଛ କାହିଁକି?' କିଟ୍ଟୀ ଏ ପ୍ରଶ୍ନର ଉତ୍ତର ଦେଇ ପାରିଲା ନାହିଁ। ପାର୍ଟି ସାଙ୍ଗ ହେଲାବେଳକୁ ରାମରାୟ କହିଲା, 'କୃଷ୍ଣବାବୁ! ଏ ପଇସା ଏଇଥିରେ ଯିବା ଦରକାର। ଇଏ ଅଲଗା କାମ ପାଇଁ ରହିବ ନାହିଁ। ଯଦି ସେପରି ନହେଉ ଥାନ୍ତା ତେବେ ଆମେ ସଭିଏଁ ଅମୀର ହୋଇଯାନ୍ତୁଣି।' ତାଙ୍କର ଏ ଉପଦେଶ ଉପରେ ବାକି ସଭିଏଁ ଗଭୀର ସମ୍ମତି ପ୍ରକାଶ କଲେ।

କିଟ୍ଟୀ ଉପରେ ଏ ଉପଦେଶର ପ୍ରଭାବ ମୂହୂର୍ତ୍ତକ ପାଇଁ ମାତ୍ର ପଡ଼ିଲା। ପକେଟରୁ ଖୁଚୁରା ପଇସାର ଶବ୍ଦ ଆସୁଥାଏ। ଓଲେଇ ଗାଈପରି କିଟ୍ଟୀ ଘର ଆଡ଼କୁ ମୁହାଁଇଲା। ବାଟରେ ଆଗଆଡୁ ନାୟେବ ଲକ୍ଷ୍ମୀବାଇ ଆସୁଥିବାର ଦେଖାଗଲା। ତାଙ୍କୁ ଦେଖି ନ ଦେଖିଲା ପରି ହୋଇ ସେ ବିନା କଥାବାର୍ତ୍ତାରେ ଘର ଆଡ଼େ ମୁହାଁଇଲା।

ତହସିଲଦାର ନିଜେ ସେ କେସ୍‌ରେ ଆଗ୍ରହୀ ଥିଲେ ବୋଲି ହେଡ଼କ୍ଲର୍କ ଯୋଶୀରାମ ରାୟ ଜାଣିଥିଲେ। ତା ପୂର୍ବରୁ ଥିବା କିରଣୀ କିଛି ନୋଟ ତିଆରି କରି ରଖିଛି କି ନାହିଁ ଜାଣିବା ପାଇଁ କିଙ୍ଗୀ ନିଜ ଟେବୁଲସାରା ଏମୁଣ୍ଡ ସେମୁଣ୍ଡ ଖୋଜିଲା। କିନ୍ତୁ କିଛି ମିଳିଲା ନାହିଁ। ସେ ପରାମର୍ଶ ପାଇଁ ରାମରାୟ ପାଖକୁ ଗଲା। ଯୋଶୀରାମରାୟଙ୍କୁ ଲୋକେ ଶନିରାମରାୟ ବୋଲି କହୁଥିଲେ। କିଙ୍ଗୀ ଚା ପିଆଇଥିବା ଦିହେଁ ରାମରାୟ ଭାବିଥିଲା ଯେ ଯାକୁ ପାନେ ଦେବା ଦରକାର। କିଙ୍ଗୀ ଆଣିଥିବା କାଗଜକୁ ଦେଖି ''କେସ୍‌ତ ପୂରା କ୍ଲିୟର'' କହି ଚଷମାଧାରୀ କୋଟଲ୍ଲୀ ଭୀମଣ୍ଡାର ଅନୁକୂଳ ନୋଟ ଲେଖି ଦେଲା। ସେଇ ନୋଟକୁ କିଙ୍ଗୀ ନିଜହାତରେ ସୁନ୍ଦର ଅକ୍ଷରରେ ଲେଖି ତହସିଲଦାରଙ୍କ ଦସ୍ତଖତ ପାଇଁ ପଠାଇ ଦେଲା।

ଦଶମିନିଟ ପରେ ତହସିଲଦାର ସାହେବଙ୍କ ଠାରୁ ଡ଼କରା ଆସିଲା। କିଙ୍ଗୀର ହାତଗୋଡ଼ ପାଣି ହୋଇଗଲା। ରାମରାୟ ପାଖକୁ ଯାଇ ପଚାରିଲା, ''ଏହାର କଣ ଉତ୍ତର ଦେବି ?'' ରାମରାୟ ତାକୁ ଉତ୍ସାହିତ କରି କହିଲା, ''ତହସିଲଦାର ଏ ବିଷୟରେ ଛେନା ଜାଣେ! ଯଦି କିଛି କହେ, କହିଦେବ 'ମୁଁ ସବୁ ନିୟମ ମୁତାବକ କରିଛି। କେସ୍ କ୍ଲିୟର।' ଏବେ ତୁମେ ଯଦି ଢ଼ିଲମ୍ ଢ଼ିଲା ହେବ ପରେ ସେ ତୁମରି ମୁଣ୍ଡରେ ନଡ଼ିଆ ଭାଙ୍ଗିବ।''

କିଙ୍ଗୀ ତହସିଲଦାରଙ୍କ ଅଫିସରେ ପଶିଲା। ତହସିଲଦାର ଗୁମ୍ ହୋଇ ବସିଥିଲେ। କିଙ୍ଗୀ ତାଙ୍କ ଟେବୁଲ୍ ଉପରେ ହାତରଖି ପଚାରିଲା, 'ଡ଼ାକିଲେ ଆଜ୍ଞା ?'

ସାହେବ ସଯୋରେ ଫାଟି ପଡ଼ିଲେ, 'ଆଗେ ଟେବୁଲ ଉପରୁ ହାତ ଉଠାଅ!' କିଙ୍ଗୀ ଚଟ୍‌କରି ହାତଉଠେଇ ନେଇ ସାବଧାନ ଭଙ୍ଗୀରେ ଠିଆହୋଇଗଲା।

ତହସିଲଦାର ସିଧାସଳଖ ପଚାରିଲେ, 'କେତେ ଲାଞ୍ଚ ନେଇଛ ?'

''ନାହିଁ ଆଜ୍ଞା ସାହେବ..''

''ଏ ସାହେବକା ବଚ୍ଚା, ମୋ କଥାର ଜବାବ ଦିଅ!'' ହାତଚକିତ କିଙ୍ଗୀ ଚୁପ୍‌ଚାପ୍ ଠିଆହୋଇ ରହିଲା 'ନୋଟ ଲେଖିଛ ନୋଟ! ତୁମକୁ କିଏ ମାଟ୍ରିକ୍ ପାଶ୍ କରାଇଲା ? ତୁମକୁ କିଏ ଚାକିରୀରେ ଭର୍ତ୍ତି କଲା। ଯାଅ, ଯାଇ ଗଧଚରାଅ।''

'କାହିଁକି ସାହେବ, ମୋର କିଛି ଭୁଲ୍....?'

'ଭୁଲ୍ ନୁହେଁ ଗଧ! ଲାଞ୍ଚ ନେଇଛ କି ନାହିଁ? ସେ ପାର୍ଟିର ନୋଟରେ ଏ ପଏଣ୍ଟ ଲେଖିନାହଁ କାହିଁକି ?'

କିଙ୍ଗୀ କିଛି ବୁଝିଁ ପାରିଲା ନାହିଁ, ସେ ଛାନିଆ ହୋଇ କହିଲା, 'ଭୁଲ୍ ହୋଇଛି ଆଜ୍ଞା।'

ତହସିଲଦାରଙ୍କ ରାଗ ଟିକିଏ କମିଲା। 'କୃଷ୍ଣବାବୁ, ତୁମେ ନୂଆ ଆସିଛ। ଆଉ କାହାକୁ ଏ ଜାଗା ଦେଇଦେଲେ ସର୍ବନାଶ କରି ରଖିଦେବ ଭାବି ଏ ଜାଗା ତୁମକୁ ଦେଲି। ଆସିବାର ଦି' ଦିନ ବି ହୋଇନାହିଁ ତୁମେ ମଧ ସେଇଆ ଶିଖିବାକୁ ଆରମ୍ଭ କରିଦେଲ ? ପଇସା ରଖିବ ନାହିଁ, ମୁଁ ସେ କଥା କହୁନାହିଁ। ମାତ୍ର

ଆଇନ ମୁତାବକ ଚଳ। ଖାଅ, ତାକୁ ହଜମ କର। ଯାହାକୁ ଆଜି ଖାଇଲ ତାକୁ ଯଦି କାଲି ବାନ୍ତି କରିବାକୁ ପଡ଼ିଲା, ସେଥିରେ ଲାଭ କଣ? ଆଗେ ଚାକିରୀ ସମ୍ଭାଳିବା ଦରକାର। ପରେ ଯା ଇଚ୍ଛା ତା କର।'

ଭଗବାନଙ୍କ ଦୟାରୁ ରାମରାୟ ଶିଖାଇଥିବା କଥାସବୁ ସାହେବଙ୍କ ରାଗ ହେତୁ ଭୁଲିଗଲା। ଆଉ କିଛି ନ କହି ସାହେବ ଯେମିତି ବତାଇ ଦେଲେ ସେମିତି ନୋଟ ଲେଖିକରି ସାହେବଙ୍କ ଆଗରେ ରଖିଲା। ସାହେବ ତାର ବନାନ ଭୁଲ୍ ଉପରେ ବିରକ୍ତ ହୋଇ ଦସ୍ତଖତ୍ କରିଦେଲେ।

ଆପମାନିତ କିଙ୍ଗୀ ଲାଜରେ ମୁହଁ ଲାଲ କରି ଆପଣା ଟେବୁଲ ଆଡ଼କୁ ଆଗେଇଲା। ରାମ ରାୟକୁ ତାର ମୁହଁ ଦେଖାଇବାକୁ ଇଚ୍ଛା ହେଲାନାହିଁ। ସେ ଶିଖାଇଥିବା କଥାତ ସିଆଡ଼େ, ନିଜ ମୁହଁରେ ଦୋଷ ସ୍ୱୀକାର କରିବା, ସାହେବଙ୍କ କହିବା ମୁତାବକ ନୋଟ ଲେଖିବା, ସାହେବଙ୍କ ରାଗ କମିବାର ଦେଖି ନିଜେ ସନ୍ତୁଷ୍ଟ ହେବା, ଆପଣାର ଏଇ ସବୁ ଦୁର୍ବଳତା ତା ଆଗରେ ନାଚି ନାଚି ତାକୁ ଲଜ୍ଜିତ କରିବାକୁ ଲାଗିଲା।

କାଗଜରେ ବୁଡ଼ିଯାଇଥିବା ଭାବ ଦେଖାଇ କ୍ଲର୍କମାନେ ନିଜନିଜର ହସ ଚାପି ମୁହଁ ତଳକୁ ପୋତି ବସିଥାନ୍ତି।

ସେଦିନ ସଂଜ ବେଳକୁ କିଙ୍ଗୀର ସମସ୍ତ ବଡ଼ିମା ଚୁର୍‌ମାର୍ ହୋଇଯାଇଥାଏ। ସେ ମନରେ ଭାବିଲା, ହଁ, ଏ କଥା ଠିକ୍ ଯେ କାମ ଯଦି ଠିକ୍ ନହୁଏ ତେବେ ସୁଦ୍ଧା ଏ ଗାଳିରୁ ଉଦ୍ଧାର ପାଇବା ଦରକାର। ହୁଏତ ମୋର ସ୍ୱଭାବ ସୁଲଭ ବିନୟ ହେତୁ କାମ ଚଳାଇ ନେଇ ହେବ, ମାତ୍ର ଏଗାଳି ଯେମିତି ଶୁଣିବାକୁ ନପଡ଼େ। ଗାଳି ଛୁଞ୍ଚପରି ଫୋଡ଼ିଯାଉଛି।

# 7. ଗଙ୍ଗୱାର ଚିନ୍ତା

ସେ ଦିନ ସଞ୍ଜ ଛଅଟା ବେଳେ ଗଙ୍ଗୱା ଦେଶାଇଙ୍କ ଘରକୁ ଗଲା। ଦେଶାଇଙ୍କର ବଡ଼ପୁଅ ଅଚ୍ୟୁତ ଯେବେଠୁ କମର୍ସ ପଢ଼ିବା ପାଇଁ ବମ୍ବେ ଗଲାଣି, ସେବେଠୁ ଦ୍ୱିତୀୟ ପୁଅ ବସନ୍ତରାଓ ଘରଧନ୍ଦାରେ ବଡ଼ ଆଗ୍ରହ ଦେଖାଉଛି ଓ ଦାୟିତ୍ୱ ନେଉଛି। ଗଙ୍ଗୱା ଓ ତାର ପୁଅକୁ ବସନ୍ତ ରାଓ ଦି' ଆଖିରେ ଦେଖିପାରେ ନାହିଁ। ତାର କାରଣ ହେଲା କିଟ୍ଟୀ ପ୍ରତିବର୍ଷ ପରୀକ୍ଷାରେ ପାଶ୍ କରିଗଲା; ପ୍ରଥମ ପ୍ରୟାସରେ ମ୍ୟାଟ୍ରିକ୍ ପରୀକ୍ଷାରେ ପାଶ୍ କରି ବସନ୍ତରାୟଠାରୁ ଆଗେଇ ଗଲା। 'ଆମପାଖରେ ବସନ୍ତ ଆଉ କିଟ୍ଟୀ ଭିତରେ କିଛି ପାର୍ଥକ୍ୟ ନାହିଁ ବୋଲି ଯେତେବେଳେ ଦେଶାଇବାବୁ କିଟ୍ଟୀକୁ କହନ୍ତି, ବସନ୍ତ ଭାବେ ଯେ ବାପାଙ୍କର ସ୍ନେହ କିଟ୍ଟୀ ପ୍ରତି ଅଧିକ। ଏହାଛଡ଼ା ସେ ଏକଥା ମଧ୍ୟ ଜାଣିପାରିଥାଏ ଯେ, ଦିମାସ ହେଲାଣି, କିଟ୍ଟୀର ମା କେବେକେବେ ରହସ୍ୟାତ୍ମକ ଭାବେ ଦଶପନ୍ଦର ଟଙ୍କା ନେଇ ଯାଉଛି। ଦୁଃସାହସିକ ସିନେମା ଦେଖିବା ବସନ୍ତରାୟର ବଡ଼ସଉକ। କିନ୍ତୁ ସେଦିନ ବାପା ପଇସା ଦେବାକୁ ନାହିଁ କରି ଦେଲେ। ସେଇ ଦୁଃଖରେ ଜୀବନ ବ୍ୟର୍ଥ ହୋଇଗଲାପରି ବସନ୍ତରାଓ ବୋଧ କଲା। ବାରଣ୍ଡାରେ ସପଡପରେ ବସି ସେ ମାଛି ଘଉଡ଼ାଉ ଥାଏ, ଏତିକି ବେଳେ ଗଙ୍ଗୱା ଆସି ପହଞ୍ଚିଲା।

ବସନ୍ତରାଓ ଦୁଃଖରେ କହିଲା, 'ଆସନ୍ତୁ, କେତେଟଙ୍କା ଦରକାର? ବାରିପଟେ ଆମେ ପଇସାଗଛ ଲଗେଇ ରଖିଛୁଁ।'

କଥାଟା ଗଙ୍ଗୱା ଦେହରେ ବାଜିଲା। ସେ ଭାରୀ ତେଜରେ ଭିତରକୁ ଗଲା। ଦେଶାଇଜୀ ଆରାମରେ ପାନଚୋବାଉ ଥିଲେ। ତାଙ୍କ ଆଗରେ ଠିଆ ହୋଇ ପାଟିକରି କହିଲା ହଁ ଗୋପର୍ଣ୍ଣା, ଆମେ ତୁମ ଆଶ୍ରାରେ ଅଛୁଁ ଏକଥା ସତ; ହେଲେ ମୁଁ ମାଗିଲେ ତୁମେ ଯେ ପଇସା ଦିଅ, ସେ ପଇସା କାହାର? ସେ କଥାଟି ଟିକିଏ ନିଜ ପୁଅକୁ ବୁଝାଇ ଦିଅ।

ସବୁ ଶୁଣି ଦେଶାଇଜୀ ବହୁତ ଦୁଃଖିତ ହେଲେ। ପୁଅକୁ ଡ଼ାକି ଶାସନ କଲେ। ସେ ସିନେମା ଦେଖିବାପାଇଁ ତିନିଅଣା ପଇସା ନମିଳିଥିବା କଥା ଗଜର ଗଜର ହୋଇ ଚାଲିଗଲା। ଗଙ୍ଗୱା କହିଥିବା କଥା ତା କାନରେ ଧ୍ୱନିତ ହେଉଥାଏ।— କାହାର ପଇସା? ଏ ପ୍ରଶ୍ନର ଅର୍ଥ ସେ ଭାବିବାକୁ ଲାଗିଲା।

ଗଙ୍ଗୱା ଏମିତି ସମୟରେ ଆସିବାର କିଛି ବିଶେଷ କାରଣ ଅଛି, ଏକଥା ଦେଶାଇବାବୁ ବୁଝିଥିଲେ। ତାଙ୍କୁ ଆଉଜି ବସି ବଡ଼ ମନଯୋଗ ସହକାରେ ଗଙ୍ଗୱାର କଥା ଶୁଣିଲେ। ଗଙ୍ଗୱାକୁ ସେ ଭାରୀ ଆଦର କରନ୍ତି। ହେଲେ ବିନାକାରଣରେ ତା ଘର କଥାରେ ମୁଣ୍ଡ ଖେଳାଇବାକୁ ସେ ଚାହୁଁ ନଥିଲେ। କାରଣ ତହିଁରେ କେତେବେଳେ ଚଟ୍‌କରି ମୁଣ୍ଡକଟି ଯିବାପରି ଘଟଣା ଘଟିବ– ଏଇ କଥାକୁ ତାଙ୍କର ଡ଼ର। ନିଜର ସବୁ ସମସ୍ୟାକୁ ଗଙ୍ଗୱା ତାଙ୍କ ମୁଣ୍ଡରେ ଲଦି ଦେଉଥିଲା। ସେ କିନ୍ତୁ ତାର ଜରୁରୀ କାମତକହିଁ କରିଦେବାକୁ ଚାହୁଁଥିଲେ। 'କିଟ୍ଟୀ ମୋ ସାଙ୍ଗରେ ଆଗପରି କଥା ହୁଏ ନାହିଁ, କିଟ୍ଟୀ ବହୁତ ପଇସା ଖର୍ଚ୍ଚ କରୁଛି', ରାତିରେ ବହୁତ ଡ଼େରିରେ ଘରକୁ ଫେରୁଛି' ଇତ୍ୟାଦି ଗଙ୍ଗୱାର ଛୋଟ ଛୋଟ କଥା ଦେଶାଇବାବୁ ଶୁଣିବାକୁ ପସନ୍ଦ କରୁ ନଥିଲେ। ଦେଶାଇଜୀ ଯେଉଁ କାମରେ ହାତ ଦିଅନ୍ତି ତାକୁ ପୂରା କରିସାରି ଦମ୍ ନିଅନ୍ତି। ଯେତେଦୂର ସମ୍ଭବ କୌଣସି କଥାରେ ମୁଣ୍ଡ ଖେଳାନ୍ତି ନାହିଁ। କାରଣ ଅନ୍ୟଲୋକର ସମସ୍ୟାରେ ଅନାବଶ୍ୟକ ଭାବରେ ଜଡ଼ିତ ହେବା ଉଚିତ ନୁହେଁ, ଏହା ଭାବି ଯେତେ ଦୂର ସମ୍ଭବ ସେ ଦୂରେଇ ରହୁଥିଲେ। ମାତ୍ର ସେ ନଚାହିଁଲେ ସୁଦ୍ଧା ଗଙ୍ଗୱା ନିଜର ସମସ୍ୟାକୁ ତାଙ୍କ ମୁଣ୍ଡରେ ଲଦି ଦିଏ।

'ଗୋପର୍ଣ୍ଣା, ଏମାସ କିଟ୍ଟୀ କେତେଟଙ୍କା ଦେଇଛି।'

'କୋଟ ଟିଏ କରିବ କହୁଥିଲା, ପାଞ୍ଚଟଙ୍କା ଦେଇଥିବ।'

ଗଙ୍ଗୱା କହିଲା, 'ତାକୁ ଥରେ ବୁଝେଇ ଦିଅ ଯେ ତୁ ବହୁତ ଖର୍ଚ୍ଚ କରୁଛୁ। ସେ ଭାରୀ ବଦ୍‌ଖର୍ଚ୍ଚ କରୁଛି।'

ପୁରୁଷ ପୁଅର ସମସ୍ୟା ସହିତ ପରିଚିତ ଦେଶାଇ ଟିକିଏ ବିରକ୍ତ ହୋଇ କହିଲେ, 'ତୁମ ପୁଅ କିଛି ମୂର୍ଖ ମଫସଲିଆ ନୁହେଁ। ଭଲ ଚାକିରୀ କରୁଛି। ପଇସା କମାଉଛି। ଏବେ ବଡ଼ ହେଲାଣି। ତୋର ଏମିତି କଥା କହିବାଟା ଅନୁଚିତ। ଆଉ ଯଦିବା ତୁ କହୁ ତେବେ ହୁଏତ ଚଳିବ, ମାତ୍ର ମୋର ଏମିତିକଥା ମୁହଁରୁ ବାହାର କରିବା ଅନୁଚିତ। 'ପ୍ରାପ୍ତେତୁ ଷୋଡ଼ଶେ ବର୍ଷେ ପୁତ୍ରଂ ମିତ୍ରବଦାଚରେତ୍।'

ଏସବୁ 'ଯୁଯମ-ବୟମ୍'ର ଜଞ୍ଜାଳ ଗଙ୍ଗୱା ପକ୍ଷରେ ଅସହ୍ୟ। ଅସ୍ଥିର ହୋଇ କହିଲା, ତୁମେ ତେବେ କହୁଛ ଯାହାକିଛି ହେଉଛି ଚୁପ୍‌ଚାପ୍ ଦେଖି ଚାଲିଥିବି।' ତାର କୋହ ଉଠିଲା।

ତାର ଏ ଢ଼ଂଗରୁ ଦେଶାଇବାବୁଙ୍କୁ ବୋଧ ହେଲା ଯେପରି ତା'ମନରେ ଅନ୍ୟକିଛି ଅଛି। ଏ ପରିବାରର କଥାରେ ମୁଣ୍ଡ ପୂରାଇବେ ନାହିଁ ଭାବି ଦେଶାଇଜୀ କିଛି ସମୟ ଚୁପ୍ ରହିଲେ। କିନ୍ତୁ ଗଙ୍ଗୱା ପଣତରେ ମୁହଁ ଢ଼ାଙ୍କିବାରୁ ସେ ଚୁପ୍ ରହି ପାରିଲେ ନାହିଁ। ପଚାରିଲେ, 'କାହିଁକି, କଣ ହେଲା ?'

'ହବ କଣ ? ସବୁଦିନପରି ରାଗିମାଗି କଚେରୀରୁ ଘରକୁ ଫେରିଲା। କହିଲା ରାତିରେ ଗୀତ ଶୁଣିବାକୁ ଯିବି। ଜାଣ କେଉଁଠିକି....'' ତାପରେ ଆଉ ଗଙ୍ଗୱା କହିପାରିଲା ନାହିଁ।

ତାକୁ ସାନ୍ତ୍ୱନା ଦେଇ ଦେଖାଇବାକୁ ସବୁ କଥା ପଚାରିଲେ। ଗାଉଣା ବାଜଣାର ଆୟୋଜନ ଗଙ୍ଗୱାର ଭାଇ ରାଘପ୍ପାଘରେ ହୋଇଥାଏ।

କଥା ହେଲା ଏମିତି। ରାଘପ୍ପା ଯେତେବେଳେ ଦପ୍ତରକୁ ଆସି କିଟ୍ଟୀକୁ ନିମନ୍ତ୍ରଣ କଲା, କଥାଟା କିଟ୍ଟୀ ମନକୁ ପାଇଲା ନାହିଁ। ଗୀତ ପ୍ରତି କିଟ୍ଟୀର ଆଗ୍ରହ ଔରଙ୍ଗଜେବପରି। କିନ୍ତୁ ରାଘପ୍ପା ଯାଉ ଯାଉ କହିଗଲା ଯେ ତହସିଲଦାର ସାହେବ ମଧ୍ୟ ସଙ୍ଗୀତ-ସଭାକୁ ଆସୁଛନ୍ତି। ସେଠାରେ ତୋତେ ବ୍ୟକ୍ତିଗତ ଭାବେ ତାଙ୍କ ସହ ପରିଚୟ କରାଇ ଦେବି। ସେଥିପାଇଁ ସେଠାକୁ ଯିବାଲାଗି କିଟ୍ଟୀର ପ୍ରବଳ ଇଚ୍ଛା ହେଲା। କିଟ୍ଟୀ ଭାବିଲା ଗାଳିଦବା କଳାରେ ବିଶାରଦ ତହସିଲଦାରଙ୍କ ସହ ଯଦି ପରିଚୟ ହୋଇଯାଏ ତେବେ ଗାଳିର ତୋପ ମୁହଁରୁ ହୁଏତ ନିସ୍ତାର ମିଳିପାରେ। ତା ପାଇଁ ରାଘପ୍ପା ମାମୁଁ ଭଗବାନ ରୂପରେ ଆସିଥିଲେ।

ନୂଆ ବିଭାଗକୁ ବଦଳି ହେଲାପରେପରେ କିଟ୍ଟୀର ବ୍ୟବହାର ବଦଳି ଯାଇଥାଏ ସକାଳେ ଡେ଼ରିରେ ଉଠେ, ସଞ୍ଜରେ ବୁଲିବାକୁ ଯାଇ ଡେ଼ରିରେ ଫେରେ, ଫେରିବା ମାତ୍ରେ ହିଁ ଭୋକ ହେଉନାହିଁ ବାହାନା କରି ଦି'ଗୁଣ୍ଡା ଗିଳିପକେଇ ବିଛଣାରେ ପଡ଼ିଯାଏ। ଏଇ ସବୁ ହଇରାଣ ସେ ଆରମ୍ଭ କରିଛି। ବାହାରୁ ଦି' ପଇସା ଆସୁଥିବାରୁ କ୍ରମଶଃ ନୀରବ ରହିବାକୁ ଚେଷ୍ଟା କରୁଛି। ଘରେ ଏବେ କମ୍ କଥାବାର୍ତ୍ତା କରେ। ଆଗର ପିଲାଳିଆମୀ ଏବେ ନାହିଁ। ସେଥିପାଇଁ ଘରେ ନୀରବତାର ରାଜତ୍ୱ। ଆଗପରି ଖାଇଲାବେଳେ ମା ସହ କଥା ନକହିବାର କାରଣ ହେଲା ସେ ଏବେ ମା ଠାରୁ କେତେକ କଥା ଲୁଚାଇ ରଖୁଛି। ସମ୍ଭବତଃ କିଟ୍ଟୀର ଘରେ ଆଦୌ କଥା ନ କହିବାର କାରଣ ଏହାହିଁ ହୋଇପାରେ ଯେ ତାର ଉପରି ରୋଜଗାରର କଥା ଯଦି ମା ଜାଣିଯାଏ ତେବେ ସେ ହୁଏତ ତାଠୁ ପଇସା ମାଗିନେବ....ଅଥବା ଲାଜରେ।

ଏଦ୍ୱାରା ଗଙ୍ଗୱା ଅନ୍ତରିକ ଭାବରେ ଦୁଃଖିତ ହେଲା। ଅଧିକ କାମ କରି ଥକା ହୋଇ ଯାଉଛି, ଏହାଭାବି ଅନେକ ଦିନଯାଏଁ ଚୁପ୍‌ରହିଲା। ଶେଷରେ ମାତୃତ୍ୱର ଅଧିକାର ନେଇ କହିଲା, କିଟ୍ଟୀ, ତୋ କାମଦାମ ବିଷୟରେ ତହସିଲଦାର ସାହେବ କଣ କହୁଛନ୍ତି। ତାଙ୍କ ମର୍ଜି ଜଗି ଚଳିବୁ ବାପା। ଆଜି ଭାରୀ ଭଲ ସପୁରୀ ଅଛି। ଗରମ ଗରମ ଦିଟାରି ଖଣ୍ଡ ଛାଣି କରି ଦଉଛି, ତାଙ୍କ ଘରେ ଦେଇ ଆ।'

ଏମିତି ବାଜେକଥା ଶୁଣିଲେ କିଟ୍ଟୀ ଚିଡ଼େ। ଯେଉଁ କଥା ମାର ମୁଣ୍ଡରେ ପଶିବ ନାହିଁ, ସେ କଥାରେ ସେ କାହିଁକି ଯେ ମୁଣ୍ଡ ଖେଳାଏ ଏହାଭାବି ସେ ରାଗିଯାଏ। ମୁଁ ଏବେ ବଡ଼ ହୋଇଗଲିଣି, ମା କାହିଁକି ଏକଥା ବୁଝିପାରୁନାହିଁ ଭାବି ସେ ବିରକ୍ତ ହୁଏ। ମା ଯେତେବେଳେ ତହସିଲଦାରର ନାଁ ଧରେ, ସେତେବେଳେ ତାର ମନେହୁଏ ମା ଯେମିତି ଜଣେଇ ଦେବାକୁ ଚାହୁଁଛ ଯେ ମୋରି ଯୋଗୁଁ ତୋତେ ଚାକିରୀ ମିଳିଛି। ଏହାଦ୍ୱାରା ସେ ଅପମାନିତ ହେଲାପରି ରାଗରେ ପାଟି

କରିଉଠେ। ପୁଅର ଦପ୍ତରରୁ ରାଗିମାଗି ଘରକୁ ଫେରିବା କଥାଟି ଗଙ୍ଗୱାର ନିତି ଦିନିଆ ଆଭ୍ୟାସରେ ପଡ଼ି ଗଲାଣି।

ଏସବୁ ଗଙ୍ଗୱା ସହିଯାଏ। କିନ୍ତୁ ଯେଉଁ ଗଛ ମୂଳରେ ସେ ଦଶବର୍ଷ ଧରି ପାଣି ଢ଼ାଳି ଆସିଛି ସେଇ ଗଛରେ ଫଳ ଫଳିବା ସମୟକୁ ତାକୁ ଚୋରାଇବା ପାଇଁ ରାଘପ୍ପା ପହଞ୍ଚିଗଲା, ଏକଥା ତାପକ୍ଷରେ ଅସହନୀୟ ଓ ଅକ୍ଷମଣୀୟ।

ସେ ଦିନ କିନ୍ତୁ କିଟ୍ଟୀ ମା'କୁ ଧୋକା ଦେଇ ବିଜୟୀ ହେଲା। ସେ ରାଘପ୍ପା ଘରକୁ ଯାଉଛି, ଏକଥା କହିବା ମାତ୍ରେ ମା ଫାଟି ପଡ଼ିବ, ଏକଥା କିଟ୍ଟୀକୁ ଭଲଭାବରେ ଜଣା ଥିଲା। ତେଣୁ ତାର ରାଗ ଥମିବା ଯାଏଁ ଚୁପ୍ ରହିଲା। ସେ ସବୁ ଶେଷ ହେଲାପରେ ଲୁଗାବାକ୍ସ ଓଲଟପାଲଟ କରୁକରୁ ଟିକିଏ ଅସନ୍ତୁଷ୍ଟ ସ୍ୱରରେ କହିଲା 'ତହସିଲଦାର ସାହେବ ମଧ୍ୟ ଗୀତ ଶୁଣିବାକୁ ଆସିବେ। ସେଠାରେ ତାଙ୍କ ସହ ବ୍ୟକ୍ତିଗତ ପରିଚୟ ହୋଇଯିବ। ସେଥିପାଇଁ ଯିବି ବୋଲି ହଁ କହି ଦେଇଥିଲି। ତୋ ରଘୁର ଝିଅ ବେକରେ ବରଣମାଳା ପିନ୍ଧେଇବା ପାଇଁ ଯାଉ ନାହିଁ। ଘରକୁ ଫେରିଲା ବେଳକୁ ତୋର ଏଇ ଗାଉଣା, ସକାଳେ ମଧ୍ୟ ତୋର ସେଇ ପାଟିତୁଣ୍ଡ। ହଉ, ଏଇ ମଇଳା କୋଟ ପିନ୍ଧି ତହସିଲଦାରଙ୍କ ଆଗକୁ ଯାଏଁ।

ଘଡ଼ିଏ ଯାଏଁ ଗଙ୍ଗୱା ଅପ୍ରତିଭ ହୋଇ ପଡ଼ିଲା। ମା'କୁ ସଫଳଭାବରେ ଧୋକା ଦେଇ ପାରିଥିବାରୁ କିଟ୍ଟୀ ଭାରୀ ଖୁସି ହେଲା। ନୂଆ ଜାଗାକୁ ବଦଳି ହୋଇ ସେ ଟିକିଏ ବାକ୍‌ଚାତୁରୀ ଶିଖିଛି। ରଗାଇ ଦେଇ ଫେର ମୁହଁ ବନ୍ଦ କରିଦେବା କିଛି ସାଧାରଣ କଥା ନୁହେଁ। ଯାହେଉ ସେତିକିରେ ଗଙ୍ଗୱା ସମ୍ଭାଳି ଗଲା।

'ତହସିଲଦାର ସହ ଚିହ୍ନା ହେବା ଲାଗି ରଘୁର କଣ ଦରକାର? ବୈକୁଣ୍ଠକୁ ଯିବା ପାଇଁ ହାତୀ ଲାଙ୍ଗୁଳର ଆଶ୍ରା? ମୁଁ ସେବେଠୁ କହୁଛି, ଯେ ପୁଅ ଥରେ ଯାଇ ତହସିଲଦାର ଘରୁ ବୁଲି ଆ', ତାଙ୍କର କଣ ଦରକାର ବୁଝି ଆ'। ପୁରୁଣା ପରିଚୟ ହାତଛଡ଼ା କରିବାଟା ଠିକ୍ ହେବନାହିଁ। ମୋ କଥା ଶୁଣୁଛି କିଏ? ଏବେ ତହସିଲଦାର ସହ ଚିହ୍ନାପରିଚୟ ହେବା ପାଇଁ ରାଘପ୍ପା ମାମୁଁ ଦରକାର ପଡ଼ିଲା!'

'ମା ଯେ କଥା ତୁ ଜାଣୁ ନାହିଁ, ସେବିଷୟରେ କଥା କହୁ କାହିଁକି? ଇଏ ଆଉଜଣେ ତହସିଲଦାର। ପୁରୁଣା ତହସିଲଦାରଙ୍କର ପାଞ୍ଚମାସ ହେଲା ବଦଳି ହୋଇ ଗଲାଣି।'

ଗଙ୍ଗୱାର ମନେହେଲା, ସତେଯେମିତି ସେ ପଡ଼ିଯିବ। ତା ମୁହଁରୁ ଆଉ ପଦୁଟିଏ ହେଲେ କଥା ବାହାରିଲା ନାହିଁ।

....ଆଗର ତହସିଲଦାର ଗଙ୍ଗୱାର ସ୍ୱାମୀଙ୍କର ବନ୍ଧୁ ଥିଲେ। ସ୍ୱାମୀ ଥିଲାବେଳେ ସେ ତହସିଲଦାରଙ୍କ ସ୍ତ୍ରୀ ସହ ସମାନସ୍କନ୍ଧ ଭଳି ନୁହଁ ବରଂ ଟିକି, ବଡ଼ପଣ ନେଇ ବ୍ୟବହାର କରୁଥିଲା। ସେତେବେଳେ ସେ ତହସିଲଦାର ହୋଇ ନଥିଲେ। ପରେ ସେ ସେତେ ଥର ବଦଳି ହୋଇ ଧାରୱାଡ଼ ଆସିଛନ୍ତି ଗଙ୍ଗୱା ତାଙ୍କ ଆଗରେ ଯାଇ କେବେ ଠିଆହେବାକୁ ଇଛା କରିନାହିଁ, କାହିଁକି ନା ଏବେ ତାର

ଆଗର ସୁଦିନ ନାହିଁ। କିଙ୍ଗୀ ମାଟ୍ରିକ୍ ପାଶ୍‌କଲାପରେ ତା ଚାକିରୀ ପାଇଁ ନିଜର ମାନଅପମାନକୁ ପଛକୁ ପକାଇ ଦଶବର୍ଷପରେ ଗଙ୍ଗୱା ତାଙ୍କ ଦୁଆରକୁ ଯାଇଥିଲା। ସେ ମଧ୍ୟ ପୁରୁଣା ପରିଚୟକୁ ମନେପକାଇ ଖୁସିରେ ତା କାମ କରିଦେଇଥିଲେ। ଗଙ୍ଗୱା ତାଙ୍କଠି ବଡ଼ କୃତଜ୍ଞ ଥିଲା। ସେତେବେଳେ ତହସିଲଦାରଙ୍କର ବାରବର୍ଷର ଝିଅ ନୀଲୱା ପାଇଁ ବର ଖୋଜା ଚାଲିଥାଏ। ସେ ଝିଅର ଜନ୍ମ ବେଳେ ଗଙ୍ଗୱାର ସ୍ୱାମୀ ଧାଁଦଉଡ଼ କରି ପକେଟରୁ ପଇସା ସାରି ସିଭିଲସର୍ଜନକୁ ଘରକୁ ଡ଼ାକି ଆଣିଥିଲେ। ଗଙ୍ଗୱାକୁ ସେ କଥା ମନେପକାଇ ଦେଇ ତହସିଲଦାରଙ୍କ ସ୍ତ୍ରୀ ନିଜର କୃତଜ୍ଞତା ପ୍ରକାଶ କରିଥିଲେ। ତେଣୁ ଗଙ୍ଗୱା ମନରେ ସେ ଝିଅପ୍ରତି ମାୟା ପଡ଼ି ଯାଇଥିଲା। ତା ମନରେ ଭାରୀ ଇଚ୍ଛା ଥାଏ ଯେ ନୀଲୱା ପାଇଁ ବର ଠିକ୍ ହୋଇଗଲାମାତ୍ରେ ସେ ତା ପାଇଁ ଏକ ଭଲ ଭାର ସଜାଡ଼ିବ। ସେ କିଙ୍ଗୀକୁ କହିରଖିଥାଏ, ନୀଲୱାର ବାହାଘର ପାଇଁ ଦିନ ସ୍ଥିର ହୋଇଗଲା ମାତ୍ରେ ସେ ଯେପରି ତାକୁ କହିବ। ଥରେ ଦି'ଥର ପଚାରିବାରୁ ଏବେ ଠିକ୍ ହୋଇନାହିଁ ବୋଲି କିଙ୍ଗୀ ଗୁଣୁଗୁଣୁ ହେଲା। ପରେ ଅଶ୍ୱାସନା ଦେଲା ଯେ ତୁ ମୋତେ ଏତେ ପଚାରିବା ଦରକାର ନାହିଁ, ଜଣାପଡ଼ିଲାମାତ୍ରେ ମୁଁ ତୋତେ କହିବି। ହେଲେ ତାଙ୍କର ବଦଳି କଥା ତ ସେ କହିନଥିଲା। ଅନ୍ତତଃ ଏଇ ମଉକାରେ ଗଙ୍ଗୱା ଘିଅରେ ସପୁରୀ ଭାଜି ତାଙ୍କ ଘରକୁ ପଠାଇ ପାରିଥାନ୍ତା। ସେ ନିଜର ସ୍ୱାଭିମାନ ହେତୁ ସେଇଦିନ ପରେ ତାଙ୍କ ଘରକୁ ଆଉ ଯାଇନାହିଁ, ଏକଥା ଠିକ୍। କିନ୍ତୁ ବଦଳି ହୋଇ ଯାଉଥିବା ବାହାନାରେ ତାଙ୍କ ଘରକୁ ଯାଇ କିଛି ମିଠା ଦେଇ ଆସିଥିଲେ ଭଲ ହୋଇଥାନ୍ତା। ତାକୁ ବଦଳି ଖବର ଦେବାଟା କଣ ଉଚିତ ନଥିଲା ? ଏଇ ବିଶ୍ୱାସଘାତକତା ହେତୁ ଗଙ୍ଗୱା ଆଉ କିଛି କହିପାରିଲା ନାହିଁ। ତାର ଅନ୍ତରାତ୍ମା ଜଳିଗଲା।

ଏଣେ ମା ସହ କଳିକରି ତା ମୁହଁ ବନ୍ଦକରିଦେଇଥିବାରୁ କିଙ୍ଗୀ ମନରେ ଭାରୀ ଆନନ୍ଦ ଦେଖା ଦେଲା।

ଦେଶାଇଜୀଙ୍କ ଆଗରେ ଗଙ୍ଗୱା ନିଜର ବିଚାର ଦୃଷ୍ଟିରୁ ସବୁ କଥା କହିଲା। ଓରାଘସ୍ପା ସଂପର୍କରେ ଥିବା ତାର ଦୁଇଟି ବଡ଼ ଭୟ କଥା ମଧ୍ୟ କହିଲା। ଧର ଏବେ ଯଦି ସେ କିଙ୍ଗୀକୁ ଖରାପ ଅଭ୍ୟାସ କରାଇ ଦିଏ ତେବେ କଣ ହବ ? କିଙ୍ଗୀ କାନରେ ମନ୍ତ୍ରଦେଇ ସେ ଯଦି ନିଜ ଝିଅର ବିବାହ କିଙ୍ଗୀ ସହ କରାଇ ଦିଏ ତେବେ ତାର ପରିଣାମ କଣ ହେବ ?

ଏତିକି କଥା ହୋଇଛନ୍ତି ବିଣ୍ଣୁବାଇ ଚାକାରାଣୀକୁ କଣ କହିବା ପାଇଁ ବାରିପଟକୁ ଗଲେ। ସେଇ ମଉକା ପାଇଁ ଗଙ୍ଗୱା ଦେଶାଇଜୀଙ୍କୁ କହିଲା,

'ଗୋପର୍ଣ୍ଣା, କଥାଟିଏ କହିବି, କାହାକୁ କହିବ ନାହିଁ। ଏକଥା ଆମ ଦିହିଙ୍କ ଭିତରେ ରହିବ। ରାଘସ୍ପାର ନାଁ ଧରିଲେ ମୋ ଦେହରେ ନିଆଁ ଚରିଯାଏ। ତେବେବି ତା'ଝିଅର ବିବାହ ହୋଇଯିବା ଦରକାର। ଭଗବାନଙ୍କ କୃପାରୁ ତାର ବାହାଘର ହୋଇଯାଉ, ହେଲେ ମୋ ଘରେ ନୁହେଁ, ଏହାହିଁ ମୋର ଇଚ୍ଛା। ତୁମେ ପଚାରିବ,

କାହିଁକି ? ଏତେ ଦିନଯାଏଁ ଯେଉଁ କଥା ଲୁଚାଇ ରଖିଥିଲି, ତାକୁ ଫିଟାଇ କହୁଛି, କାହିଁକି ନାଁ କଥା ମୋ ଘରଯାଏଁ ଆସିଗଲାଣି। ଆମ ରଘୁର ବାହାଘର କଥା ତୁମେ ଜାଣନାହିଁ। ବାହାଘର ଆଗରୁ ସେମାନେ ଦୁହେଁ ଦୁହିଁଙ୍କୁ ଜାଣିଥିଲେ। ପରେ ଯେତେବେଳେ ବିବାହ କଥା ଚାଲିଲା ସେତେବେଳେ ରଘୁ ନାହିଁ କରି ଦେଲା। ତହୁଁ ସେ ଝିଅର ମା ଆମ 'ୟାଙ୍କ' ଗୋଡ଼ତଳେ ପଡ଼ି କହିଲା 'ମୋ ଝିଅର ଇଜତ ରକ୍ଷାକର'। ଏସବୁ ଶୁଣି ସେ ରଘୁକୁ କହିଲେ 'ଚୁପଚାପ୍ ବାହାହୁଅ, ନ ହେଲେ ହଣ୍ଟରରେ ଛାଲ ଛଡ଼ାଇ ଦେବି। ଗଧ ଉପରେ ବସେଇ ଦାଣ୍ଡରେ ବୁଲାଇବି।' ୟାଙ୍କ ଧମକ୍‌ରେ ରଘୁ ସେ ଝିଅକୁ ବାହା ହେବାକୁ ରାଜି ହେଲା। ସେଇ ଲୋକର ଝିଅକୁ ମୁଁ ନିଜଘରକୁ ଆଣିବି ନାହିଁ ଭାଇ !'

ସବୁ ଶୁଣି ଦେଶାଇଜୀ କହିଲେ 'ଗଙ୍ଗୱା, ଏତେ ଦିନଯାଏଁ ତୁ ଏକଥା ପେଟରେ ରଖିଥିଲୁ, ଆଗକୁ ମଧ ରଖିବୁ, କାହାକୁ କହିବୁ ନାହିଁ।

ଦେଶାଇଜୀ ଅନୁଭବ କଲେ ଯେ ସେ ଯେତେ ଦୂରରେ ରହିବାକୁ ଚାହୁଛନ୍ତି, ସେତିକି ପଙ୍କରେ ପଶିଯାଉଛନ୍ତି। ସେ ଭାବିଲେ ଯେତେ ଶୀଘ୍ର ସମ୍ଭବ ସେ ଘରର ଭଲମନ୍ଦରୁ ମୁକ୍ତି ପାଇଯିବା ଭଲ।

ଏଇ ସମୟରେ ବିଶୁବାଇ ପହଞ୍ଚି ଯିବାରୁ ସେକଥା ସେଇଠି ସରିଗଲା। ଏକଥା ସେକଥା କହି ଗଙ୍ଗୱା ନିଜ ଘରକୁ ଫେରିଲା।



# ୪. ସଂଗୀତ ସଭା

ବିନା ଇସ୍ତ୍ରୀକରା କୋଟ ପିନ୍ଧି କିଟ୍ଟୀକୁ ସଂଗୀତ ସଭାକୁ ଯିବାକୁ ପଡ଼ିଲା। ସେ ଭାବିଲା ଯେ ଏ କୋଟକୁ ଖାପ୍ ଖାଇଲା ପରି ବିନୟ ଦେଖାଇ ତହସିଲଦାରଙ୍କ ସହ ବ୍ୟବହାର କରିବ। ସଂଗୀତ ସଭା ଯେ କଣ ଏହା କିଟ୍ଟୀର କଳ୍ପନାର ବାହାର ବସ୍ତୁ। ଭାବିଥିଲା ଗୋଟିଏ ଘରେ ସେ ଓ ରାଘସ୍ୱାମାମୁଁ ସାହେବଙ୍କ ମୁହାମୁହିଁ ବସିବେ। ରାଘସ୍ୱା ତାର ଗୁଣଗାନ କରିବ, ସାହେବ ସ୍ମିତହସି ସମ୍ମତିସୂଚକ ଭଙ୍ଗୀରେ ଶୁଣିବେ। ସେ ମୁଣ୍ଡ ନୁଆଇଁ ବିନୟର ସହ ତାଙ୍କ କଥା ଶୁଣିବ। ସଂଗୀତ ସଭାରେ ଜଣେ ଗାୟକ ଯେ ଥିବା ଉଚିତ, କିଟ୍ଟୀର କଳ୍ପନାରେ ତାର କୌଣସି ଅସ୍ତିତ୍ୱ ନଥିଲା। ସାତଟାବେଳେ ମାମୁଁ ଘରେ ପହଞ୍ଚି କିଟ୍ଟୀ ମୂଳରୁ ନିରାଶ ହେଲା। ସେ ପହଞ୍ଚିଲା ମାତ୍ରେ ତାକୁ ସ୍ୱାଗତ କରିବା ଲୋକ ରାଘସ୍ୱାମାମୁଁ ଘରେ ନଥିଲେ। ତହସିଲଦାର ମଧ୍ୟ ସେତେବେଳଯାଏଁ ଆସିନଥାନ୍ତି। ତାକୁ ଭିତରକୁ ଆ' ବୋଲି କେହି କହିଲେ ନାହିଁ। ବାଧ୍ୟହୋଇ ବାହାରେ ଚପଲ ରଖି ସେ ଭିତରକୁ ଗଲା।

ସାରା ଅଗଣାରେ ଏକ ଲାଲ ରଙ୍ଗର ଦରୀ ବିଛା ହୋଇଥାଏ। ଏକ କୋଣରେ ଯେଉଁଠି ଦରୀ ପଡ଼ିନଥାଏ, ସେଇଠାରେ ଏକ ପେଟ୍ରୋମାକ୍ସ ରଖା ହୋଇଥାଏ। ତାର ଚାରିପାଖରେ ପୋକମାନେ ଘୂରୁଥାନ୍ତି। ରେଶମୀ ପଗଡ଼ି ଓ ପଶମ କୋଟ ପିନ୍ଧି ଛଅସାତଜଣ ଭଦ୍ର ଗୃହସ୍ଥ ଦରୀଉପରେ ଥିବା ଚଉକିରେ ବସିଥାନ୍ତି। ସେମାନେ ସମସ୍ତେ ଗଳ୍ପରେ ମଗ୍ନ। ଗ୍ୟାସ୍ ଆଲୁଅଜନିତ ଗରମ ହେତୁ କେତେଜଣଙ୍କ ଦେହରୁ ଝାଳ ବୋହୁଥାଏ। ଦରୀର ଅପର ପାଖରେ ସାତରୁ ବାରବର୍ଷ ବୟସର ପିଲାମାନେ ଗୋଲହୋଇ ବସି ସ୍କୁଲ ଶିକ୍ଷକ, ଖେଳ ଆଦି ବିଷୟରେ ନିମ୍ନ ସ୍ୱରରେ ଚର୍ଚ୍ଚା କରୁଥାନ୍ତି। କିଟ୍ଟୀ ଭିତରକୁ ପଶିବାରୁ 'ଆତ୍ମସମ୍ଭାବିତାଃ ସ୍ତବ୍ଧାଃ ଧନମାନମଦାଂବିତାଃ' ବ୍ୟକ୍ତିମାନେ ଥରେ ମୁହଁ ଉଠାଇ ତାକୁ ଦେଖିଲେ ଓ ତା'ରି ଉପରେ ଦୃଷ୍ଟି ଠୁଳକରି ଆଲୋଚନାରେ ଅଗ୍ରସର ହେଲେ। ପିଲାଏଁ ତା ଆଡ଼କୁ ଚାହିଁଲେ ମଧ୍ୟ ନାହିଁ। ଦୌଡ଼ି ଆସି ବାହୁପ୍ରସାର କରି ସ୍ୱାଗତ କରିବା ଲୋକ ମାମୁଁ କାହିଁ ଅଦୃଶ୍ୟ ହୋଇ ଯାଇଥାଏ। କିଟ୍ଟୀ ଦେଖିଲା, ବଡ଼ମାନଙ୍କ ଭିତରେ ସଭିଏଁ ତାଠାରୁ ବୟସରେ ବଡ଼ ଓ ଭଲ ଲୁଗାପଟା ପିନ୍ଧିଛନ୍ତି। ତେଣୁ ସେ ସ୍କୁଲ ପିଲାଙ୍କସହ ବସିବାଟା ହିଁ ଉଚିତ ମନେକଲା। ପିଲାଙ୍କ ମଝିରେ ଯାଉଁ ଯାଉଁ ସେ କାହାକୁ ଠେଲିଦେଲା

ତ କାହା ଛାତିରେ କହୁଣୀ ଭୁଷି ଦେଲା, ତୃତୀୟ କାହାର ହାତ ମାଡ଼ି ଦେଲା ତ ଚତୁର୍ଥ ଜଣକର କୋଳରେ ଧପ୍‌କରି ବସିପଡ଼ିଲା। ଏଇ ଗଣ୍ଡଗୋଳରେ ଯାହାର ହାତ ମୋଡ଼ି ହୋଇଗଲା ସେ ସାତବର୍ଷର ପୁଅଟିଏ। ସେ ଯୋର୍‌ରେ ପାଟିକରି ଉଠିଲା। ଚୌକିଉପରେ ବସିଥିବା ମହାତ୍ମାମାନେ କିଟ୍ଟୀ ଉପରେ ଏକ କରୁଣାମୟ ଦୃଷ୍ଟି ଢ଼ାଳିଦେଇ ନିଜନିଜର ଆଲୋଚନାରେ ବୁଡ଼ିଗଲେ। କିଟ୍ଟୀର ମନେହେଲା ମା' ବସୁମତୀ ଯଦି ତାକୁ ନିଜସହ ମିଶାଇ ନିଅନ୍ତା ତେବେ ଭଲ ହୁଅନ୍ତା। ପିଲାଙ୍କ ଭିତରେ ସେ ସବୁଠୁ ଲମ୍ବା। ସେଥିପାଇଁ ବର୍ଷାଭିଜା ବିରାଡ଼ି ପରି ଜାକିଜୁକି ହୋଇ ସେଇ ପିଲାମାନଙ୍କ ପରି ସଙ୍କୋଚିତ ହୋଇ ବସିଲା।

ସେ ଦେଇଥିବା ଅସୁବିଧାକୁ ସହିଯାଇଥିବା ପିଲାମାନଙ୍କର ଆଲୋଚନାକୁ କିଛିକ୍ଷଣଯାଏଁ ଶୁଣିଲା ପରେ କ୍ରମେ ସେ ନିଜପାଇଁ ଜାଗା କରିନେଲା। ତା'ପରେ ଆପଣା ଦୃଷ୍ଟିକୁ ଅଗଣା ଚାରିପଟେ ବୁଲାଇବାକୁ ଲାଗିଲା। କାନ୍ଥରେ ଲାଗିଥିବା ଛବି ଓ କଡ଼ିରୁ ଝୁଲୁଥିବା ଝାଡ଼ଲଣ୍ଠନକୁ ଭାରୀ ମନଯୋଗ ସହକାରେ ଦେଖିଲା। କୌତୂହଳ ସହ କୋଣରେ ରଖା ହୋଇଥିବା ତବଲା ଓ ତାନପୁରା ଆଦିକୁ ନିରୀକ୍ଷଣ କଲା। ମନେମନେ କହିଲା 'ଆରେ, ତାନପୁରା ପୁଣି ଏତେ ବଡ଼ ଥାଏ !'

ଅଗଣାର ଦୁଇ ପାଖରେ ଦୁଇଟି କୋଠରୀ। ଦୁଇଟିଯାକ ଘରେ ମ୍ଳାନ ଆଲୁଅ; ପେଟ୍ରୋମାକ୍ସର ଆଖି ଝଲସା ଆଲୁଅ ହେତୁ ତାକୁ ପ୍ରଥମେ ଘର ଭିତରେ କିଛି ଦେଖାଯାଉ ନଥିଲା। ଦଶମିନିଟ ଅଗଣାର ଏପଟ ସେପଟ ଦେଖିଲା ପରେ ଥକା ହୋଇ କିଟ୍ଟୀ ଯେତେବେଳେ ଘର ଭିତରକୁ ଦୃଷ୍ଟି ଦେଲା, ସେତେବେଳେ ତାକୁ ଏକ ବିଚିତ୍ର ଦୃଶ୍ୟ ଦେଖାଗଲା।

ଘର ଭିତରେ ଜଣେ ସୁନ୍ଦରୀ ବସିଥିଲେ। କାନ୍ଥର ଉହାଡ଼ରୁ ତାଙ୍କ ମୁହଁ ସ୍ପଷ୍ଟ ଦିଶୁଥିଲା। ପୁରାଣରେ କିଟ୍ଟୀ ଉର୍ବଶୀ, ରମ୍ଭା, ଚିତ୍ରାଙ୍ଗଦା ଆଦି ସୁନ୍ଦରୀସ୍ତ୍ରୀମାନଙ୍କର ନାମମାତ୍ର ଶୁଣିଥିଲା। ତାକୁ ଦେଖି ସେ ତଟସ୍ଥ ହୋଇ ପଡ଼ିଲା।

...ସେ ଆଉ ଅପ୍‌ସରା ନୁହଁ ତ? ସେ ସୌନ୍ଦର୍ଯ୍ୟ କିଟ୍ଟୀର କଳ୍ପନାବାହାର କଥା। କିଟ୍ଟୀ ତାଙ୍କଆଡ଼େ ଏକଲୟରେ ଚାହିଁ ରହିଲା। ସେ ମଧ୍ୟ ତାରି ଆଡ଼େ ଚାହିଁଥିଲେ। ତାଙ୍କ ଦୃଷ୍ଟିକୁ ମୁକାବିଲା କରିବାର ସାହସ କିଟ୍ଟୀର ନଥିଲା। ସେ ଲାଜରେ ମୁଣ୍ଡପୋତିଦେଲା। ମାତ୍ର ପୁଣି ସେଇ ସ୍ୱର୍ଗୀୟ ମୁହଁକୁ ଦେଖିବାର ଇଚ୍ଛା ହେଲା। ବାରମ୍ବାର ତାଙ୍କ ଆଡ଼କୁ ମୁହଁ ଉଠାଇ ଦେଖେ ଓ ମୁହଁ ପୁଣି ତଳକୁ ପୋତିଦିଏ। ଆଜିଯାଏ ସେ ଏପରି ସୌନ୍ଦର୍ଯ୍ୟ କଳ୍ପନା ସୁଦ୍ଧା କରିନଥିଲା। କୌଣସି ସୌନ୍ଦର୍ଯ୍ୟ କିଟ୍ଟୀକୁ ଏତେ ଆକର୍ଷିତ କରିନଥିଲା। ତାର ଦୃଷ୍ଟି ଅନାୟତ୍ତ ହୋଇ ପଡ଼ିଲା। ଧୀରେ ଧୀରେ ଏପରି ସାହସ ବଢ଼ିବାକୁ ଲାଗିଲା ଯାହା କେବେ ତା'ଠାରେ ନଥିଲା। ସେ ମଧ୍ୟ ତା'ରି ଆଡ଼କୁ ଚାହିଁଥିଲେ।

ହୁବଳ୍ଲୀର ମହବୁବଜାନ ସୁପ୍ରସିଦ୍ଧ ଗାୟିକା ତଥା ରୂପବତୀ। ସେ ମାର୍ଜିତା ଓ ରୁଚିଶୀଳା। ରାଘଣ୍ଣାର ନିର୍ବାଚନ କେବେ କଣ ସାଧାରଣ ହୋଇପାରେ? ଗତ

ଦଶବାର ବର୍ଷ ହେଲା ସେ ରାଘସ୍ବାର ଆଶ୍ରୟରେ ଅଛି। ସଂଗୀତରେ ସେ ଏକ ବିଶେଷ ନାମ ଅର୍ଜନ କରିଛି। ତା'ରି ଖ୍ୟାତି ପାଇଁ 'ଶେଷଶାୟୀ' ନାଟକ ଅନେକ ଟଙ୍କା ଅର୍ଜନ କରିଛି। ସେ କମ୍ପାନୀ ଛାଡ଼ିଲା ପରେ, ନୂଆନୂଆ ଦୃଶ୍ୟଯୁକ୍ତ ପରଦା ଓ ନୂଆନୂଆ କଳାକାରର ବ୍ୟବସ୍ଥା କରିସୁଦ୍ଧା କମ୍ପାନୀ ସେତେପଇସା ରୋଜଗାର କରିପାରି ନାହିଁ। ପୁନାର ଗନ୍ଧର୍ବନାଟକ କମ୍ପାନୀ ହେତୁ ଏକ ନୂଆ ରସିକଶ୍ରେଣୀ ଜନ୍ମ ନେଇଥିଲା। ସେମାନେ ମହବୁବଜାନ୍‌ରେ ସଂଗୀତର ବିଶେଷ ରସଜ୍ଞ ଥିଲେ। କିନ୍ତୁ ଏବେ ଚାରିପାଞ୍ଚ ବର୍ଷ ହେଲା ମହବୁବଜାନ ନାଟକରେ ଅଂଶ ଗ୍ରହଣ କରିବା ଛାଡ଼ି ଦେଇଛି। କେତେଟା କମ୍ପାନୀ ତାକୁ ମାସକୁ ତିନିଶହ ଟଙ୍କା ଯାଏ ବେତନ ଦେଇଥିଲେ। ଥରେ ଏକ ଉତ୍ସବ ସମୟରେ ନାଟକ କରୁଥିବା ବେଳେ ମହବୁବଜାନଙ୍କୁ ବହୁତ ପରିଶ୍ରମ କରିବାକୁ ପଡ଼ିବାରୁ ସେ ଅସୁସ୍ଥ ହୋଇ ପଡ଼ିଲା। ତହୁଁ ତାର 'ଯଜମାନ' ତାକୁ ରାଣ ଦିଆଇ ନାଟକରେ ଭାଗନେବାକୁ ମନା କରିଦେଲା। ସେଇ ଦିନରୁ ସେ ରାଘସ୍ବା ଉପରେ ବିଶ୍ୱାସ ରଖି, ତାର ଆଜ୍ଞାମାନି, ତାରି ଆଶ୍ରୟରେ ଦିନ କାଟୁଛି। ଏବେ ସେ ଅଧାବୟସୀ ହେବାକୁ ବସିଲାଣି। ଶ୍ୱାସ ଆରମ୍ଭ ହୋଇଥିବାରୁ ଗୀତଗାଇବା କମିଯାଇଛି। ଆଜି 'ଯଜମାନ'* ଘରେ ସଂଗୀତ ସଭା ବସୁଥିବାରୁ ସକାଳପହରରୁ ଅଳେଇଚ, ବଡ଼ମଧୁ ଖାଇ ଗଳା ସାଧି ଗୀତଗାଇବାକୁ ଆସିଛି।

ଏଣେ ତହସିଲଦାରକୁ ଡାକିଯାଇଥିବା ଘର ମାଲିକ ଘଣ୍ଟାଏ ବିତିଗଲେ ସୁଦ୍ଧା ଫେରିଲା ନାହିଁ। ସେ ବଡ଼ ବିରକ୍ତ ହୋଇ ପଡ଼ିଲା। ଗୀତଶୁଣି ଆସିଥିବା ଲୋକମାନଙ୍କର ମହବୁବଜାନସହ ପଦେ ଦି' ପଦ କଥା ହେବାର ଇଚ୍ଛା ଥାଏ। ରାଘସ୍ବାର ଅନୁପସ୍ଥିତି ହେତୁ ସେମାନେ ବିଶେଷ ଉତ୍ସାହ ନଦେଖାଇ ଗପ କରିବାରେ ଲାଗିଥାନ୍ତି। ତାସହ କଥାହେବାକୁ କେହି ଲୋକ ନାହିଁ। ରାଘସ୍ବା ତାକୁ କହିଥାଏ ଯେ ସଞ୍ଜରେ ବଡ଼ ଅଫିସର ଆସରକୁ ଆସିବେ। ସେଥିପାଇଁ ମହବୁବଜାନ ନିଜର ରେଶମୀ ପୋଷାକ ପିନ୍ଧିଥାଏ। ମୁହଁରେ ବେଶ୍ ମେକଅପ୍ ମଧ୍ୟ ନେଇଥାଏ। ଗଳାରେ ସୁନାହାର ଓ ସେବତୀ ଫୁଲର ମାଳା ପିନ୍ଧି ଆପଣାର ଯୁବତୀକାଳରେ ଯେପରି ବଡ଼ ବଡ଼ ଆସରକୁ ଯାଉଥିଲା ସେଇପରି ଆଜିମଧ୍ୟ ସଜବାଜ ହୋଇ ଆସିଥିଲା। ବହୁତ ଦିନରୁ ଅଭ୍ୟାସ ଛାଡ଼ିଦେଇ ଥିବାରୁ ତା ଦେହରୁ ଝାଳ ବୋହିପଡୁଥାଏ। ଏଇପରି ବିରକ୍ତିକର ମୁହୂର୍ତ୍ତରେ କିଟ୍ଟୀ ଭିତରକୁ ଆସିଲା। ଆସିବା ଫଳରେ ମହବୁବଜାନର ବିରକ୍ତି କିଛି ଅଂଶରେ ଊଣା ହୋଇଗଲା। ଦୋଦୋପାଞ୍ଚ ହୋଇ କିଟ୍ଟୀର ବସିବା ଜାଗା ଖୋଜିବା, ପିଲାଙ୍କ ମଝିରେ ବସିଲାବେଳେ ଗଣ୍ଡଗୋଳ ସୃଷ୍ଟି କରିବା, ସଙ୍କୋଚିତ ହୋଇ ବସିବା ଓ ବାଁପଟରେ ଥିବା ତାନପୁରା ଆଡ଼କୁ ମୁହଁ ଫେରାଇ ଚାହିଁବା ଆଦିକୁ ଦେଖି ଅଭିନୟନିପୁଣା ମହବୁବର ନାଟକର ବିଦୂଷକ ଚରିତ୍ର କଥା ମନେପଡ଼ିଗଲା। ତେଣୁ ସେ ମଗ୍ନ ହୋଇ ସେଇ ଜୀବନ୍ତନାଟକକୁ ଅପଲକ ଦେଖିବାକୁ ଲାଗିଲା।

---

* ଯଜମାନ – ଗ୍ରାହକ, ଏଠାରେ ରାଘସ୍ବା।

ଏତିକିବେଳେ ତହସିଲଦାର ଓ ତାଙ୍କର ଜଣେ ବନ୍ଧୁଙ୍କୁ ସାଙ୍ଗରେ ଧରି ରାଘସ୍ୱା ଆସି ପହଞ୍ଚିଲା । ତହସିଲଦାର ଆସିବା ମାତ୍ରେ ତକିଆକୁ ଆଉଜି ବସିଥିବା ସଭ୍ୟଗୃହସ୍ଥମାନେ ସଳଖି ବସି ତାଙ୍କୁ ସ୍ୱାଗତ କଲେ। ଆସିଥିବା ବନ୍ଧୁଙ୍କୁ ବଡ଼ ତକିଆଟି ଦେଇ ତହସିଲଦାର ନିଜେ ବସିଗଲେ। ତାଙ୍କରି ପାଖରେ ରାଘସ୍ୱା ବସିପଡ଼ିଲା ଓ ସମସ୍ତ ସଦ୍‌ଗୃହସ୍ଥଙ୍କୁ ପରିଚୟ କରାଇଦେଲା। ଯେଉଁମାନଙ୍କ ସହ ତହସିଲଦାରଙ୍କର ପରିଚୟ ଥିଲା, ସେମାନଙ୍କୁ ସହ ସେ ମୁରୁକିହସି ଥଟ୍ଟା ପରିହାସ କଲେ। ଏପଟେ ଯେତେବେଳେ ଏଇ ସବୁ ଚାଲିଥାଏ ମାମୁଁଙ୍କ ଆଡ଼କୁ ଦୀନକାତରତା ସହ ଏଇ ଆଡୁବି ଚାହିଁରହିଲା ଯେ କେତେବେଳେ ମାମୁଁଙ୍କର ନଜର ତା'ଉପରେ ପଡ଼ିବ। ମାତ୍ର ତହସିଲଦାର ବା ତହସିଲଦାରଙ୍କଠାରେ ପେଶ୍ କଲାବାଲା ମାମୁଁ, କେହି ସେଇ ପଙ୍କରେ ବୁଡିଥିବା ପଦ୍ମଆଡ଼କୁ ଦୃଷ୍ଟି ଦେଲେନାହିଁ।

ରାଘସ୍ୱା ବଡ଼ପାଟିକରି ଘରଭିତରେ ବସିଥିବା ସୁନ୍ଦରୀଙ୍କୁ କହିଲା, 'ମହବୁବ, ତୁମ ଗୀତ ଶୁଣିବା ପାଇଁ ତହସିଲଦାର ପାଦ ପକାଇଛନ୍ତି। ବହୁତଦିନରୁ ସେ ଗୀତଶୁଣିବା କଥା କହୁଛନ୍ତି; ତୁମର ସବୁଠାରୁ ବଢ଼ିଆଗୀତଟି ଶୁଣାଅ !'

ମହବୁବଜାନ ଆଲୁଅ ଆଡ଼କୁ ଅଳ୍ପ ଘୁଞ୍ଚି ଆସି ମୁଲାୟେମଠାଣିରେ ବଡ଼ ତକିଆକୁ ଆଉଜିବସିଥିବା ତହସିଲଦାରଙ୍କ ବନ୍ଧୁଙ୍କୁ ସଲାମ କଲା। ଏହା ଦେଖି 'ତହସିଲଦାର ସେ ନୁହନ୍ତି, ମୁଁ' —ନିଜର ଏ ଅଧିକାର ଜଣାଇବା ପାଇଁ ତହସିଲଦାର ଗଭୀର ହୋଇ ପଚାରିଲେ 'ଗନ୍ଧର୍ବରାଗ ଜାଣ ?'

ତହୁଁ ମହବୁବଜାନ କହିଲା 'ଜୀ ହାଁ'। (ସଭାରେ ହିନ୍ଦୁସ୍ଥାନୀ କହିବା ତାର ଅଭ୍ୟାସ।) ସେ ଆଉ ବିଳମ୍ବ ନକରି ଘର ଭିତରୁ ବାହାରିଆସି ତା ପାଇଁ ଅଲଗାକରି ବିଛା ହୋଇଥିବା ଦରୀ ଉପରେ ବସୁବସୁ ମୁଣ୍ଡର ଓଢ଼ଣା ସଜାଡ଼ିବାକୁ ଲାଗିଲା।

ସେ ବାହାରକୁ ଆସିବାରୁ କିଟ୍ଟୀ ପାଖରେ ତାର ସୌନ୍ଦର୍ଯ୍ୟ ଜଣା ହୋଇଗଲା। ମୁହଁରେ ଲଗାହୋଇଥିବା ରଙ୍ଗ ସତ୍ତ୍ୱେ ନଲୁଚିଥିବା ବୟସର ରେଖା ଗ୍ୟାସ ଆଲୁଅରେ ସ୍ଥାନବିଶେଷରେ ସ୍ପଷ୍ଟ ଦିଶୁଥିଲା। ଗଭୀର ଅନୁଭବୀ ପାଇଁ ସେ ଏବେବି ସୁନ୍ଦରୀ। ସୌନ୍ଦର୍ଯ୍ୟର ଦ୍ୱାରମୁହଁକୁ ଯାଇ ଭିତରକୁ ଯିବି କି ନଯିବି ଭାବିବା ଲୋକ କିଟ୍ଟୀକୁ ମହବୁବଜାନର ତତ୍‌କାଳୀନ ସୌନ୍ଦର୍ଯ୍ୟ ଭୟାନକ ମନେହେଲା। ଟିକିଏ ସ୍ଥୂଳକାୟ ହୋଇ ଯାଇଥିଲେ ମଧ ତାର ଦେହର ପ୍ରତି ଅଙ୍ଗ ଏବେବି ପରିପୁଷ୍ଟ। ମୁହଁକୁ ପାଖରୁ ଦେଖିଲା ପରେ କିଟ୍ଟୀ ସମ୍ପୂର୍ଣ୍ଣ ନିରାଶ ହେଲା।

ପାଞ୍ଚମିନିଟ ପୂର୍ବରେ ସେଇ ଅଧାଅନ୍ଧାରୁଆ ଘରର ଅସତ୍ୟ ଚିତ୍ରଚାତୁରୀ ଯୋଗୁଁ ତାର କିଶୋରାବସ୍ଥା ତାକୁ ଛାଡ଼ି ଚାଲିଯାଇଥିଲା। ଏବେର ଏ ନୈରାଶ୍ୟ ତାକୁ ପୁଣି ବାଳକରେ ପରିଣତ କରିପାରିଲା ନାହିଁ।

ବୈଠକ ବାହାରେ ବାରଣ୍ଡାର ବେଞ୍ଚ ଉପରେ ବସିଥିବା ବୁଢ଼ାଜଣକ ଭିତରକୁ ଆସି ସେଠାରେ ରଖା ହୋଇଥିବା ତାନପୁରା ଓ ତବଲାର ସୁରକୁ ଥରେ ପରୀକ୍ଷା କରି ଦେଖିଲେ। ତବଲା ଠିକ୍ କରାଯାଉଥିବା ହାତୁଡ଼ି ଶବ୍ଦ ମଝିରେ ହିଁ ଦେଶପାଣ୍ଡେ

ଦେଖିଲା ଯେ ଧୂଆଁପତ୍ର ଡ଼ବାରୁ ଧୂଆଁପତ୍ର ଶେଷ। ସେ ଘୋଷଣା କଲା 'ରାଘସ୍ତା, ଧୂଆଁପତ୍ର ଶେଷ।' 'ଓହୋ' କହି ରାଘସ୍ତା ସାନପିଲାଙ୍କପଟକୁ ବୁଲି ଅଣ୍ଟିରୁ ଦିଅଣା ପଇସା କାଢ଼ି ସେମାନଙ୍କ ଆଡ଼େ ବଢ଼େଇଧରି କହିଲା, 'ଆରେ, ତୁମଭିତରୁ ନିଶଉଠିଆସୁଥିବା ସେଇ ପିଲା – ଯାଆତ ଦି'ଅଣାର ଧୂଆଁପତ୍ର ନେଇ ଆସିବୁ।'

ଏପଟେ ସୁରବନ୍ଧାହେବାର ଶବ୍ଦ ଆସୁଥିବାରୁ ପିଲାଏ ବାହାରକୁ ନଯିବାଲାଗି ଜଣେ ଅନ୍ୟଜଣକ ମୁହଁକୁ ଚାହିଁବାକୁ ଲାଗିଲେ। ପିଲାଟିଏ କିଙ୍ଗୀକୁ ଠାରି କହିଲା ତା'ରି ନିଶ ଗଜୁରିଛି। ହତଚକିତ କିଙ୍ଗୀ ଚଟ୍ କରି ଉଠି ମାମୁଁ ହାତରୁ ଦିଅଣିଟି ନେବା ପାଇଁ ଆଗେଇ ଆସିଲା। ସେତିକିବେଳେ ରାଘସ୍ତା ତାକୁ ଦେଖିଲା।

'ଆରେ ଆରେ' ତୁ ଆସିଛୁ? ସେଠାରେ ବସିଛୁ କାହିଁକି? କହି ଟିକିଏ ଘୁଞ୍ଚିଯାଇ ଜାଗା କରି ବସିବାକୁ ଠାରିଲା। ମହବୁବଜାନର ମୁହଁରେ ହାଲୁକାହସ ଖେଳିଗଲା। ଧୂଆଁପତ୍ର ଆଣିବା ପାଇଁ ସେ ଉଠିଥିବା କଥାଟା ତହସିଲଦାର ଦେଖିଛନ୍ତି କି ନାହିଁ ତାହା ଯଚେଇ ନେବାପାଇଁ କିଙ୍ଗୀ ତହସିଲଦାରଙ୍କ ଆଡ଼କୁ ଚାହିଁବାକୁ ସାହସ କଲାନାହିଁ। ତଥାପି ସେତେବେଳେ ମିଳିଥିବା ପ୍ରମୋଶନହିଁ ଯଥେଷ୍ଟ ଏହା ଭାବି ସେ ପ୍ରସନ୍ନ ମନରେ ସେଇଠି ବସିପଡ଼ିଲା। ତହସିଲଦାର ତା' ଆଡ଼େ ବୁଲିଲା ମାତ୍ରେ ତାଙ୍କୁ ନମସ୍କାର କଲା। ରାଘସ୍ତା ତା'ର କେବଳ ଏତିକି ପରିଚୟ ଦେଲା ଯେ "ଇଏ ଆମ ଘରର ପୁଅ, ଆପଣଙ୍କ କଚେରୀରେ କାମ କରୁଛି।" ସାହେବ ମୁଣ୍ଡ ହଲେଇଲେ। ନିଜର ଅଧସ୍ତନକୁ ଏତେପାଖରେ ବସିଥିବା ଦେଖି ଟିକିଏ ସଙ୍କୁଚିତ ହେଲେ। କିଙ୍ଗୀ ଦ୍ୱନ୍ଦ୍ୱରେ ପଡ଼ିଲା, ତହସିଲଦାରଙ୍କ ପାଖରେ ବସିଲାବେଳେ ତକିଆକୁ ଆଉଜି ବସିବା ଉଚିତ କି ନାହିଁ। ଏତିକିବେଳେ ଗୀତ ଆରମ୍ଭ ହେଲା। କିଛି ସମୟ ଆରାମରେ ବସିଲା ପରେ ସାହେବ ନିଜ ବନ୍ଧୁମାନଙ୍କ ସହ ଗପିବାକୁ ଲାଗିଲେ। କିଙ୍ଗୀ ପୁଣି ଦ୍ୱନ୍ଦ୍ୱରେ ପଡ଼ିଗଲା, ସେମାନଙ୍କ କଥା ଶୁଣିବ ନାଁ ଗୀତ ଶୁଣିବ। ମାମୁଁ ତ ଗୀତରସିକ। କିଙ୍ଗୀ ସେ ଗୀତର ଅର୍ଥ ବୁଝିପାରିଲା ନାହିଁ। ଏଥିରୁ ବାହାରି ଯାଇ ହବନାହିଁ ଭାବି ବସିରହିଲା। କେତେବେଳଯାଏଁ ତକିଆକୁ ଆଉଜି ନବସିବାରୁ ତାର ଅଣ୍ଟା ବଥେଇବାକୁ ଲାଗିଲା। ତା ସହିତ କାନଉପରେ ଏ ଅତ୍ୟାଚାର। ସେଇ ସୁନ୍ଦରୀ ସ୍ୱର୍ଗଦ୍ୱାର ସମାନ ମୁହଁ ଖୋଲି ବିଚିତ୍ର ସ୍ୱର ଓ ବ୍ୟଞ୍ଜନର ସଂଯୋଗରେ ଏକ ଶାସ୍ତ୍ରୀୟ ରାଗର ଆଳାପ କରୁଥିଲେ। 'ଶାସ୍ତ୍ରୀୟ' ଏବଂ 'ବାରନାରୀ'ର କେମିତି ବିଚିତ୍ର ଯୋଗାଯୋଗ, ଏହା ଭାବି କିଙ୍ଗୀ ମନକୁମନ ଭାରୀ ହସିଲା। ପରେ ସେ ଏକ ମରାଠୀ ଓ କନ୍ନଡ଼ ପଦ 'କୃଷ୍ଣନୀ ବେଗନେ ବାରେ'* ଗାଇଲା। ତହିଁରେ ମଧ୍ୟ କିଙ୍ଗୀ ବିଶେଷ ଖୁସି ହେଲା ନାହିଁ। କିନ୍ତୁ ତହସିଲଦାରଙ୍କଠାରୁ ପିଲାଙ୍କ ପର୍ଯ୍ୟନ୍ତ ସଭିଏଁ ମୁଣ୍ଡ ହଲାଉ ଥିବାର ଦେଖି ସେ ନିଜେ ମୁଣ୍ଡହଲାଇବାକୁ ଲାଗିଲା ଏବଂ ନିମ୍ନ ସ୍ୱରରେ 'ବାହାବା, ବାହାବା' କହିଲା, ଯେପରି କେହି ନଶୁଣି ପାରନ୍ତି। ସେଇ ଅଢ଼େଇ ଘଣ୍ଟାର କାର୍ଯ୍ୟକ୍ରମ ଭିତରେ

---

* 'କୃଷ୍ଣ' ତୁମେ ଶ୍ରୀଘ୍ର ଆସ।

ମାମୁଁ ଥରଟିଏମାତ୍ର ତା ସହ କଥା ହୋଇଥିଲେ। ତହସିଲଦାର ସେଇ ଦି'ଥର ମାତ୍ର ତାର ଅସ୍ତିତ୍ୱକୁ ସ୍ୱୀକାର କରିଥିଲେ। ଥରେ ତମାଖୁ ନେବା କଥାରେ, ଅନ୍ୟଥର ତାଙ୍କ ସମୀପସ୍ଥ ତକିଆଉପରେ ଆକ୍ରମଣ ବେଳେ। କିଟ୍ଟୀ ସ୍ପଷ୍ଟ ଅନୁଭବ କଲା ତାର ଆସିବା ବ୍ୟର୍ଥ ହୋଇଛି। ରାଘସ୍ୱାର ଫରମାସ ଅନୁସାରେ 'ନମାର ପିଚକାରୀ' ଠୁମରୀ କୁ ସାଭିନୟ ଗାନକଲାପରେ ଗୀତ ଶେଷ ହେଲା। ମହବୁବଜାନର ଅଭିନୟ ଓ ସ୍ୱରର କୋମଳତା କିଟ୍ଟୀକୁ ଟିକିଏ ବି ଭଲ ଲାଗିଲା ନାହିଁ। ସେ ଭାବିଲା ଲାଭ ଭିତରେ ଆଜିକାର ଏଇ ଅତ୍ୟାଚାର ସାର ହେଲା।

ସଭା ଶେଷହେଲାପରେ ତହସିଲଦାର ମହବୁବଜାନ ସହ ପଦେ ଦି'ପଦ କଥା ହୋଇ ଅନ୍ୟମାନଙ୍କ ନମସ୍କାରକୁ ସ୍ୱୀକାର କରି ଯିବାକୁ ବାହାରିଛନ୍ତି, କିଟ୍ଟୀ ନମସ୍କାର କରି ପଚାରିଲା, 'ସାହେବ ଟାଙ୍ଗା ଡାକି ଆଣିବି?' ସାହେବ କହିଲେ, 'ରାଘସ୍ୱା ପିଲାଟିଏ ପଠାଇଛନ୍ତି।' ବିନାଗାଳିରେ ସାହେବଙ୍କ ମୁହଁରୁ କଥା ବାହାରିପାରେ, ଏହା ଦେଖି କିଟ୍ଟୀ ଧୈର୍ଯ୍ୟ ଧରିଲା। ଏକଥା ସେକଥା ପରେ କିଟ୍ଟୀ ସେଇ ପୁରୁଣା କେସ୍ କଥା ଉଠାଇଲା। ଏତିକିବେଳେ ଟାଙ୍ଗା ଆସି ଠିଆ ହେଲା। ମାତ୍ର ତହସିଲଦାରଙ୍କର କିଟ୍ଟୀସହ କଥା କହିବାକୁ ଇଚ୍ଛା ହୋଇଥିବାରୁ ସେଇଠି ଠିଆଠିଆ ଗମ୍ଭୀର ହୋଇ କହିଲେ, 'ଦେଖ କୁଲକର୍ଣ୍ଣୀ, ତୁମ ପରି ଲୋକ ଯଦି ରେଭିନିଉ ବିଭାଗରେ ସମ୍ଭାଳି ରହିବାକୁ ଚାହୁଁଥାଏ ତେବେ କଥାଟିଏ ମନେରଖ। ତୁମ ଜାଗାରେ ଥିବା ଲୋକ ପାଇଁ ସବୁଠାରୁ ବଡ଼ ଆବଶ୍ୟକତା ହେଲା କାଇଦାକାନୁନ୍, ଦପ୍ତରୀକାମଦାମ ଭଲଭାବରେ ଜାଣିଥିବା। ଅନ୍ୟକାହା କଥାରେ ପଡ଼ିବା ଦରକାର ନାହିଁ। ନିଜର କାମଦାମ ଠିକ୍ ରହିବା ଦରକାର। ତେବେ ଯାଇଁ ତୁମେ ଏଥିରେ ତିଷ୍ଠି ରହିପାରିବ। ପରସୁ ଦିନ ତୁମକୁ କିଏ ନୋଟ ଲେଖେଇଥିଲା, ସେ କଥା କଣ ମୋତେ ଜଣାନାହିଁ?'

କିଟ୍ଟୀ କହିଲା, 'ନାଇଁ ଆଜ୍ଞା, ତା'ର କେସ୍ କ୍ଲିଅର ଥିଲା ବୋଲି ସେ କହିଲା।'

'ଯାହା ବି ହେଉ, ତୁମର ତା'ଉପରେ ଏତେଟା ନିର୍ଭର କରିବା ଉଚିତନୁହଁ। ଜରୁରୀ କାଇଦାକାନୁନ୍ ପାଇଁ ଯେଉଁ ଫାଇଲ କଚେରୀରେ ଅଛି, ତାକୁ ଘରକୁ ନେଇଯାଇ ଥରେ ନୁହଁ ଦଶଥର ପଢ଼। ତାହେଲେ ତୁମେ ନିଜ କାମ ବୁଝିପାରିବ। ରେଭିନିଉ ବିଭାଗରେ କାମକଲାବେଳେ କାହାଉପରେ ଭରସା କରିବା ଉଚିତ ନୁହେଁ। ଏବେ ତୁମେ ଜୁନିୟର, ତେଣୁ ପାଞ୍ଚଜଣ ତୁମକୁ ଶିଖାଉଛନ୍ତି। କିନ୍ତୁ କାଲି ଯଦି କେହି ଚାଲାକ ପିଲା ତୁମତଳେ କାମ କରେ ତେବେ ଦଶପନ୍ଦର ଦିନରେ ତମ ମୁଣ୍ଡରେ କୌଣସି ମାମଲା ବୋଳିଦେଇ ନିଜେ ସୁଯୋଗ ମାରିନେବ। ତୁମେ ସାଦାସିଧା। ଏ ବିଭାଗର ରୀତିନୀତି ଏବେବି ତୁମେ ଜାଣିନାହଁ। କାଲି ସଞ୍ଜକୁ ନିୟମକାନୁନର ଫାଇଲ ଘରକୁ ନେଇଯିବ। ସକାଳୁ ନେଇ ଆସୁଥିବ। ତୁମକୁ ଦବାକୁ ଯଦି କେହି ମନାକରେ ତେବେ ମୋ ପାଖକୁ ଆସିବ, ମୁଁ ଦିଆଇଦେବି। ଅନ୍ୟ ଉପରେ ନିର୍ଭର କରି କେତେଦିନ କାମ ଚଳେଇବ? ନିଜ ହାତ ପୋଡ଼ିବା ପୂର୍ବରୁ ଏହା ବୁଝିରଖ।'

ଏତକ କହି ସାହେବ ଟାଙ୍ଗାରେ ବସିଲେ। ତାଙ୍କୁ ପହଞ୍ଚାଇବା ପାଇଁ ରାଘବା ମଧ ଟାଙ୍ଗାରେ ବସିଲା। କୃତଜ୍ଞତାରେ କିଟ୍ଟୀର ମନ ପୂରିଉଠିଲା।

ଟାଙ୍ଗା ଚାଲିଗଲାପରେ ଯେତେବେଳେ କିଟ୍ଟୀ ଭାବିଲା ଯେ ଏବେ ତାର ଘରକୁ ଚାଲିଯିବା ଉଚିତ, ସେତେବେଳେ ଯେଉଁ ପିଲା ଆଙ୍ଗୁଳି ମାଡ଼ି ହୋଇ ଯାଇଥିବାରୁ ଚିର୍ଚ୍ଚିରେଇ ଥିଲା ସେ ଆସିକରି ତାର କାମିଜଟାଣି କହିଲା, 'ମାଇଁ ଡାକୁଛନ୍ତି।'

କିଟ୍ଟୀ ପଚାରିଲା, 'କେଉଁ ମାଇଁ ?'

'ଆମ ମାଇଁ।'

'ତୁ କିଏ ?'

'ମୁଁ ଭୀମସେନ।'

କିଟ୍ଟୀ ଭାବିଲା ଏ ନିଷ୍ଫଳ କଥାବାର୍ତ୍ତାରେ କିଛି ଲାଭ ନାହିଁ। ସେ ଚୁପ୍‌ଚାପ ଭୀମସେନ ହାତରେ ପଡ଼ିଥିବା ବକାସୁର ପରି ସେଇ ପିଲାଟି ପଛେ ପଛେ ଚାଲିବାକୁ ଲାଗିଲା। ଘର ଭିତରେ ଗୋଟିଏ ଆଡ଼େ ଆଙ୍ଗୁଠି ଦେଖାଇ 'ସେଇଠି ଶୋଇଛନ୍ତି' କହି ପିଲାଟି ପଳାଇଲା। ରାଘବାର ସ୍ତ୍ରୀକୁ ସାଇରେ ସମସ୍ତେ ମାଇଁ ବୋଲି ଡାକୁ ଥିଲେ। କିଟ୍ଟୀ ଭୟ ଓ ସଙ୍କୋଚ ବୋଧ କରୁଥାଏ। ତାର ମନେପଡ଼ିଗଲା, ରାଘବା ଥରେ କହୁଥିଲା ଯେ ତାର ସ୍ତ୍ରୀ ରକ୍ତକ୍ଷୟ ରୋଗରେ ପଡ଼ିଛି। ବର୍ଷରେ ତିନିଚାରିମାସ ଶଯ୍ୟାଶାୟୀ ହୋଇ ରହେ। ମନେପଡ଼ିଲାମାତ୍ରେ ତାର ଟିକିଏ ଧୈର୍ଯ୍ୟ ଆସିଲା। ସେ ଦୁଆର ଆଡ଼କୁ ଚାଲିଲା। ଦୁଆର ମୁହଁକୁ ଆସିଲାମାତ୍ରେ ତାକୁ ଏଇକଥା ସ୍ପଷ୍ଟ ଶୁଣାଗଲା।

'ଭଉଣୀ ମହବୁବ୍, ତୁ ମୋର ସାନଭଉଣୀ। ମୁଁ ତୋ'ଠୁ ବଡ଼, ଏକଥା ତୁ ଭୁଲିଯିବୁ ନାହିଁ, ମୋ ପାଇଁ ତୁ ଭଗବାନଙ୍କ ସମାନ।'

ଭାବୁଭାବୁଁ କିଟ୍ଟୀ କବାଟ ପାଖକୁ ଆସିଲା। ସେତେବେଳକୁ ରାତି ଦଶଟା ବାଜିସାରିଥାଏ। ତାର ଛାଇ ପଡ଼ିବା ଦେଖି ମହବୁବ୍ ଚଟ୍ କରି ଉଠି ଏକ ପାଖକୁ ଘୁଞ୍ଚିଗଲା। ଲଣ୍ଠନର ଅସ୍ପଷ୍ଟ ଆଲୁଅରେ ସେ ଦେଖିଲା ଜଣେ ମଧ୍ୟବୟସ୍କ, କ୍ଳାନ୍ତ, ଦୁର୍ବଳ ସ୍ତ୍ରୀଲୋକ କୁଜେଇ ହୋଇ ବସିଛି। କପାଳରେ ହାଲୁକା ଲମ୍ବା ଟିପାଟିଏ। ଦେହର ରଙ୍ଗ କମଳାଲେମ୍ବୁପରି ହଳଦିଆ ଗୋରା। ବୟସ ବେଶୀ ଦିଶୁଥିଲେ ସୁଦ୍ଧା ଏହା ସ୍ପଷ୍ଟ ଜଣାଯାଉଥାଏ ଯେ ସେ ଆପଣାର ଯୁବା ବୟସରେ ଖୁବ୍ ସୁନ୍ଦରୀ ଥିଲା। ଗାଲ ଟିକିଏ ଚିବୁକ ଆଡ଼କୁ ଓହଳି ଯାଇଥାଏ, ଯେଉଁଥିରୁ ବୁଝା ପଡୁଥାଏ ଯେ ସେ ବହୁବର୍ଷ ହେଲା କାଶର ଶିକାର ହୋଇଛି। ତଥାପି ମୁହଁରେ କାନ୍ତି ଅଛି। ସେ କିଟ୍ଟୀଆଡ଼କୁ ଧୀରେ 'ଆରେ କିଟ୍ଟୀ, ଆ' କହି ଫେର ମହବୁବଜାନଙ୍କୁ କହିଲେ 'ମହବୁବ, ଭଉଣୀ, ଏଇଠି ଆସନେ ପକାଅ।'

କିଟ୍ଟୀ ଆସନଉପରେ ବସିଲା। ମହବୁବଜାନ ଉଠିପଡ଼ି କହିଲା, 'ହଉ, ଭଉଣୀ, ମୁଁ ଏବେ ଯାଏଁ। ସାଢ଼େ ଦଶଟାରେ ଗାଡ଼ି ଅଛି।' ଯେତେ ପର୍ଯ୍ୟନ୍ତ ସମ୍ଭବ ରାଘବା ଘରେ ନରହିବା ପାଇଁ ମହବୁବ ନିୟମ କରିଥିଲା। ଯେତେବେଳେ ଆଉକିଛି

ଉପାୟ ନମିଳେ ସେତେବେଳେ ସେ ରାଘସ୍ୱାଙ୍କୁ ପଚାରି ତାଙ୍କଘରେ ଶୋଇ ପଡ଼େ।

ଚମ୍ପା ଯେତେବେଳେ କହିଲା, 'ଟିକିଏ ଦୁଧ ପିଇକରି ଯାଆ ଭଉଣୀ', ମହବୁବ ପୁଣି ବସିପଡ଼ିଲା। ଚମ୍ପାର ଶାରୀରିକ ଦୁର୍ବଳତା ତାର କଥାରେ ଅଧିକାର ଭରି ଦେଇଥିଲା। ଦୁର୍ବଳତା ହେତୁ, ଅଧିକ ବଳେଇକରି କହିବାର ଶକ୍ତି ତାର ନଥିଲା। ଲୋକେ ତାହା ଦେଖି ଅନନ୍ୟୋପାୟ ହୋଇ ତାର ଇଚ୍ଛାକୁ ଆଜ୍ଞାବୋଲି ମାନିନେଇ ପୂରଣ କରୁଥିଲେ।

ସେତିକିବେଳେ କବାଟ ପାଖଦେଇ ଚାଲିଯାଉଥିବା ରତ୍ନାକୁ ଡାକି ଚମ୍ପକା କହିଲା, 'ରତ୍ନା, ବାହାର ଅଗଣାରୁ ଗ୍ୟାସଆଲୁଅ ନେଇଆ।' ଗ୍ୟାସ ଆଲୁଅ ଆସିଲା। ଦୁଆର ମୁହଁରେ ଗ୍ୟାସବତୀ ରଖିଦେଇ ରତ୍ନା ବାହାରୁ ହିଁ ଘୁଞ୍ଚିଗଲା।

'ତୁ ଯେତେବେଳେ ଏଡ଼ିକି ଟିକିଏ ପିଲା ଥିଲୁ ତୋତେ ସେତେବେଳେ ଦେଖିଥିଲି। ତୁମର ଆମର ମନଫଟାଫଟି ହେବାର ଦଶବର୍ଷ ହୋଇ ଗଲାଣି। ଏବେ ମୁହଁ ଦେଖାଦେଖି ମଧ ଦୁର୍ଲଭ। ଯା' ହେଉ ତୁ'ତ ବଡ଼ ହୋଇ ଯାଇଛୁ।' ଏହା କହି ଚମ୍ପକା ମହବୁବକୁ କିଙ୍ଗୀର ପରିଚୟ ଦେଲା। ମହବୁବ ଉତ୍ସୁକ ହୋଇ ମଝିରେ ମଝିରେ ପଚାରି ସବୁ ବୁଝିନେଲା। ଏଇ ପ୍ରଶ୍ନୋତ୍ତର ମଝିରେ ଚମ୍ପକା ଗଙ୍ଗୱା ବିଷୟରେ ଏକଥା ସେକଥା ପଚାରି ସବିଶେଷ ଜାଣିଲା। ବାରମ୍ବାର କିଙ୍ଗୀକୁ ପଚାରି ବୁଝିବାକୁ ଚେଷ୍ଟାକଲା ଯେ ଏଯାଏଁ ଗଙ୍ଗୱା ସେମାନଙ୍କ ଉପରେ ରାଗରଖିଛି କି ନାହିଁ; ଯଦି ରାଗଥାଏ ତାହା କେତେ ପରିମାଣରେ ଅଛି। ଜୀବିତ ଥିଲା ବେଳେ କିଙ୍ଗୀର ବାପା ଚମ୍ପକାର ବାପାକୁ କେତେ ସ୍ନେହ କରୁଥିଲେ, ଚମ୍ପକା ସବୁକଥା ବଖାଣିଲା। ନିଜର ବେମାର କଥା ବଡ଼ କରୁଣ ଭାବରେ କହିଲା। ସ୍ତ୍ରୀଲୋକ ମାନଙ୍କ ମେଳରେ ବସି କିଙ୍ଗୀର ମନ ନରମ ହୋଇଯାଇଥିଲା। ଏତିକି ବେଳେ ମଉକାଦେଖି ଚମ୍ପକା ସହଜଭାବରେ କିଙ୍ଗୀକୁ କଥାଟିଏ କହିଲା। 'ଏଇ ଦଶବର୍ଷ ଭିତରେ ମୋର ବଞ୍ଚିଥିବା ମରିଥିବା ସମାନ। ଆଜି ଯେ ବଞ୍ଚିରହିଛି ସେ ତୋ' ବାପାଙ୍କର ପୁଣ୍ୟ ବଳରୁ। ତୋ' ମା'ଙ୍କ ଲେଖାରେ ମୁଁ ମରିଯାଇଛି। ସେ ଆମନାଁରେ ତର୍ପଣ କରିସାରିଛି।' ଏହା ଶୁଣି ମହବୁବର ମନ ତରଳିଗଲା। କହିଲା 'ତୁମପରି ସ୍ତ୍ରୀଲୋକ ଉପରେ କେହିକଣ ରାଗ ଅହଙ୍କାର ରଖିବା ସମ୍ଭବ?'

ମହବୁବ ଭଉଣୀ, ସବୁ କଥାର ଏକ ସମୟ ଥାଏ। ଏବେ ତୁହିଁ କହୁନୁ, ତୁ' କିଏ, ମୁଁ ବା କିଏ। ଭଉଣୀ ପରି ରହିଛୁଁ ତ! ଅଥଚ ଦେଖ, ନିଜରକ୍ତର ସମ୍ପର୍କ ସହ ଏମିତି ଘଟଣା ଘଟିଯାଉଛି। ଏଇଥିପାଇଁ ହିଁ ଲୋକେ କହନ୍ତି 'କାଳାୟ ତସ୍ମୈ ନମଃ'। ହେଲେ ଭଉଣୀ, କଳିତକରାଳରେ କେଉଁଠି ରକ୍ତର ସମ୍ପର୍କ ତୁଟି ଗଲାଣି? ଶହେବର୍ଷ ବିତିଯାଉ ପଛକେ, ଯିଏ ନିଜର ସିଏ ନିଜର।''

ଏମିତି ଉଦାର ଲୋକ ମୁହଁରୁ ମା' ତର୍ପଣ କରିଦେଇଥିବା କଥା ଶୁଣିବାକୁ କିଙ୍ଗୀକୁ ଟିକିଏ ମଧ ଲାଜଲାଗିଲା ନାହିଁ। ଏତିକିବେଳେ ଦି' କପ୍ ଗରମ ଦୁଧ ନେଇ ରତ୍ନା ଆସିଲା। ଏବେ ଭିତରକୁ ନଆସି ତାର ଚାରା ନାହିଁ। ଦୁଆର

ମୁହଁରେ ସଙ୍କୋଚିତ ହୋଇ ଠିଆହୋଇଥିବା ପନ୍ଦର ବର୍ଷର ତରୁଣୀ କିଟ୍ଟୀର ଦୃଷ୍ଟିପଥକୁ ଆସିଲା । ମା'ର ସୌନ୍ଦର୍ଯ୍ୟ ଦ୍ୱିଗୁଣିତ ହୋଇ ତା'ଠାରେ ଫୁଟି ଉଠିଥିଲା । ସେ ଦୁଧ ଆଣି ରଖିଲାବେଳେ ତାର ଓଢ଼ଣାହୀନ ମୁହଁକୁ କିଟ୍ଟୀ ଲୋଭାତୁର ଆଖିରେ ଚାହିଁ ରହିଲା ।

ତିନିଘଣ୍ଟା ଆଗରୁ ଯୁବକ ପାଲଟିଥିବା କିଟ୍ଟୀ ଏବେ ପ୍ରେମିକ ବି ପାଲଟି ଗଲା ।

# ୨. ଗଙ୍ଗୱାର ଅସାବଧାନତାର ଫଳ

ଗତଥର ଦେଶାଇଜୀଙ୍କ ଘରକୁ ଆସିଥିଲାବେଳେ ଗଙ୍ଗୱା ଭୁଲଟିଏ କରିପକାଇଥିଲା।

ରାଗରେ ପଇସାପତ୍ର ବିଷୟରେ ଗଙ୍ଗୱା ଯାହାକିଛି କହିଥିଲା ତାହା ବସନ୍ତର କାନରେ ପଡ଼ିଥିଲା। ସିନେମା ଦେଖିବାପାଇଁ ପଇସା ନମିଳିବା ହେତୁ ସଞ୍ଜସାରା ବସନ୍ତରାଓ ଚିଡ଼ ଚିଡ଼ ହେଉଥାଏ। ଏତେଥର ସିନେମା ଯିବା ଓ ସେଠାରେ ସ୍ଥାୟୀ ଗ୍ରାହକ ହେବା ସତ୍ତ୍ୱେ ଦିନକ ପାଇଁ ମଧ୍ୟ ଗେଟକିପର୍ ବିନାଟିକଟରେ ଭିତରକୁ ପଶିବାକୁ ଦେଲା ନାହିଁ। ବସନ୍ତରାଓ ବହୁତ କାକୁତିମିନତି କଲା। ତେବେବି ସେ ଶୁଣିଲା ନାହିଁ। ତିନିଅଣା ପଇସା ପାଇଁ ଫେରିଆସିବାର ବ୍ୟଥାରେ ବ୍ୟଥିତ ହୋଇ ସେ ଗଙ୍ଗୱା କଥାର ରହସ୍ୟଭେଦ ପାଇଁ ସ୍ଥିର କଲା। ବସନ୍ତ ଋତୁପରି ବସନ୍ତରାଓର ଝମେଲା ବଡ଼ ବିଚିତ୍ର। ପରଦିନ ଦିପହରେ ମା'ଠିକ୍ ଖାଇସାରିଲା ବେଳକୁ ସେ ପାନଡ଼ବା ଲୁଚାଇ ଦେଲା। ଖାଇସାରିଲା ମାତ୍ରେ ଯଦି ଦି'ଖଣ୍ଡ ପାନ ଓ କଳେଖୁଆ ଖାଇବାକୁ ନମିଳେ ତେବେ ବିଣୁବାଈଙ୍କୁ ଜୀବନପିତା ଲାଗେ। ସେ ଅସ୍ଥିର ହୋଇ ସାରାଟା ଘର ଅଣ୍ଡାଳିଲା। ଏଣେ ଦେଶାଇଜୀଙ୍କ ଶୋଇବା ବେଳ, ବେଶୀ ପାଟିତୁଣ୍ଡ କରିହେଉ ନାହିଁ।

ଏତିକିବେଳେ ବସନ୍ତରାଓ ଉପରୁ ଓହ୍ଲେଇ ଆସି ମା'କୁ ପଚାରିଲା, 'ମା' କାଲି ଗଙ୍ଗୱା କଣ ଗୋଟେ କହୁଥିଲା ନା ?'

'କଣ କହୁଥିଲା ? ବିଚାରୀ ପୁଅ ପୁଅ ହୋଇ ପାଗଳ।'

'ନାଁ ମା', କଣ ପଇସାପତ୍ର କଥା କହୁଥିଲା ନାଁ ?'

'ପଇସା କୁଆଡ଼ୁ ଆସିଲା ରେ ?'

'ହେଲେ ସେ ମୋତେ ଗାଳି ଶୁଣେଇଲା। ଘର ଲୋକକୁ ସିନେମା ଦେଖିବାପାଇଁ ତିନିଅଣା ପଇସା ମିଳୁନାହିଁ, ଆଉ ସେ ସ୍ତ୍ରୀ ଲୋକଟାର ଯେତେବେଳେ ଦରକାର ଦଶପନ୍ଦର ଟଙ୍କା ମିଳିଯାଉଚି। ଘରେ ଯାହା ସବୁ ହେଉଛି, ସେ ସବୁ କଣ ମୁଁ ଜାଣୁନାହିଁ? ପରପୁଅ ପାଇଁ ପିଢ଼ାପଡୁଛି ତ ଘରଲୋକପାଇଁ ଠେଙ୍ଗା। ମୁଁ କିଛି କହୁନାହିଁ ନାଁ, ସେଇଥିପାଇଁ।'

'ହଇରେ ବସନ୍ତ, ତୋତେ ଦେବାକୁ ମନା କରୁଛି କିଏ ? ସିଏତ ତୋରି

ଭଲ ପାଇଁ କହୁଛନ୍ତି। ସପ୍ତାରେ ଥରେ ସିନେମା ଦେଖ ପୁଅ, ନିତି ଦେଖିଲେ କେମିତି ହବ ? ତୋ ପଢ଼ାପଢ଼ିର ବା କଣ ହେବ ... ?'

'ସିନେମା ନଦେଖିଲେ ମୋର ମୁଣ୍ଡ ବିନ୍ଧେ। ମୁଣ୍ଡ ବିନ୍ଧିଲେ ପଢ଼ିହେବ କେମିତି ? ଆଉ ଯଦି ଫେଲ ହୋଇଯିବି ତେବେ କହିବ ଯେ ଦେଖ, କୃଷ୍ଣକୁ ଦେଖ ! ''କୃଷ୍ଣ, କୃଷ୍ଣ'' କହି ମୋ କାନକୁ ଅତଡ଼ା ପକେଇ ଦେବ। ସେମାନଙ୍କୁ ଦେଖିଲା ମାତ୍ରେ ମୋ ଅଷ୍ଟାଙ୍ଗ ଜଳିଯାଏ। ଠିକ୍ ଅଛି, ମୋର ପଇସା ଦରକାର ନାହିଁ; କିନ୍ତୁ ଘରର ପଇସା କୁଆଡ଼େ ଯାଉଛି ସେ ଖବର ତ ମୋର ଜାଣିବା ଦରକାର। ମୁଁ କିଛି ଛୋଟ ପିଲା ନୁହେଁ। ମୁଁ କଣ କାହୁଁଅଇଲାଟିଏ ! ଯଦି ଏମିତି ଚାଲିବ ତେବେ ଅଚ୍ୟୁତିଭାଇକୁ ସବୁକିଛି ଲେଖିଦେବି !'

କଥାବଦଳାଇବା ପାଇଁ ବିଶୁବାଈ କହିଲେ, 'ଅଚ୍ୟୁତ ତୋ'ପରି ବେକୁଫ୍ ନୁହେଁ। ଯାହା ହେଉଛି ହେଉ ପଛକେ, ଆଗେ ମୁଁ ପାନଖଣ୍ଡିଏ ଖାଏଁ।'

'ତୁ ପାନ ଗୁଆ ଖାଇବୁ କେଉଁଠୁ ? ମୁଁ ପାନଡ଼ବା ଲୁଚାଇ ଦେଇଛି। ପହିଲେ, ବତା, ପରେ ଦେବି।'

ପୁଅର ଏଇ ହରକତ ଦେଖି ବିଶୁବାଈଙ୍କ ମନରେ ଦୟା ହେଲା। ସେ ପାନଖିଆ ଛାଡ଼ିଦେଇ ପାରନ୍ତେ, ହେଲେ ପୁଅର ଏଇ ହଇରାଣ, ତାର କଥାବାର୍ତ୍ତା, ବିଚାର, ଏସବୁ ଦେଖି ଚିନ୍ତିତା ହେଲେ। ଦଣ୍ଡେ ଭାବି ଦେଖିଲେ ଯେ ଯେଉଁ କଥା ସେ ଆଜିପର୍ଯ୍ୟନ୍ତ ଗୋପନ ରଖିଥିଲେ, ତାକୁ କହିଦେବା ଦ୍ୱାରା କୌଣସି କ୍ଷତିହେବ ନାହିଁ। କିମ୍ୱା ଲୁଚାଇ ରଖିବା ଦ୍ୱାରା କିଛି ଲାଭ ହେବ ନାହିଁ। ବସନ୍ତମନରେ ଗଙ୍ଗୱା ପାଇଁ ଅନ୍ତତଃ ଟିକିଏ ଶ୍ରଦ୍ଧା ଜାତହେବ ଏଇ ଆଶାରେ ସେ ମୁହଁ ଖୋଲିଲେ।

'ବାପା ବସନ୍ତ, ତୁ ଏବେ ବୁଝିବା ସୁଝିବାର ହେଲୁଣି। ତୋ' ପାନଗୁଆ ତୋ'ଠି ଥାଉ। କେବଳ ତୋର ପଇସାର ଅହଙ୍କାର ଘୁଞ୍ଚିଯିବ, ଏଥିପାଇଁ କହୁଛି। ଶୁଣ। ଗଙ୍ଗୱା କାହାକୁ ନକହିବା ପାଇଁ କହିଥିଲା। ମାତ୍ର ତୋ'ମୋ' ଭିତରେ କୌଣସି ଭେଦନାହିଁ। ଏବେ ଦଶବର୍ଷ ବିତିଗଲାଣି, କହିବାରେ କ୍ଷତିନାହିଁ। ଅସଲରେ ପଇସାନେଇ ଟାଣ ଦେଖେଇବା ଉଚିତନୁହଁ, ଆଜି ଅଛୁ କାଲି ନାହିଁ। ସଭିଙ୍କ ସହ ସଦ୍‌ଭାବ ରଖ...।'

ଆପଣାର କୌତୂହଳକୁ ରୋକିନପାରି ବସନ୍ତ କହିଲା 'ପହିଲେ ବତା, କଥା କଣ ?'

'ପୁଅ, ଗଙ୍ଗୱା ଥିଲାବାଲାଘର ମଣିଷ। ତାର ସ୍ୱାମୀ ମୋତି ବେପାର କରୁଥିଲେ। ଗୁଡ଼ ବେପାର କରୁଥିଲେ। କଣ କହିବି, ବିଚ୍‌ରା ବିପଦରେ ପଡ଼ିଗଲା। ସବୁ ନିଲାମ ହୋଇଗଲା। ଯେଉଁଠି ଯାହା ଦେଇଥିଲେ ବୁଡ଼ିଗଲା, ଯେଉଁଠୁ ଯାହା ନେଇଥିଲେ ବୁଡ଼ିଗଲା। ଯାହା ଯେଉଁଠି ରଖିଥିଲେ ସେ ବି ବୁଡ଼ିଗଲା। ଛ ମାସ ଭିତରେ 'ପେଟପେଟ' କହି ଯନ୍ତ୍ରଣା ଭିତରେ ସେ ଚାଲିଗଲେ। ଗଙ୍ଗୱା ସାହସ ବାଲୀ। ବିପଦରେ ପଡ଼ି ସମୟ କ୍ରମେ ସବୁ ବିଲବାଡ଼ି ବିକିସାରି ଥିଲେ। କୋରଖ ଆସିବାରୁ

ତାର ସ୍ୱାମୀ ଧନ୍ଦିହୋଇଗଲା ବେଳେ, ଘରେ ଯାହା ଅଛେ ବହୁତେ ସୁନାଥିଲା, ତାକୁ ଗଙ୍ଗୱା ଏଇ କିଟୀ ହାତରେ ବାରିପଟଦେଇ ବାହାର କରିଦେଲା। କେଜାଣି ସେ କେମିତି ନେଲା ଓ ସଭିଙ୍କ ଆଖିରୁ ବଞ୍ଚେଇ ପାରିଲା। ଯାହାବି ହେଉ କିଛି ବଞ୍ଚିଗଲା। ସବୁ କିଛି ଚାଲିଯିବା ପରେ, ସ୍ୱାମୀ ମରିଯିବା ବାଦ୍ ସେ ତାକୁ ବାହାର କରି ରାତାରାତି ଆଣି ଆମକୁ ବିକି ଦେଲା। ଅନ୍ଦାଜ ସାତଆଠଶହ ଟଙ୍କା ସେ ତୋ ବାପାଙ୍କ ପାଖରେ ରଖିଥିଲା। ସୁଧ ଅସଲ ମିଶି ଏବେ ପ୍ରାୟ ହଜାରେ ଟଙ୍କା ହୋଇ ଗଲାଣି। ଯେତେବେଳେ ଦରକାର ହୁଏ ଆସି ନିଜ ପଇସାରୁ ନେଇଯାଏ। ଆମେ ତାକୁ କଣ ବା ଦେଉଛୁ? ଦେବାଭିତରେ କେବଳ ଦି' ପଦ ମିଠା କଥା। ସେତକପାଇଁ ସେ ଆମଠାରେ ଏତେ କୃତଜ୍ଞ! ତାର ଏ' ଗୁଣକୁ ଦେଖ।

'କିଟୀ ମଧ ସବୁ ମାସ ଟଙ୍କା ଆଣି ଦିଏ ନାଁ କଣ?'

'ଗତଥର ଆମେ କାଶୀ ଗଲାବେଳେ ସେ ଆମସହ ଯାଇଥିଲା। ସେତେବେଳେ ଆମେ ନାଁକୁ ମାତ୍ର ତା ପାଇଁ ଖର୍ଚ୍ଚ କରିଥିଲୁଁ। ଏବେ କିଟୀ ହାତରୁ ପ୍ରତିମାସ କିଛି କିଛି ଟଙ୍କା ଦିଆଇଦେଉଛି। ସେ ବି ତା'ରି ଯୋଜନା, ଯେମିତି ଦି' ପଇସା ବଞ୍ଚିଯିବ। ଗରିବଲୋକର କଥା ସେମିତି। ପେଟଭରି ଖାଇବାକୁ ମିଳିଲେ ହେଲା, ସେମାନେ ବେଶୀ କଥାର ଲୋକ ନୁହନ୍ତି।

ଶେଷକଥା ପଦକଶୁଣି ବସନ୍ତ ମର୍ମାହତ ହେଲା। ନିଜ ଜଣାଇବାଘରୁ ପାନଡ଼ବା ଆଣି ମା' ଆଗରେ ରଖିଲା।

ମା' କହିଲା, 'ଦରକାର ନାହିଁ। ତୋ ପାନ ତୁଇ ଖା।'

ଦି' ଦିନ ଭିତରେ ମା'ଦଉ ଶିକ୍ଷାମୃତକୁ ବସନ୍ତ ବିଷରେ ପରିଣତ କରିଦେଲା।

ସେଦିନ ରାତିରେ ବିଶୁବାଇ ପୁଅର କାଣ୍ଡ ଓ ନିଜର ଉତ୍ତର ସ୍ୱାମୀଙ୍କୁ ଶୁଣାଇଲେ। ସବୁ ଶୁଣି ପୁଅର ଭବିଷ୍ୟତ ସମ୍ପର୍କରେ ଦେଶାଇଜୀ ଚିନ୍ତିତ ହୋଇ ପଡ଼ିଲେ। ଏ ପିଲା ଯେମିତି ବଢୁଛି ସେମିତି ଯଦି ରହିବ, ତେବେ କିଏ ଜାଣେ କେଉଁଠି ପହଞ୍ଚିବ! ବଡ଼ ପୁଅ ଅଚ୍ୟୁତକୁ ନେଇ ତାଙ୍କର କୌଣସି ଚିନ୍ତା ନଥିଲା। ତାକୁ ଦେଖିଲେ ତାଙ୍କର ଖୁସିର ସୀମା ରହେ ନାହିଁ। ବସନ୍ତରାଓ ଆପଣାର କୁଶିକ୍ଷାଦ୍ୱାରା କାଳେ ସାନପୁଅ ପୁରୁଷୋତ୍ତମକୁ ବିଗାଡ଼ି ଦେବ, ଦେଶାଇବାବୁଙ୍କୁ ସେଇ ଚିନ୍ତା ଘାରିଲା।

ସେମିତି ଦେଖିଲେ ପିଲାଦିନେ ଦେଶାଇଜୀ ନିଜ ବାପାଙ୍କ ସହ ବହୁତ ତକରାଳ କରୁଥିଲେ। ହେଲେ ବସନ୍ତ ପରି ତାଙ୍କର ମନ ଛୋଟ ନଥିଲା। ସିନେମା ପାଇଁ ତିନିଅଣା ପଇସା ନେଇ ବାପାସହ ବିବାଦ କରୁ ନଥିଲେ। ସମ୍ପତ୍ତି କୁଢ଼େଇ ରଖିଥିବା ହେତୁ ସବୁ ଧନୀଘର ପିଲାଏ, ଅଳ୍ପ ବୟସରୁ ସମ୍ପତ୍ତି ବିଷୟରେ ସଜାଗ ହୋଇ ଯା'ନ୍ତି। ଆଉ ସେଇମାନେ ଯେତେବେଳେ ବଡ଼ ହୋଇଯାନ୍ତି ନିଜ ପିଲାଙ୍କଠାରେ ସମ୍ପତ୍ତି ମୋହ ଦେଖି ଦୁଃଖିତ ହୁଅନ୍ତି। ଏହା ସମ୍ପତ୍ତିସହ ଜଡ଼ିରହିଥିବା ଅଭିଶାପ।

ଏଇ ପରିସ୍ଥିତିକୁ ଭିନ୍ନଭାବରେ ଉପଯୋଗ କରିବା ପାଇଁ ଦେଶାଇଜୀ ସ୍ଥିରକଲେ। ଅନେକ ଦିନରୁ ସେ କାନ୍ଧରେ ଗଙ୍ଗୱାର ଜୁଆଳି ବୋହି ବୋହି ଚାଲିଛନ୍ତି। ତାକୁ ଇଚ୍ଛାକରି ଉତାରି ପାରୁ ନାହାନ୍ତି। ଏବେ ତାକୁ ଉତାରିପକାଇବାର ଭଲ ବାହାନାଟିଏ ମିଳିଲା। ପରଦିନ ସେ ଗଙ୍ଗୱାକୁ ଡକାଇ ପଠାଇଲେ। ତାକୁ ସାଫ୍ ସାଫ୍ ସବୁ କଥା କହିଲେ।

'ତୁ ଯେ ମୋ ପାଖରେ ପଇସା ରଖିଛୁ, ତାର ନାଁ ଅଛି କାଗଜ ନାଁ ଅଛି ପତ୍ର। ମୋର ଏବେ ବୟସ ହେଲାଣି। ବଡ଼ବଡ଼ିଆଙ୍କ ଅମଳରୁ ଚଳିଆସୁଥିବା ବିଶ୍ୱାସ ଏବେ ଆମଠାରେ ନାହିଁ, ଆମ ସମୟର ବିଶ୍ୱାସ ଆମ ପିଲାଙ୍କ ସମୟରେ ମିଳିବ ନାହିଁ। ଏହାହିଁ ଦୁନିଆର ରୀତି। ତୋ ପୁଅ ଏବେ ଭଲ ଚାକିରୀ କଲାଣି। କାଲିଯେ ମୋ ପାଖରେ ପଇସାର ସଦ୍‌ଭାବ ଥିବ ତାର ବା କି ଭରସା ! ମୋ ପିଲାଏ ମଧ୍ୟ ବଡ଼ ହେଉଛନ୍ତି। ସେ ସବୁ ଯାଉ, ମୂଳକଥା ହେଲା ପଇସା ନଶ୍ୱର। ତୋ ଠାରେ ଋଣୀହୋଇ ମରିବାକୁ ମୋର ଇଚ୍ଛା ନାହିଁ। ହାତରେ ଧନ ଥାଉଁ ଥାଉଁ ତୋ ପଇସା ତୋତେ ମିଳିଗଲେ ମୋ ଛାତିରୁ ବୋଝଟିଏ ଉତୁରି ଯିବ।' ଏଇପରି ଏକ ଲମ୍ବାଚୌଡ଼ା ଭାଷଣ ଦେଇ ଦେଶାଇଜୀ ସେ ପର୍ଯ୍ୟନ୍ତ ହୋଇଥିବା ହିସାବ ପଢ଼ିଶୁଣାଇଲେ।

ଗଙ୍ଗୱା ଆଗରେ କଣ ଏସବୁ ସେ କହିବେ? ତାର ଲୁହର ଆକାଶ ଆଗରେ ତାଙ୍କର ବକ୍ତବ୍ୟ ବ୍ୟର୍ଥ ପ୍ରତିପାଦିତ ହେଲା। ପରିଶେଷରେ ଗଜରଗଜର ହୋଇ ଦେଶାଇଜୀ କହିଲେ, ଅନ୍ତତଃ ଏଇ ପଇସାପତ୍ର କଥା କିଟ୍ଟୀ କାନକୁ ଯିବା ଉଚିତ। ଗଙ୍ଗୱା ସେପାଇଁ ମଧ୍ୟ ପ୍ରସ୍ତୁତ ନଥିଲା।

'ମୂଳରୁତ ସେ ନିଜର ଖର୍ଚ୍ଚ ବଢ଼େଇ ଚାଲିଛି। ଆଗକୁ କିଛି ଆଶ୍ରାନାହିଁ ଭାବି ଦି'ପଇସା ସଞ୍ଚୁଛି। ଗୋପଣ୍ଣା, ସେ ଯଦି ହଜାରେ ଟଙ୍କା ନିଏ ସୁଦ୍ଧା ଚାରିଦିନ ସମ୍ଭାଳି ରଖିପାରିବ ନାହିଁ। କଥାରେ ଅଛି ବନ୍ଦ ମୁଠା ଓ ସୁଗନ୍ଧ ଦିହିଁଙ୍କୁ ବନ୍ଦରଖିବା ଭଲ। ତା'କାନକୁ ଏକଥା ନଯିବା ଉଚିତ। ଏହା କହି ସେ ଦେଶାଇଜୀଙ୍କ ମୁହଁ ବନ୍ଦ କରିଦେଲା।

ଶେଷରେ ଘରକୁ ଫେରିଲାବେଳେ ଏଇ କଥା ଯୋର ଦେଇ କହିଲା ଯେ 'ଆଉ ଯଦି କେହି ପଚାରେ କହିଦବ, ମୋ ପାଖରେ କାହାରି ପଇସା ନାହିଁ। ମୋର ଏତିକି କଥା ରଖ, ପରେ ଯା'ହବ ସେକଥା ମୁଁ ବୁଝିବି।'

ଦୀର୍ଘଶ୍ୱାସ ଟାଣି ଦେଶାଇଜୀ ସେ ଦାୟିତ୍ୱକୁ ପୁଣି ମାନିନେଲେ।

ପର ଦିନ ବସନ୍ତରାଓ ତହସିଲଦାରଙ୍କ କଚେରୀ କ୍ୟାଣ୍ଟିନରେ ଚା ପକୁଡ଼ି ଶେଷ କରି କିଟ୍ଟୀର ଦପ୍ତରରୁ ବାହାରିବା ବାଟକୁ ଝରକାରେ ଉଙ୍କିମାରୁ ଥାଏ। ତହସିଲଦାରଙ୍କ ଦପ୍ତରରୁ ବାହାରି କିଟ୍ଟୀ ଓ ତାର ଚାରିଜଣ ସହକର୍ମୀ କିରାଣୀ କାନ୍ଧରେ କୋଟ ପୂରେଇ ହସାହସି ହୋଇ କ୍ୟାଣ୍ଟିନ୍ ଆଡ଼େ ମୁହାଁଇଲେ। ସଭିଙ୍କ

ସହ କିଙ୍ଗୀ ଚା ଜଳଖିଆ ମଗାଇଲା। ପଛପଟେ ବସିଥିବା ବସନ୍ତରାଓଙ୍କୁ କିଙ୍ଗୀ ଦେଖିପାରି ନଥାଏ। ଜଳଖିଆପରେ ଏକୁଟିଆ ଘରଆଡ଼େ ମୁହଁଇଲା ବେଳେ ବସନ୍ତରାଓ ମଝିରାସ୍ତାରେ ତାର ମୁହାମୁହିଁ ହେଲା।

'କଣ ବାବୁ, ଆଉ ପୁରୁଣା ଲୋକସହ କାହିଁକି ଦେଖାକରିବ ?'

ମାସେ ହେଲା ବସନ୍ତ ଓ କିଙ୍ଗୀର ସାକ୍ଷାତ ହୋଇ ନଥାଏ। ବସନ୍ତ ଓ ବସନ୍ତର ଗୁଆଁର ପଣକୁ କିଙ୍ଗୀ ଭଲକରି ଚିହ୍ନେ। ସେ ସବୁବେଳେ ବସନ୍ତ ସହ ସଦ୍‌ଭାବ ରଖି କଥା ହୁଏ।

'ଆପଣ ହେଲେ ଦେଶାଇ ବାହାଦୂର, ଆପଣ ଗରିବକୁ ଭୁଲିଯାଇ ପାରନ୍ତି। ହେଲେ ଗରିବ କେମିତ... ?'

'ଏ ମିଚ୍ଛୁଆ ! ଚା ଦୋକାନରେ ମୁଁ ପଛରେ ବସିଥିଲି। ତୁମେ କଥା କହିଲ ନାହିଁ। ପଛକୁ ଚାହିଁଲେ କଥା କହିବାକୁ ପଡ଼ିବ ବୋଲି କହୁଣୀ ମାଡ଼ି ମୁହଁ ଆଗକୁ କରି ବସିରହିଲ। ମୁଁ ଭାବିଲି, ହଉ, ଦପ୍ତରଟାରେ ଆଉ ଯାଙ୍କ ଚୁଟି ଧରିବି କାହିଁକି ? ବାହାରକୁ ଆସୁ। ସେତ ସାହେବ ହୋଇ ଗଲେଣି...। ହେଲେ କିଙ୍ଗୀ ତୁମେ ଏବେ ସାହେବୀ ଛାଡ଼। ମୋ ବାପା ତୁମ ପ୍ରଶଂସାରେ ମୁଖର। କିଙ୍ଗୀ ହୋଟେଲରେ ଚା ପିଏନାହିଁ, ଜଳଖିଆ ଖାଏନାହିଁ, ସିନେମା ଯାଏନାହିଁ, ଭୃଗୁ ମୁନି ପରି ଚଳେ; ହେଲେ ଓଲେଇ ବିରାଡ଼ି ପରି ତୁମେ ସବୁକିଛି କରୁଛ !'

'ଏଇ ବସନ୍ତ ! ତୁମ ପରି ଯଦି ଘରେ ଆରାମରେ ଖାଇବାକୁ ପାଉଥାନ୍ତି ତେବେ ଏ ସବୁର ଦରକାର ନଥିଲା। ପେଟ ପାଇଁ ସବୁ କିଛି କରିବାକୁ ପଡୁଛି। ନଚାହିଁଲେ ସୁଦ୍ଧା କେତେକ ଅଭ୍ୟାସ କରିବାକୁ ପଡ଼େ।'

'ତୁମର କେଉଁ କଥାରେ କମ୍ ? ଉଈ ପରି ଭିତରେ ଭିତରେ ବେଶ୍ ଜମେଇ କରିତ ରହିଛ। ତୁମ ମା'ତ ବେଶ୍ ଜମେଇ ବସିଛନ୍ତି। ତୁମେ ଆଜି ରୋଜଗାର କରୁଛ, କାଲି ସା'ନ୍ତ ବନିବ। ପୁରୁଣା ଧତରା କୋଟ ଫିଙ୍ଗ, ଏ ସୁଜାଉଦ୍ଦୌଲ୍ଲା ମୁଛକୁ ସାଫ୍ କର। ସାହେବ ସାଜିଲା ପରେ ବି ସେଇ ମଫସଲିଆ ଢ଼ଙ୍ଗ ରହିଛି !'

'ଆରେ, ସେଇଟା ଆଉ କୁଆଡ଼େ ଯିବ ? ତାହା ତ ପୂର୍ବ ପୁରୁଷଙ୍କ ଦାନ !' ଅପମାନିତ ନୁହଁ ସମ୍ମାନିତ ହୋଇଥିବାର ଭାବ କିଙ୍ଗୀ ପ୍ରକାଶ କଲା।

'ଆହା, ସେମିତି କୁହନା। ତୁମ ବାପାତ କାହିଁରେ ହାରିବାବାଲା ନଥିଲେ। ତୁମେ ତାଙ୍କୁ ମଧ ବଳିଗଲ। ଆଠବର୍ଷ ବୟସରେ ସୁନାଚୋରି କରିଥିଲ।'

'ଆରେ ! କଣ କହୁଛ ?'

'ଯାହା କହିବା କଥା ତାହା କହିଲି '

ବସନ୍ତଠାରୁ ଆସିଲା ମାତ୍ରେ କିଙ୍ଗୀର ଇଚ୍ଛା ହେଲା ଯେ ପହଞ୍ଚିଲାମାତ୍ରେ ମା'କୁ ପଚାରିବ। କିନ୍ତୁ ଘର ପାଖେଇ ଆସିଲାରୁ ସେ ନିଜ ବିଚାର ବଦଳାଇ ନେଲା। କୌଣସି ସୁଯୋଗ ଆସିଲେ ହିଁ ମା'କୁ ପଚାରିବ ଭାବି ସେ ବିଷୟରେ ଡ଼ଁ ଚୁଁ

କିଛି କହିଲା ନାହିଁ। କିନ୍ତୁ ସେଦିନର ଅନୁଭୂତି କିଟ୍ଟୀର ଜୀବନରେ କେତୋଟି ଛୋଟ ଛୋଟ ପରିବର୍ତ୍ତନ ଆଣିଦେଲା। ହାତ ପାଆନ୍ତାରେ ହଜାରେ ଟଙ୍କା ଥିବାର ଜାଣି ସେ ଟିକିଏ ନିଶ୍ଚିନ୍ତ ହେଲା। ତହସିଲଦାରଙ୍କ ଉପଦେଶ ଅନୁସାରେ କାଇଦାକାନୁନ୍‌ର ବହି ଓଲଟପାଲଟ କରି ଦେଖିଲା। ତାହାଦ୍ୱାରା ଆଗରୁ ବୁଝିପାରିନଥିବା କେତେକ କଥା ଏବେ ତାର ବୋଧଗମ୍ୟ ହେଲା। ଚାଲିଚଳଣରେ ଟିକିଏ ଗମ୍ଭୀରତା ଆସିଲା। ଅଫିସରେ ଆତ୍ମବିଶ୍ୱାସ ନେଇ କାମ କରିବାକୁ ଲାଗିଲା। ଆଉ ସଭିଙ୍କୁ ତୁଷ୍ଟ କରିବାର ପ୍ରୟାସ କଲା ନାହିଁ। ଆତ୍ମସମ୍ମାନ ବଢ଼ିଲା। ଏବେ ସଭିଙ୍କ କଥା ଜାଣିବାର ଚିନ୍ତା ଛାଡ଼ିଦେଲା। ହାତଖୋଲା ଖର୍ଚ୍ଚ କଲା। ଦେହଟିକିଏ ଲାଗିଆସିଲା। କାମରେ ସ୍ୱାଚ୍ଛନ୍ଦ୍ୟ ଆସିଲା।

# 10. ଘର ଉଜୁଡ଼ା ଜୀବନ

ବିନ୍ଦଗୋଠ ରାଘସ୍ପା ସବୁଦିନ 'ରାଘସ୍ପ ଭରାରୀ' ନାଁରେ ପରିଚିତ। ଏଇ ଉପନାମ ନେଇ ତାର ବଡ଼ ଅଭିମାନ। ତାର ଯଶ ବହୁଭାବରେ ପ୍ରଚାରିତ ହୋଇ ଯାଇଥିଲା। ଯେତେବେଳେ ସେ ଦଶବାର ବର୍ଷର ପିଲା ଥିଲା ଓ ଗାନ୍ଧୀଜୀ ମଧ୍ୟ ସାନଥିଲେ ସେତେବେଳକୁ ସେ ସତ୍ୟାଗ୍ରହ ମନ୍ତ୍ର ଜାଣିଥିଲା। ନିଜର ଦି'ଚାରିଜଣ ବନ୍ଧୁଙ୍କୁ ନେଇ ଏକ 'ବେକେରୀ' ଆଗରେ ଘଣ୍ଟାଏଯାଏ 'ରୁଟି ମିଳୁ' ସ୍ଲୋଗାନ ଚଳାଇଥିଲା। ସେ ସ୍ଲୋଗାନରେ ବିବ୍ରତ ହୋଇ ବେକେରୀ ବାଲା ଜୁହାର ହୋଇ ପାଉଁରୁଟିଟିଏ ଦେଇ ପୁଣି ନ ଆସିବା ପାଇଁ ପ୍ରାର୍ଥନା କରିଥିଲା। ବାରବର୍ଷ ବୟସରେ ସେ ବାପାଙ୍କ ପକେଟରୁ ପାଞ୍ଚଟଙ୍କା ଚୋରିକରି ଜୀବନର ଅନ୍ୟଏକ ପାହାଚ୍କୁ ଚଢ଼ିଲା। ଚାଳିଶବର୍ଷ ବୟସ ହେଲାଯାଏ ଗଙ୍ଗୱାର ସବୁ କାମଧନ୍ଦାରେ ସେ ଥିଲା ଆଗୁଆ। କେବେ ଆଉଟ ହେଉନଥିବା ବ୍ୟାଟସ୍‌ମ୍ୟାନ୍ ପେନ୍‌ସନ୍ ନେଲାପରି ଏଇ ଦଶବାର ବର୍ଷ ହେଲା ସେ ନିଜର ଆସନ ଅନ୍ୟକୁ ସଂପି ଦେଇଛି। ତଥାପି ଗତ ଚାରିବର୍ଷ ତଳେ ମଧ୍ୟ ଟୋକାଏ ପ୍ରତ୍ୟେକ କାମରେ ତାର ପରାମର୍ଶ ଲୋଡୁଥିଲେ।

ରାଘସ୍ପାର ଭାଗ୍ୟ ଭଲ। କୌଣସି ବିଷୟରେ ତାର ଊଣା ନାହିଁ। ବିନ୍ଦଗୋଠର ଆଠବର୍ଷ ଜୀବନ ଭିତରେ ସେ ଥିଲା ନିଜ ଗାଁରେ ଆଗୁଆ। ଡରରେ ଚାଷୀମାନେ କୌଣସି ଚାନ୍ଦା ତାକୁ ମାଗୁ ନଥିଲେ। ତା ବିଷୟରେ ଏକଥା ପ୍ରସିଦ୍ଧ ଥିଲା ଯେ ଚାନ୍ଦା ମାଗିଲେ ଭାଇ ଭାଇ ମଧ୍ୟରେ କଳିଲଗାଇଦେବାଟା ତାର ବାଁ ହାତର ଖେଳ। ଚାଷ କଲାବେଳେ ବଡ଼ବଡ଼ ଚାଷୀଙ୍କୁ ଲଜ୍ଜା ଦେଲା ଭଳି ବଳଦ ସେ ବାନ୍ଧୁଥିଲା। କମେଇ ଥିଲା ଅମାପ। କିଛିଦିନ ମହୁମାଛି ପାଳିଥିଲା। କେତେଦିନ କୁକୁଡ଼ା ପାଳିଥିଲା। ସେ ଋଣ ମାଗିଲେ ସାରାଗାଁରେ ନାହିଁ କରିଦେବାର ହିମ୍ମତ କାହାରି ନଥିଲା। ସଜଡ଼ା ଘରେ ଯଦି ନିଆଁ ଲାଗିଯାଏ ତେବେ ଅଧଘଣ୍ଟା ଆଗରୁ ଅନ୍ତତଃ ରାଘସ୍ପା ଜାଣିଥିବ। ଗାଁରେ କୌଣସି କଳି ଲଗାଇଦେଇ ଭଲେଇ ହୋଇ ଲୋକଙ୍କୁ ଯଦି କଚେରୀରେ ପହଞ୍ଚାଇବାକୁ ସେ ବାହାରେ ତେବେ ପାଞ୍ଚଛଅ ଟଙ୍କା ନକମେଇ ଘରକୁ ଫେରେ ନାହିଁ। ମାତ୍ର ଏ ସବୁଥିରେ ଭାଗ ନେଉଥିଲେ ସୁଦ୍ଧା ସେ ଗୋଠଖଣ୍ଡିଆ ମାଙ୍କଡ଼ ପରି ନିର୍ଲିପ୍ତ।

ସେ ଯେବେଠୁ ଧାରୱାଡ଼ ଆସିଲାଣି ବିନ୍ଦଗୋଠ ସେବେଠାରୁ ସୁଖ ଶାନ୍ତିରେ

ଅଛି। ଧାରୱାଡ଼ ଆସି ରାଘଭା ଏକ ନୂଆ ଧନ୍ଦା ଆରମ୍ଭ କଲା। ତାହା ହେଲା ବଡ଼ ବଡ଼ ଲୋକଙ୍କ ସହିତ ବନ୍ଧୁତା। ଘୋଡ଼ା ପାଳିଲା ଯଦି ବଢ଼ିଆ ଘୋଡ଼ା, ଚାଷକଲା ଯଦି ସେରନ୍ତା ଚାଷ, ପଶୁ ପାଳିଲା ଯଦି ପ୍ରଦର୍ଶନୀରେ ରଖିବା ଭଳି। ଏସବୁ କାମରେ ଯଶସ୍ୱୀ ରାଘଭା ନୂଆଧନ୍ଦାରେ ବର୍ଷ ଗୋଟିକରେ ଅପୂର୍ବ ସଫଳତା ଲାଭ କଲା।

ବାର ଚଉଦ ବର୍ଷ ହେଲାଣି ତା ସହ ମହବୁବ୍‌ଜାନର ସଂପର୍କ। ପ୍ରଥମର ଚିହ୍ନାଜଣା ଅତିସହଜ ପ୍ରେମରେ ପରିଣତ ହୋଇଥିଲା। ପ୍ରଥମ ତିନିଚାରିବର୍ଷ ଏକଥା ଗୋପନ ରହିଲା। ପରେ ରାଷ୍ଟ୍ର ହୋଇଗଲା। ଥରେ ବିନ୍ଦଗୋଠରେ ଘରୁ କିଛି ସୁନା ଗାୟେବ ହୋଇଗଲା। ଚୋରି ହୋଇଯାଇଛି କହି ରାଘଭା ଖୋଜାଖୋଜି ଆରମ୍ଭକଲା। ଗାଁରେ ପାଖଗଳିରେ ବୁଢ଼ାଟିଏ ନିଜ ପୁଅମାନଙ୍କ କଥା ନ ମାନି ଚମ୍ପକ୍କା ପାଖକୁ ସିଧା ଆସି କହିଲା, 'ଝିଅ, ତୋ'ରି ହିତ ପାଇଁ କଥାଟିଏ କହୁଛି। ମାଲିକ କଚେରୀ କାମରେ ବାରମ୍ବାର ହୁବ୍ଳୀ ଯିବା ଆସିବା କରୁଛନ୍ତି। ସେଠାରେ ଖରାପ ବାଟରେ ଯାଇପାରନ୍ତି। ସୁନା ଆଉ କୁଆଡ଼େ ଯାଇ ନାହିଁ, ଗାଏବ କରିବା ଲୋକ ସେଇ ଖୋଜିବା ଲୋକ ମଧ୍ୟ ସେଇ। ତୁ ଟିକିଏ ହୁସିଆର ହୋଇ ଘର ଚଳା।'

ପରବର୍ତ୍ତୀ ତିନିଚାରିବର୍ଷ ପର୍ଯ୍ୟନ୍ତ ଚମ୍ପାର ସାବଧାନୀ କାମ ହେଲା ନାହିଁ। ଅସମ୍ଭବ କଳିଗୋଳରେ ଘର ପୂରିଗଲା। ଥରେ ପିଲାଙ୍କୁ ନେଇ ସେ ଚାରିମାସ ଭାଇଘରେ ରହିଲା। ବୁଝେଇସୁଝାଇ ଭାଇ ପୁଣି ତାକୁ ଘରକୁ ପଠାଇ ଦେଲା। ରାଘଭାକୁ ବୁଝାଇବାର ସାହସ ବିନ୍ଦଗୋଠରେ କାହାରି ନଥିଲା। ଚମ୍ପା ଥରେ ସବୁ ଅଳଙ୍କାରକୁ ଟ୍ରଙ୍କରେ ବନ୍ଦକରି ଦେଇ ସ୍ଥିର କଲା ଯେ ଜୀବନ ଚାଲିଗଲେ ମଧ୍ୟ ଚାବି ଦେବନାହିଁ। ଟ୍ରଙ୍କ ସାଙ୍ଗରେ ଧରି ପୂଜାଘରେ ଯାଇ ବସିଲା। ସ୍ୱାମୀର ଚଟକଣିଟିଏ ପଡ଼ିବାମାତ୍ରେ ହିଁ ସବୁ ଦୃଢ଼ତା ହାୱାରେ ଉଡ଼ିଗଲା। ସେ ସ୍ୱାମୀଙ୍କ ଗୋଡ଼ତଳେ ପଡ଼ିଲା, ଅନଶନ କଲା, ଅଳିଅଳଝିଅକୁ ପାଦତଳେ ଗଡ଼େଇ ଦେଲା। ଏସବୁଥିରେ ରାଘଭାର ଗୋଟିଏ ଜବାବ : ମୁଁ କମାଉଛି, ମୁଁ ଖର୍ଚ୍ଚ କରୁଛି। ଯେଉଁଦିନ ତୁମମାନଙ୍କ ପେଟ ପିଠି ପାଇଁ ଅଭାବ ପଡ଼ିବ ସେଇଦିନ ବିନ୍ଦଗୋଠରେ ଚଉପାଢ଼ୀ ଆଗରେ ଠିଆ ହୋଇ ଆପଣାର ନାକ କଟାଇଦେବି। ପୁରୁଷ ଲୋକଙ୍କ କାମରେ ତୁ କାହିଁକି ମୁଣ୍ଡ ପୂରାଉଛୁ? ସେଇପଣ ଆଜିଯାଏଁ ରାଘଭା ରଖି ଆସିଛି। ବଦ୍‌ଖର୍ଚ୍ଚ କରିସୁଦ୍ଧା ସେ ସର୍ବ ସ୍ୱାନ୍ତ ହୋଇ ଯାଇନାହିଁ। 'ମୁଁ ଯେଉଁଠି ଦି'ପାଦ ପକେଇବି ସେଇଠି ଦି'ପଇସା ପକେଟରେ ପକେଇବି'—ତାର ଏ ଉକ୍ତି ଠିକ୍ ବୋଲି ପ୍ରମାଣିତ ହୋଇଛି। ଖାଇବା ବିଷୟରେ ସେ କେଉଁଥିରେ ଉଣା ରଖି ନାହିଁ। ଯଦି କେବେ କେଉଁଠି ପଇସା ହରାଇଛି ତେବେ ତାସ୍‌ଖେଳି ହେଉ, କିମ୍ବା କୋର୍ଟ କଚେରିରେ ମଧ୍ୟସ୍ଥତା କରି ହେଉ, ସେ ପଇସା ଅର୍ଜନ କରିହିଁ ଆଣିଛି।

ଏସବୁ ସତ୍ତ୍ୱେ ଚମ୍ପକ୍କା ଏଇ ସିଦ୍ଧାନ୍ତରେ ପହଞ୍ଚିଲା ଯେ ତା ସ୍ୱାମୀପରି ଲୋକ ଏ ସଂସାରରେ ଆଉ କେହି ନାହିଁ। ସେ ନୀରବ ରହିଲା। ଥରେ ପାଞ୍ଚଜଣଙ୍କ

ଆଗରେ ସ୍ୱାମୀ ବିଷୟରେ ଯେଉଁ ଅଭିଯୋଗ କରିଥିଲା, ତହିଁରେ ତା'ରି ମର୍ଯ୍ୟାଦାରେ ଆଞ୍ଚ ଆସିଲା। ସେଥିପାଇଁ ସେ ଥରେ ଘରକୁ ପଶିଲା ପରେ ବର୍ଷକଯାଏଁ ପଦାକୁ ପାଦ କାଢ଼ିଲା ନାହିଁ।

ବର୍ଷେ ଦିବର୍ଷପରେ ତାର ଭାଇର ବଦଳି ହୁବ୍ଳୀକୁ ହେଲା। ତହୁଁ ଯେଉଁ ପତିଠାରେ ସେ ହାରିଥିଲା, ସେଇ ପତିକୁ ଜିଣିଥିବା ସୁନ୍ଦରୀକୁ ଦେଖିବାର ଇଚ୍ଛା ତାର ବଳବତୀ ହେଲା। ସେ ହୁବ୍ଳୀରେ ଭାଇ ଘରକୁ ଆସି ମହବୁବଜାନ୍‌ର ଖବର ଅନ୍ତର ବୁଝିଲା। ଦିନେ ଝିଅକୁ ଧରି ମହବୁବଜାନ ଘରେ ପହଞ୍ଚି ସେଠାରେ ଝିଅକୁ ତା ପାଦତଳେ ଗଡ଼ାଇଦେଇ, କାନିପାତି, କାନ୍ଦିକାଟି ନିଜର ଦୁଃଖସବୁ କହି ଲେଉଟି ଆସିଲା।

ରାଘପ୍ପାର ସ୍ତ୍ରୀ ଓ ପିଲା ଅଛନ୍ତି ଏକଥା ମହବୁବ କେବେ ଭାବିନଥିଲା। ଏଇ ନୂଆଖବର ଜାଣି ତାର ମନ ତରଳିଗଲା।

ପର ସପ୍ତାହରେ ରାଘପ୍ପା ଆସିବାରୁ ତାକୁ 'ନିଜଘରକୁ ଯାଅ' କହି ଫେରାଇ ଦେଲା। ଏହାପରେ ଦେଢ଼ବର୍ଷ ପର୍ଯ୍ୟନ୍ତ ରାଘପ୍ପା ମହବୁବଜାନର ଦର୍ଶନ ପାଇଲା ନାହିଁ।

ପରେ ଚମ୍ପକ୍କା ମନରେ ନୂଆଚିନ୍ତା ଦେଖା ଦେଲା। ତାର ଭୟ ହେଲା ରାଘପ୍ପା ଯଦି ଇଆଡ଼େ ସିଆଡ଼େ ହୋଇ କେଉଁ ଖରାପ ଜାଗାରେ ପଶେ ତେବେ ତାର ସ୍ୱାସ୍ଥ୍ୟ ଖରାପ ହୋଇଯିବ। ପରିଶେଷରେ ଦିନେ ଚମ୍ପକ୍କା ସ୍ୱୟଂ ମହବୁବଜାନ ଘରକୁ ଯାଇ ତା'ଠାରେ ରାଘପ୍ପାର ଭାର ସଂପିଦେଲା। ସେଇ ଦିନରୁ ମହବୁବଜାନ ଏଘରେ କୁଳଦେବୀପରି ମାନନୀୟ ହୋଇ ଉଠିଲା। ସେଇ ଦିନରୁ "ଯୁଗାଦି"* ଏବଂ ଦୀପାବଳିରେ ଚମ୍ପକ୍କା ମହବୁବଜାନକୁ ନିମନ୍ତ୍ରଣ କରି ତାହାପାଇଁ ବ୍ଲାଉଜକନା ଦେଇ ପଠାଏ। ମହବୁବଜାନ ମଧ୍ୟ ଋତୁ ଅନୁସାରେ ପିଜୁଳି ପୁଞ୍ଜାଏ, ଆମ୍ବ ଝୁଡ଼ିଏ ଚମ୍ପକ୍କା ଘରକୁ ପଠାଇ ଦିଏ। ଏହାଫଳରେ ରାଘପ୍ପାର ଜୀବନ ଆଗଠାରୁ ସୁଖମୟ ହେଲା। ଏହା ପୂର୍ବରୁ ଚମ୍ପକ୍କାର ଆଉଗୋଟିଏ ପିଲା ହୋଇଥିଲା। ତାରି ପ୍ରସବ ସମୟରୁ ଆରମ୍ଭ ହୋଇଥିବା ହୃଦୟଶୂଳ ଓ ରକ୍ତକ୍ଷୟ ରୋଗରେ ବର୍ଷରେ ଅନ୍ତତଃ ତିନିଚାରିମାସ ସେ ଶଯ୍ୟାଶାୟୀ ହୋଇପଡ଼େ। ଡ଼ାକ୍ତରମାନେ ପରାମର୍ଶ ଦେଇଥିଲେ, ସେ ଯେପରି ଆଉ କେବେ ଗର୍ଭଧାରଣ ନକରେ।

ଚମ୍ପକ୍କାର ବେମାରୀ ଆରମ୍ଭ ହେବା ସମୟରେ ତାକୁ ଦେଖିବା ପାଇଁ ହୁବ୍ଳୀର ହସପିଟାଲକୁ ମହବୁବଜାନ ଦିନକୁ ଦି'ଥର କରି ଆସୁଥିଲେ। ପିଲାଙ୍କ ପଢ଼ାପଢ଼ି ବାହାନାରେ ରାଘପ୍ପା ଧାରୱାଡ଼ରେ ରହିବାରୁ ମହବୁବଜାନର ଯିବାଆସିବା ମଧ୍ୟ ବଢ଼ିଗଲା। ସେ ଘରର ଜଣେ ହୋଇଗଲା। ପିଲାଏ ତାକୁ ବହୁତ ଆଦର କରନ୍ତି। କାହିଁକିନା ସେ ଆସିବାବେଳେ ପେଡ଼ାଟିଏ, ନିମ୍‌କି ଦି'ଖଣ୍ଡ ବା ଫଳ ଦି'ଟା ଆଣିକରି ଆସେ। ଏବେ ରତ୍ନା ଚଉଦବର୍ଷର ଓ ଶାନ୍ତା ବାରବର୍ଷର ହେଲାଣି। ଚାଲିଚଳଣ

---

* ନୂଆବର୍ଷ, ବୈଶାଖ ପ୍ରଥମ ଦିନ।

ପାଇଁ ଧାରୱାଡ଼ରେ ନିଜ ସାଇରେ ସେମାନେ ବଡ଼ ଆଦରଣୀୟ । କ୍ରମେ ରତ୍ନା ବିବାହଯୋଗ୍ୟା ହୋଇଉଠିବାରୁ ଚମ୍ପକ୍କାର ଚିନ୍ତା ବଢ଼ିବାକୁ ଲାଗିଲା । ଗଙ୍ଗୱା ଓ କିଟ୍ଟୀକଥା ସେ ଜାଣିଥିଲା, ହେଲେ ସେମାନଙ୍କ ବିଷୟରେ ସେ କେବେ କଥା ହୋଇ ନାହିଁ । କିଟ୍ଟୀ ଯେତେବେଳେ ବଡ଼ ହୋଇ ତହସିଲଦାରଙ୍କ ଦପ୍ତରରେ ଚାକିରୀ କଲା ସେତେବେଳେ ରାଘପ୍ପା ନିଜ ସ୍ତ୍ରୀ ଆଗରେ ତା' କଥା ପକାଇଲା । ନିଜ ଝିଅକୁ କିଟ୍ଟୀ ହାତରେ ଦେବାର ଆଗ୍ରହ ରାଘପ୍ପାର ବିଶେଷ ନଥିଲା, ମାତ୍ର ଚମ୍ପକ୍କା କିଟ୍ଟୀକୁ ଝିଅ ଦେଇ ପୁଣି ପୁରୁଣା ସମ୍ପର୍କ ଯୋଡ଼ିବାକୁ ଚାହୁଁଥିଲା । ତାର ନିଜର ବାହାଘରରେ କିଟ୍ଟୀର ବାପା ସ୍ୱାମୀରାଓ ଯେଉଁ ଉପକାର କରିଥିଲେ ସେ କଥାକୁ ସେ ଆଜିଯାଏଁ ଭୁଲି ପାରିନାହିଁ । ତା'ର ଆନ୍ତରିକ ଇଚ୍ଛାଥିଲା ଝିଅଦେଇ ସେ ଉପକାରକୁ ପରିଶୋଧ କରିବ । ତା'ରି ଆଗ୍ରହ ହେତୁ ରାଘପ୍ପା ପ୍ରଥମେ ଦପ୍ତରରେ କିଟ୍ଟୀସହ ଦେଖା କଲା, ପରେ ସେଦିନ ଗଙ୍ଗୱା ଘରକୁ ଯାଇ ବିବାହ ପ୍ରସ୍ତାବ ପକାଇଲା । ଗଙ୍ଗୱାର ଅସମ୍ମତି ରାଘପ୍ପାର ଖେଳୱାଡ଼ ମନକୁ ଏ ବିଷୟରେ ପଶାରଚାଲ୍ ଚଳାଇବା ପାଇଁ ଆହ୍ୱାନ କଲା 'ତୋ'ରି ଆଖିଆଗରେ ତୋ'ରି ପୁଅକୁ ଅଗ୍ନିରେ ପୂରାଇବି'– ମନେ ମନେ ଏଇଆ ଭାବି ସେଇ ଅନୁସାରେ ସେ ଆପଣାର ଯୋଜନା ଆରମ୍ଭ କଲା । ତା'ଛଡ଼ା ଆଉରି କଥାଟିଏ ଥିଲା । ନିଜ ବିବାହରେ ରାଘପ୍ପାର ଅସୁଖୀ ହେବାର କୌଣସି କାରଣ ନଥିଲା । ତଥାପି ସ୍ୱାମୀରାଓର ଧମକ ଆଗରେ ନଇଁ ପଡ଼ିଥିବା ହେତୁ ବନ୍ଧୁ ବିଦ୍ୱେଷ ଓ ଗ୍ଲାନି ଏବେବି ତା ମନରେ ସଜାଗ ଥିଲା । ସେ ଭାବିଲା, ଯଦି ନିଜର ଝିଅକୁ କିଟ୍ଟୀ ସହ ବିବାହ କରାଇ ଦିଏ ତେବେ ଅଳ୍ପ ବହୁତେ ପ୍ରତିଶୋଧ ନେଇ ପାରିବ ।

ସୌଭାଗ୍ୟକ୍ରମେ ରତ୍ନା ଭାରି ସୁନ୍ଦରୀ । ରାଘପ୍ପା ଏବିଷୟରେ ନିଶ୍ଚିତ ଥାଏ ଯେ ଏଇଥିରେ ଅଧାକାମ ହୋଇଯିବ । ତେଣୁ ସେ ବାକି ଯୋଜନାରେ ଲାଗିପଡ଼ିଲା । ବିବାହ ଯଦି ସ୍ଥିର ହୋଇଯାଏ ତେବେ ଖର୍ଚ୍ଚ ପାଇଁ ଅନ୍ତତଃ ତିନିଚାରିହଜାର ଟଙ୍କା ଦରକାର ।

ଧାରୱାଡ଼ରେ ବଡ଼ ବଡ଼ ଲୋକଙ୍କ ସହ ସଦ୍‌ଭାବ ଥିବାରୁ ବିବାହକୁ ସେମାନେ ଆସିବେ; ଫଳରେ ବିବାହ ଜାକଜମକରେ ହେବା ଦରକାର । ଘରର ଖର୍ଚ୍ଚ ପାଇଁ ରାଘପ୍ପାର ଚିନ୍ତା ନଥିଲା, କିନ୍ତୁ ଏକାବେଳକେ ଏତେ ଟଙ୍କା ଆବଶ୍ୟକ ପଡ଼ିଲେ ଜମିବାଡ଼ି ବିକିବାଛଡ଼ା ତାର ଆଉ ଚାରା ନାହିଁ ।

ଏଇ ଚିନ୍ତାରେ ରାଘପ୍ପା ବୁଡ଼ିଥିଲାବେଳେ ସ୍ତ୍ରୀସୁଲଭ ଦୁର୍ବଳତା ହେତୁ ଚମ୍ପକ୍କା ଭିନ୍ନ ବିଚାରରେ ବୁଡ଼ି ଯାଇଥାଏ । ମହବୁବଜାନ ମୋର ଭଉଣୀ, ମୋ ଘରର ଦେବୀ ପରି । ଏହା ସତ ଯେ ଆଜିପର୍ଯ୍ୟନ୍ତ ତାକୁ ଆଠଦଶହଜାର ଟଙ୍କା ଏଘରୁ ମିଳିସାରିଲାଣି । ରତ୍ନା କଣ ତା' ଝିଅ ନୁହେଁ? ଝିଅ ପାଇଁ ହଜାରେ ଦି'ହଜାର ଟଙ୍କାଦେବା କଣ ତାର ଉଚିତ ନୁହେଁ? ଏହା ଭାବି ଚମ୍ପକ୍କା ମହବୁବଜାନକୁ ସ୍ନେହରେ ଟେକାଟେକି କରୁଥାଏ ।

ନିଜକୁ ସମ୍ଭାଳିନପାରି ଦିନେ ସେ ଏକଥା ରାଘୱାକୁ କହିପକାଇଲା । ଶୁଣିଲାମାତ୍ରେ ରାଘୱା ରାଗରେ ଖୁନ୍‌ହୋଇ କହିଲା, 'ଫେର ମୋ ଆଗରେ ଏକଥା ଉଠେଇବୁ ନାହିଁ! ଦରକାର ପଡ଼ିଲେ ଦି' ଖଣ୍ଡ ଜମି ବିକିଦେବି, ନହେଲେ ପୁଅଟିଏ ପରି ରତ୍ନାଘରେ ରହିବ ।' ସେଇ ଦିନପରି ଚମ୍ପକାର ତା ଆଗରେ କିଛି କହିବାର ସାହସ ହୁଏ ନାହିଁ । ଏଇ ଘଟଣାରୁ ଫାଇଦା ଉଠେଇ ଚମ୍ପକା ମହବୁବକୁ ପୁଣିଥରେ କହିଲା । 'ଦେଖ ଭଉଣୀ, ତୋର 'ଯଜମାନ' ରତ୍ନାର ବାହାଘର ପାଇଁ ଚାଷଜମି ବିକିବା କଥା ଭାବୁଛନ୍ତି ।'

ଚତୁରା ମହବୁବ ଏ କଥାର ଅର୍ଥ ଯେ ବୁଝିପାରିଲା ନାହିଁ ତା'ନୁହେଁ, ମାତ୍ର ଏପରି କଥାରେ ସେ ଚୁପ୍ ରହିଯାଏ । ପ୍ରଥମ କଥା ହେଲା, ଏବେ ବାହାଘର ସ୍ଥିର ହୋଇନାହିଁ । ଦ୍ୱିତୀୟକଥା, ସେ ନିଜ ଭଣଜା ପାଇଁ କିରାଣୀ ଦପ୍ତରଟିଏ ଖୋଲି ଦେଇଛି, ଆଉ ସେଇଥିରେ ନିଜର ସବୁ ଟଙ୍କା ଲଗାଇ ଦେଇଛି ।

# 11. ଦେଶାଇବାବୁଙ୍କ ଚିନ୍ତା

ଚିନ୍ତିତ ହୋଇ ଦେଶାଇବାବୁ ଲକ୍ଷ୍ମୀ ହାଇସ୍କୁଲରେ ପହଞ୍ଚିଲେ। ସେ ପ୍ରଧାନଶିକ୍ଷକଙ୍କ କୋଠରୀଆଡ଼େ ଗଲାବେଳେ କୋଳାହଳମୁଖର ଶ୍ରେଣୀଗୁଡ଼ିକ ନୀରବ ରହି କୌତୂହଳରେ ତାଙ୍କୁ ଚାହୁଁଥାନ୍ତି। ଗୋଟିଏ ଶ୍ରେଣୀରେ ଜଣେ ବ୍ୟବହାର-ଶୂନ୍ୟ ଶିକ୍ଷକ ସଯୋରେ ପାଟିକରିଉଠିଲେ, 'ଡ଼ୋଣ୍ଟ ଲୁକ୍ ହିୟାର ଏଣ୍ଡ ଦେୟାର, ବି ଏଟେଣ୍ଟିଭ! (ଏଆଡ଼େ ସିଆଡ଼େ ନ ଚାହିଁ ମନଯୋଗୀ ହୁଅ!)। ଦେଶାଇଜୀଙ୍କର ଚିନ୍ତା ଆଉରି ବଢ଼ିଗଲା। ଯାହା ହେଉ ପଛକେ, କଳି ହେଉ, ଚୋରି ହେଉ, ଖୁନ୍‌ହେଉ, କିନ୍ତୁ ସେଇଗୋଟିକ ନହେଉ। ଭଗବାନଙ୍କଠାରେ ଏଇ ଗୁହାରିକରି ଦେଶାଇଜୀ ପ୍ରଧାନଶିକ୍ଷକଙ୍କ ଅଫିସରେ ପଶିଲେ। ସବୁଥର ପରି ପ୍ରଧାନଶିକ୍ଷକ ଉଚ୍ଚ କଣ୍ଠରେ ତାଙ୍କୁ ସହାସ୍ୟ ସ୍ୱାଗତ କଲେନାହିଁ। କେବଳ 'ଆସନ୍ତୁ' କହି ଚୌକି ଆଡ଼କୁ ଆଙ୍ଗୁଠି ଦେଖାଇ ଠାରିଦେଲେ।

ଘଟଣାଟି ଏଇପରି। ବସନ୍ତରାଓ ସଂପର୍କରେ ଏପର୍ଯ୍ୟନ୍ତ ଅନେକ ଅଭିଯୋଗ ଥିଲା। ଶ୍ରେଣୀରେ ପାଟିକରିବା, ଶିକ୍ଷକଙ୍କୁ ଜବାବ ଦେବା, ମନଇଛା ସ୍କୁଲ ଆସିବା ଆଦି ଗୁଣ ବସନ୍ତରାଓଠାରେ ପ୍ରଥମଶ୍ରେଣୀରୁ ହିଁ ଥିଲା। ମାତ୍ର ସ୍କୁଲ ତିଆରି ହେଲା ଦିନରୁ ଦେଶାଇଜୀ ଦାନ ଦେଇ ଆସୁଥିବା ଦାତାମାନଙ୍କ ମଧ୍ୟରୁ ଅନ୍ୟତମ ଥିବାରୁ ଓ ପରିଚାଳନା ସମିତିର ସଦସ୍ୟ ଥିବାରୁ ବସନ୍ତ ବିରୁଦ୍ଧରେ ଅଭିଯୋଗକରିବା କଥା ଶିକ୍ଷକମାନେ ଭାବୁ ନଥିଲେ। ମ୍ୟାଟ୍ରିକ୍ ପରୀକ୍ଷାରେ ପ୍ରଥମଥର ଫେଲ ହେଲା ପରେ ବସନ୍ତରାଓ ଏପରି ବ୍ୟବହାର କରିବାକୁ ଲାଗିଲା ଯେପରି ବାପ ପରେ ସେହିଁ ସ୍କୁଲର ଆଜୀବନ ସଦସ୍ୟ ପାଲଟିଯିବ। ନିଜର ଚାରିଜଣ ଲଫଙ୍ଗା ସାଙ୍ଗଙ୍କୁ ଧରି ଛାତ୍ରୀମାନେ ଘରକୁ ଯିବା ସମୟରେ ତାଙ୍କ ପଛେପଛେ ଯାଇ ତାଙ୍କୁ ଚିଡ଼ାଇବା, ସେମାନେ ଘରେ ପହଞ୍ଚିଲା ପର୍ଯ୍ୟନ୍ତ ତାଙ୍କ ପିଛା ଧରିବା–ଏକଥା ଚପରାସୀ ଠାରୁ ପ୍ରଧାନଶିକ୍ଷକଙ୍କ ପର୍ଯ୍ୟନ୍ତ ସଭିଏଁ ଜାଣିଥିଲେ। ଏଯାଏଁ ବସନ୍ତରାଓ ଯାଠୁ ଆଗକୁ ବଢ଼ିନଥିଲା। ଝିଅମାନେ ମଧ୍ୟ ଏ ବ୍ୟବହାରରେ ଅଭ୍ୟସ୍ତ ହୋଇଯାଇଥିବାଫଳରେ ଏ ଦିଗରେ ଧ୍ୟାନ ନ ଦେଇ ଯେଝା ଘରକୁ ଚାଲି ଯାଉଥିଲେ। ଗତବର୍ଷ ବସନ୍ତରାଓ ତୃତୀୟ ଥର ପାଇଁ ମ୍ୟାଟ୍ରିକ ପରୀକ୍ଷାରେ ବସିଲା। ସେ ବର୍ଷ ତ୍ରେଧା ନିଦଧେ ପଦଂ' ବାଲାତ୍ରିବିକ୍ରମରୂପ ଧାରଣ କରି ବସନ୍ତରାଓ ତୃତୀୟ ମାର୍ଗକୁ ନିଜର କଲା।

ଇନ୍ଦୁମତୀ ସ୍ୱୟଂବରକୁ ଆସିଥିବା ରାଜାମାନଙ୍କୁ ଲଜ୍ଜିତ କରିଥିବା ପନ୍ଥା ସେ ଧରିଲା। ଝିଅମାନଙ୍କ କୋମଳ ଗାଲକୁ ଚିକ୍କଣ ଗୁଆର ଲକ୍ଷ୍ୟ ସ୍ଥିର କଲା। କେବେ କେବେ ଚମ୍ପାଫୁଲ ପାଖୁଡ଼ାରେ ନିଜ ନାଁ ଲେଖି ବା କୌଣସି ଝିଅର ନାଁ ଲେଖି ପ୍ରତିଦିନ ଅଲଗା ଅଲଗା ଝିଅର ବାଳରେ ଖୋସି ଦେଇ ଆପଣା ପ୍ରେମର ନିରପେକ୍ଷ ଭାବ ପ୍ରକାଶ କରୁଥିଲା। ସ୍କୁଲରେ ଲମ୍ବାବାଳ ରଖି ବେଶୀ ଫେସନ କରୁଥିବା ପୁଅ ଢଂଗର ଝିଅପ୍ରତି ବସନ୍ତ ରାଓର ଟିକିଏ ହେଲେ ଆଗ୍ରହ ନଥିଲା। କିଏ ଜଣେ ଭଲ ଲୋକ ଥରେ ତାକୁ କହିଥିଲା ଯେ ମୁଣ୍ଡରେ ଲୁଣ ଢାଳିଦେଲେ ବାଳ ଉଠିଯାଏ। ତାର ପ୍ରତ୍ୟକ୍ଷ ପ୍ରୟୋଗ କରିବା ପାଇଁ ଦିନେ ସେ ସ୍କୁଲ ପାଚେ଼ରୀ ଉପରେ ଠିଆ ହୋଇ ସେଇ ଝିଅଟିର ମୁଣ୍ଡରେ ଅଧସେରେ ଲୁଣ ଢାଳି ଦେଲା। ଏକଥା ଦେଖି ପ୍ରଧାନଶିକ୍ଷକ ତାକୁ ଡ଼ାକି ଧମକାଇଲେ। ମାତ୍ର ସେ ପ୍ରଧାନଶିକ୍ଷକଙ୍କୁ ମଧ ଭୁଆଁବୁଲାଇବା କଳାରେ ଧୁରନ୍ଧର। ତାଙ୍କଠାରୁ ବହୁତ ଗାଳିଖାଇ ବୋକାଙ୍କ ପରି 'ଏଥରକ ଭୁଲ୍ ହୋଇଗଲା ଅଜ୍ଞା, ମୋତେ ନିଜ ପୁଅ ଭାବି କ୍ଷମାକରିଦିଅନ୍ତୁ' ବୋଲି ଗୁଣୁଗୁଣୁହୋଇ କହି ହାତ ଯୋଡ଼ି ପକାଇଲା। ଏମିତି ଲୋକକୁ କେମିତି ବୁଝାଇ ହେବ? ଏହାହିଁ ଥିଲା ପ୍ରଧାନଶିକ୍ଷକଙ୍କ ଆଗରେ ସବୁଠାରୁ ବଡ଼ ସମସ୍ୟା। ସ୍କୁଲର ବିଦ୍ୟାର୍ଥୀମାନଙ୍କ ମଧରେ ବସନ୍ତରାଓର କାହାଣୀ ପୁରାଣର ପୁଣ୍ୟ କଥା ପରି ପ୍ରଚ଼ାର ହୋଇଯାଇଥିଲା। ସେ ରାତିଦିନ ନିଜର ଯଶକୁ ବୃଦ୍ଧି କରିବାରେ ଲାଗିଥାଏ। ଏକଥା ମଧ ଜଣାଶୁଣା ଯେ ସେ କୌଣସି ଛାତ୍ରର କ୍ଷତିକରିବା ଲୋକନୁହେଁ, ବା କାହାରି ମନରେ ଦୁଃଖ ଦେବା ପିଲା ନୁହେଁ।

ସେଇ ବର୍ଷ ଶେଷଆଡ଼କୁ ପୁନାରୁ ବଦଳିହୋଇ ଆସିଥିବା ସବ୍‌ଜଜଙ୍କ ଝିଅ ସ୍କୁଲରେ ନାଁ ଲେଖାଇଲା। ସେ ଆସିବା ପରେ ନାରୀଜାତି ମଧରେ ସମଭାବରେ ବିଚ଼ରଣ କରୁଥିବା ଅନାସକ୍ତ ଯୋଗେଶ୍ୱର କୃଷ୍ଣ ଉପାଧି ପାଇଥିବା ବସନ୍ତ ପୂରାପୂରି ଯୋଗଭ୍ରଷ୍ଟ ହୋଇ ତାର ପକ୍ଷପାତୀ ପାଲଟି ଗଲା। ସେଇ ମାର୍ଜାରନୟନା ଝିଅପ୍ରତି ବସନ୍ତ ଛେଳିପରି ଆଖିକରି ଚାହିଁବାକୁଲାଗିଲା। ଆଜିଯାଏଁ ଖେଳଛଳରେ କଥା ହେଉଥିବା ବସନ୍ତ ସଙ୍ଗୀ ଅବ୍‌ଦୁଲ ଅଜୀଜର କୋଠରୀକୁ ଯାଇ ନିଜର ହୃଦୟ ଖୋଲିଦେଲା। ତାଠୁଁ ଗଜଲ ଶିଖି ସ୍ୱୟଂ 'ହାୟ! ହାୟ!' କହି ଦୀର୍ଘଶ୍ୱାସ ନେବାକୁ ଲାଗିଲା। ପରିଶେଷରେ ତା'ରି ସହାୟତାରେ ପ୍ରେମପତ୍ର ଲେଖି ଝିଅଟିର କମ୍ପାସ ବାକ୍ସରେ ଲୁଚ଼ାଇ ଦେଲା।

ପରମ ପ୍ରିୟତମାଲୈଲା (କୁମାରୀ ଖୋଟ),

ସବୁ ଠିକ୍। ମୁଁ ମନପ୍ରାଣଦେଇ ତୁମକୁ ଭଲପାଏଁ। ତୁମେ ମଧ ମୋତେ ଭଲପାଅ। ମୁଁ ଆଉ ତୁମେ ସିନେମା ଯିବା। 'ବକ୍ସ'ରେ ବସିବା। ତିନିଟା ବେଳକୁ ବସ୍‌ଷ୍ଟାଣ୍ଡରେ ମୁଁ ତୁମକୁ ଅପେକ୍ଷା କରିବି। ସିନେମା ସାଢ଼େ ତିନିଟା ବେଳେ ଆରମ୍ଭ ହେବ। ତୁମେ ଯଦି ନ ଆସିବ ତେବେ ମୋ ଜୀବନ ନଷ୍ଟହୋଇଯିବ। ଏବେ ଅଧିକ କିଛି ଲେଖି ପାରୁନାହିଁ। ସାକ୍ଷାତରେ ଅନ୍ୟାନ୍ୟ। ସବୁ ଠିକ୍।

ପୋ: ଧାରୱାଡ଼ ତୁମର ପରମପ୍ରିୟ ମଜନୁ
ଜି: ଧାରୱାଡ଼ ବସନ୍ତରାଓ ଗୋପାଳ ଗୌଡ଼ା
ଦେଶାଇ (ବାହାଦୂର)

ଲୈଲା ଏ ଚିଠିକୁ ନିଜ ମା'କୁ ଦେଲା, ମା ସ୍ୱାମୀଙ୍କୁ ଓ ସ୍ୱାମୀ ଏକ ପରିଚୟାତ୍ମକ ପତ୍ରସହ ପ୍ରଧାନଶିକ୍ଷକଙ୍କ ପାଖକୁ ତାହା ପଠାଇ ଦେଲେ। ଏଇପରି ବସନ୍ତରାଓର ପ୍ରେମପତ୍ର ତିନିଦିନଯାଏଁ ଯାତ୍ରା କଲା।

ପାଠକେ, ଏହାକୁ 'ଏକ ପ୍ରେମପତ୍ର' କହିବେ ନାହିଁ। କାରଣ ଏ ଘଟଣା କମ୍‌ରେ ତିନିବର୍ଷତଳେ ଘଟିଥିଲା; ସେ ସମୟର ପ୍ରେମପତ୍ର ଆଜିକାଲି ପ୍ରେମପତ୍ର ପରି ଶସ୍ତା ନଥିଲା।

ପ୍ରଧାନଶିକ୍ଷକଙ୍କ ଆଗରେ ବଡ଼ ସଙ୍ଗୀନ ସମସ୍ୟା ଦେଖାଦେଲା। ସେ ଝିଅର ବାପା ସବ୍‌ଜଜ୍ କାନୁନୀ ଢଙ୍ଗରେ ଏକ କଡ଼ା ନୋଟ୍ ସେ ଚିଠିସହ ପଠାଇ ଥିଲେ।

ପ୍ରଧାନ ଶିକ୍ଷକ ମହୋଦୟ,

ମୁଁ ଯେଉଁ ଚିଠି ପ୍ରେରଣକରୁଛି ତାହା ମୋତେ ମୋ ଝିଅର କମ୍ପାସ ବାକ୍ସରୁ ମିଳିଛି। ମୁଁ ଜାଣିବାକୁ ଚାହେଁ ଏଇ ଗୁଣ୍ଡା ବିରୁଦ୍ଧରେ ଆପଣ କିପ୍ରକାର ପଦକ୍ଷେପ ନେବେ। ଦୟାକରି ପତ୍ରବାହକ ହାତରେ ଦୁଇଟିଯାକ ଚିଠିର ପ୍ରାପ୍ତି ସ୍ୱୀକାର କରିପଠାଇବେ। ଆପଣଙ୍କର ଇତ୍ୟାଦି...ଇତ୍ୟାଦି.....।'

ଚିଠିନେଇ ଆସିଥିବା ସିପାହୀ ପତ୍ର ପ୍ରାପ୍ତିସ୍ୱୀକାର ଚିଠି ଧରି ଫେରିଗଲା।

ଗୋଟିଏ ଦିଗରୁ ପ୍ରଧାନଶିକ୍ଷକ ଖୁସି ହେଲେ। ଏଥର ସବୁ ଅଭିଯୋଗ ଲିଖିତ ରୂପରେ ମିଳିଛି। ସେ ସ୍ଥିରକଲେ ଯେ ସେ ଚିଠିକୁ ଦେଶାଇଜୀଙ୍କ ଆଗରେ ରଖିଦେଇ ତାଙ୍କୁ ହିଁ ପଚାରିବେ ଯେ କ'ଣ କରାଯିବ। ସବୁ ତାଙ୍କରି ଉପରେ ଛାଡ଼ିଦେବେ।

ଚିଠି ଦେଖି ଦେଶାଇଜୀ ଝାଳନାଳ ହୋଇପଡ଼ିଲେ। ତାଙ୍କ ଅବସ୍ଥା ଦେଖି ପ୍ରଧାନଶିକ୍ଷକ ମଧ୍ୟ ଝାଳନାଳ ହୋଇଗଲେ। କେତେକ୍ଷଣ ଯାଏଁ ନୀରବତା ବ୍ୟାପିଗଲା। ସେତେବେଳକୁ କେତେଜଣ ପିଲା ପରିସ୍ରାଯିବା ନାଁରେ ମାଷ୍ଟରଙ୍କୁ କହି ବାହାରିଆସି ପ୍ରଧାନଶିକ୍ଷକଙ୍କ ଅଫିସ ଭିତରକୁ ଉଙ୍କିମାରୁଥାନ୍ତି। ପାଞ୍ଚ ମିନିଟ ମଧ୍ୟରେ ଦେଶାଇଜୀ ସିଦ୍ଧାନ୍ତରେ ପହଞ୍ଚିଗଲେ।

ମାଷ୍ଟର ମହାଶୟ ଚିନ୍ତିତ ହେଲେ। କିଏ ଜାଣେ ଦେଶାଇଜୀ କଣ କହିବେ। ସେ ଟିକିଏ ସଳଖି ବସି କହିଲେ, 'କହନ୍ତୁ।'

'ମୁଁ ମୋ ପୁଅର ନାମ କାଟିଦେବା ପାଇଁ' ଅନୁରୋଧ କରିବି। ଆପଣ ତାର ନାଁ କାଟିଦିଅନ୍ତୁ, ତାହେଲେ ମୁଁ ତାକୁ ତାଗିଦକରିଦେବି ଯେପରି, ସେ ସ୍କୁଲର ଚତୁଃସୀମାରେ ପାଦ ନରଖେ। ତା ସତ୍ତ୍ୱେ ବି ସେ ଯଦି ବାଟକୁ ନଆସେ ତେବେ ଦ୍ୱିତୀୟ କଥା ହେଲା, ଆପଣ ଚାହିଁଲେ ତାକୁ ଚପରାସୀ ଦେଇ ବାହାର କରିଦେଇପାରନ୍ତି। ଜଣକପାଇଁ ସାରା ସ୍କୁଲର ବଦନାମ ହେବା ଉଚିତ ନୁହେଁ। ଗୋଟିଏ ଦୃଷ୍ଟିରୁ ସ୍କୁଲ

ମଧ ମୋର ପିଲା।' ଓଦା ଆଖିକୁ ରୁମାଲରେ ପୋଛି ଦେଶାଇଜୀ ପୁଣି କହିଲେ, 'ମୋର ଏତିକି ପ୍ରାର୍ଥନା, ସ୍କୁଲରୁ ବହିଷ୍କାର କରିଥିବା ଖବର ନୋଟିସବୋର୍ଡ଼ରେ ଲଗାଇବେ ନାହିଁ! ରେକର୍ଡ଼ରେ ମଧ ବହିଷ୍କାର ଶବ୍ଦ ଲେଖିବେ ନାହିଁ। ଦରକାରହେଲେ ସେ ଜଜଙ୍କୁ ଲେଖିଦେବେ ଯେ ଆମେ ବହିଷ୍କାର କରିଦେଇଛୁଁ। ଆପଣ ଯଦି ଚାହାନ୍ତି ମୁଁ କ୍ଷମାପ୍ରାର୍ଥନାକରି ଏକ ଚିଠି ଲେଖିଦେବି, ମାତ୍ର ସ୍କୁଲ ରେକର୍ଡ଼ରେ ଏ ଶବ୍ଦ ବସାଇବେ ନାହିଁ। ମୋର ଏତିକି ଅନୁରୋଧ! ଆପଣ ଇଚ୍ଛା କଲେ ଏହା ପୂରଣ କରିପାରିବେ।

ସକାଳରୁ ସଞ୍ଜଯାଏ ପ୍ରଧାନଶିକ୍ଷକ ପ୍ରୋଗ୍ରେସରିପୋର୍ଟ ପଠାଇନାହାନ୍ତି, ଫିସ୍ ଅଧିକ ନେଉଛନ୍ତି, ଖେଳଫିସନେଉଛନ୍ତି କିନ୍ତୁ ଖେଳିବାକୁ କିଛି ଦେଉନାହାନ୍ତି' ଆଦି କଥା ସାଧାରଣ ଅଭିଭାବକମାନଙ୍କଠାରୁ ଶୁଣି ଆସୁଛନ୍ତି। ଏଇ ସବୁ ଶୁଣିଶୁଣି ବୁଦ୍ଧିଭ୍ରଷ୍ଟ ବିଚ୍ରା ମାଷ୍ଟରଙ୍କ କାନରେ ଦେଶାଇଜୀଙ୍କ କଥା ଅମୃତ ଢାଳିଲା ପରି ମନେ ହେଲା। କୃତଜ୍ଞତାରେ ତାଙ୍କର ପାଟି ମେଲା ହୋଇ ରହିଗଲା। ଦେଶାଇଜୀଙ୍କଠାରୁ ସେ ଏପରି କଥା ଆଶାକରିନଥିଲେ। ମନେହେଲା, ଦେଶାଇଜୀଙ୍କ କଥା ସବୁ ଦିଗରୁ ଠିକ୍। ଜଜସାହେବଙ୍କୁ ଟିକିଏ ମିଛ କହିବାକୁ ପଡ଼ିବ। କିନ୍ତୁ ବନେଇ କହିବା ଫଳରେ କେତେମାତ୍ରାରେ ପାର ପାଇଯାଇହେବ। ସବୁଠାରୁ ବଡ଼ କଥା, ସ୍କୁଲ ରେକର୍ଡ଼ ସଂପର୍କରେ ଦେଶାଇଜୀଙ୍କର ଶ୍ରଦ୍ଧା ଦେଖି ମାଷ୍ଟରଙ୍କ ବିବ୍ରତ ମନକୁ ଶାନ୍ତି ମିଳିଲା।

ପ୍ରଧାନଶିକ୍ଷକ ମହୋଦୟ ବସନ୍ତରାଓଙ୍କୁ ଡ଼କାଇ ପଠାଇଲେ। ସେ ସେପର୍ଯ୍ୟନ୍ତ ନିଜ କ୍ଲାସରେ ପହଞ୍ଚିନଥିଲା।

ସେଦିନ ବସନ୍ତରାଓ ସଜବାଜ ହୋଇ ବନ୍ଧୁ ଅବ୍ଦୁଲ ଅଜୀଜର ରୁମ୍‌ରେ ସାରା ଦ୍ୱିପ୍ରହର ବିତାଇଲା। ତା' ସହ ହୋଟେଲରେ ବହୁତ ପରାମର୍ଶ କଲା। ଦି'ଟା ବେଳକୁ ଯାଇ ବସଷ୍ଟାଣ୍ଡରେ ଠିଆହୋଇଗଲା। ଦି'ଘଣ୍ଟା ଠିଆହେଲାପରେ ମଧ କେହି ଆସିଲା ନାହିଁ। ବସଷ୍ଟାଣ୍ଡରୁ ସିନେମା ହଲ ଅନ୍ତତଃ ଦଶଚକ୍କର ଲଗାଇଲା। ତା'ପରେ ସ୍ଥିର ବୁଝିଗଲା ଯେ ପ୍ରେମିକା ତାକୁ ପସନ୍ଦ କଲାନାହିଁ। ସ୍କୁଲ ଛୁଟି ହେବା ପୂର୍ବରୁ ତାକୁ ଦେଖା କରି ନିଜ ମନକଥା କହିଦେବା ଦରକାର—ତାର ଭାଙ୍ଗି ପଡ଼ିଥିବା ହୃଦୟ ତାକୁ ଏଇ ପରାମର୍ଶ ଦେଲା। ଗୁଡ଼ାଏ ବାଟ, ତେଣୁ ତାର ସନ୍ଦେହ ହେଉଥାଏ, ଠିକ୍ ସମୟରେ ପହଞ୍ଚିହେବ କି ନାହିଁ। ସେ ସହଳ ଟାଙ୍ଗାଟିଏ ଡ଼ାକିଲା। ଟାଙ୍ଗା ଟଣଟିଣ୍ କରି ଦ୍ରୁତ ସ୍କୁଲ ଆଗରେ ପହଞ୍ଚିଲା। କାହାର ଏ ଘୋଡ଼ା? ଦେଖିବା ପାଇଁ ସାରା ସ୍କୁଲ ଅଜାଡ଼ିପଡ଼ିଲା। 'ଇନ୍ସପେକ୍ଟର ଆଉ ଆସିଗଲେକି' ଭାବି ପ୍ରଧାନଶିକ୍ଷକ ମଧ ନିଜ ଅଫିସରୁ ବାହାରକୁ ବାହାରିଆସିଲେ। ତାଙ୍କ ପଛେପଛେ ଦି'ଜଣ ଚପରାସୀ ଦଉଡ଼ି ଆସିଲେ। ଇନ୍ସପେକ୍ଟରଙ୍କ ଡ଼ରରେ ପାଚେରୀ ଭିତରେ ଥିବା ଗଛର ପକ୍ଷୀ ସୁଦ୍ଧା ସ୍ତବ୍ଧ ହୋଇଗଲେ।

ଏତିକିବେଳେ ବସନ୍ତରାଓ ବଡ଼ ଥାଟ୍‌ରେ ଧୋତି ସମ୍ଭାଳି ଓହ୍ଲାଇଲା। ପାନ

ଖାଇ ପାଟି ଲାଲ। ଗରମକୋଟ୍‌ରୁ ବାହାରୁଥିବା ଅତର ଗନ୍ଧ ପାଖରେ ବଗିଚାର ଫୁଲର ସୁଗନ୍ଧ ହାରମାନିଯିବ। କୋଟ୍‌ରେ ତାଜା ଗୋଲାପଫୁଲଟିଏ ଲାଗିଥାଏ। ଛାତିପକେଟରୁ ତିନିରଙ୍ଗର ରୁମାଲ ଉଙ୍କିମାରୁଥାଏ। ଚକ୍‌ଚକ୍ ପାଲିଶକରା ଯୋତା। ଗଳାରେ ସ୍କାର୍ଫ 'ଶେଷନାଗ' ପରି ଜଡ଼ିରହିଥାଏ। କେରାଏ ବାଳ କପାଳ ଉପରେ ଦୋହଲୁଥାଏ। ମଜନୁ ସାଜିବା ପାଇଁ ଅତୁଲ ଅଜୀଜତା' ଆଖିରେ ସୁର୍ମା ପିନ୍ଧାଇ ଦେଇଥିଲା। ଏ ସାଜପୋଷାକରେ ବସନ୍ତରାଓ ଯାତ୍ରାର ଦୁଇପ୍ରକାରର ଚରିତ୍ର ଭଳି ଦିଶୁଥାଏ–ଅଧା ଭୀମସେନ ଆଉ ଅଧେ ତିନିମାସର ପୋଖତୀ।

ନିଜର ଯୋତାକଥା ଭୁଲି ପ୍ରଧାନ ଶିକ୍ଷକ ମହୋଦୟ ଘୋଡ଼ା ଆଡ଼କୁ ଦୌଡ଼ିଯାଇ ବସନ୍ତ ଆଗରେ ଠିଆହୋଇଗଲେ। ନମସ୍କାର ପାଇଁ ଯୋଡ଼ିବାକୁ ଉଠାଇଥିବା ହାତଦ୍ୱାରା ସେ ମୁଣ୍ଡ କୁଣ୍ଡାଇବାକୁ ଲାଗିଲେ। ମିନିଟିଏ କାଳ କଣ କହିବେ ବୁଝି ନପାରି ଏପଟସେପଟ ଚାହିଁବାକୁ ଲାଗିଲେ। ଶ୍ରେଣୀର ଛାତ୍ରଛାତ୍ରୀମାନେ ସେ ଯା ମୁହଁକୁ, ଇଏ ତା ମୁହଁକୁ ଚାହିଁ ନିଜନିଜର ହସ ଚାପିରଖିଥିଲେ। ଚତୁର୍ଥ ଶ୍ରେଣୀର ଅପରିପକ୍ୱ ଶିକ୍ଷକ ନିଜର ହସ ଚାପିପାରିଲେ ନାହିଁ। ତାଙ୍କ ମୁହଁରୁ 'ହିଁ' ଶବ୍ଦ ବାହାରିବାମାତ୍ରେ ହିଁ ସାରା ଶ୍ରେଣୀ ହୋହୋ ହୋଇ ହସି ଉଠିଲା। ସେମାନଙ୍କ ହସ ଶବ୍ଦ ଶୁଣି ଅନ୍ୟ ଦୁଇ ତିନୋଟି ଶ୍ରେଣୀରେ ମଧ୍ୟ ହସ ଉଛୁଳି ପଡ଼ିଲା। ଏଇ ହସ ମଝିରେ ପ୍ରଧାନଶିକ୍ଷକ ମହୋଦୟ ନିଜକୁ ସନେଇ କର୍ତ୍ତବ୍ୟ ଠିକ୍ କରିନେଲେ।

'କଥା କଣ ?' ସେ ଗମ୍ଭୀର ହୋଇ ପଚାରିଲେ।

'କିଛି ନାହିଁ ସାର, ଘରେ ଶ୍ରାଦ୍ଧ ଥିଲା, ତେଣୁ ଆସିବାରେ ଡ଼େରି ହୋଇଗଲା।'

ପ୍ରଧାନଶିକ୍ଷକ ଭାବିଲେ ଏ ଶ୍ରାଦ୍ଧକୁ ଏଇଠି ଶେଷ କରିଦେବା ଦରକାର। ସେ ତାକୁ ନିଜ ଅଫିସକୁ ନେଇଗଲେ। ପ୍ରେମପତ୍ରକୁ ତା' ହାତରେ ଦେଇ ତାକୁ ପଚାରିଲେ 'କଣ, ଯାକୁ ତୁମେ ଲେଖିଛ ?'

ନିଜ ରକ୍ତରେ ଲିଖିତ ପ୍ରେମପତ୍ର ଯେତେବେଳେ ପ୍ରଧାନଶିକ୍ଷକଙ୍କ ହାତରୁ ତା ହାତକୁ ଆସିଲା ସେତେବେଳେ ସେ ଚିଠି ତାକୁ ଶତ୍ରୁ ପରି ମନେହେଲା। ତା ନିଜର ହସ୍ତାକ୍ଷର, ତା'ରି କାଳି, କାଳେ ଠିକ୍ ବୁଝାନଯିବ ସେଥିପାଇଁ ନିଜେ ଯୋଡ଼ିଥିବା 'ବାହାଦୂର' ଶବ୍ଦ। ଏଇସବୁକଥା ବସନ୍ତକୁ ଛନ୍ଦି ପକାଇଲା। ତାର କିଛି କହିବାକୁ ଇଚ୍ଛାହେଲାନାହିଁ। ଅଯଥା ବାହାନା କରି ବସନ୍ତ କାନୁନର ସହାୟତା ନେଲା।

'ଆଜ୍ଞା ହଁ, ମୁଁ ଲେଖିଛି। କିନ୍ତୁ ଆପଣ ଯାକୁ କାହିଁକି ପଢ଼ିଲେ ?'

ତହୁଁ ପ୍ରଧାନଶିକ୍ଷକ ମହୋଦୟ ତା ନାକ ଆଗରେ ଜଜ ସାହେବଙ୍କ ଚିଠି ଖଣ୍ଡି ଧରି ଗର୍ଜି ଉଠିଲେ, 'କାଲିଠୁ ତୁମେ ସ୍କୁଲ ଆସିବ ନାହିଁ।'

ତାଙ୍କର ରାଗ ଦେଖି ବସନ୍ତ 'ସାମ-ଦାମ' ପନ୍ଥା ଧରିଲା। 'ସାର, ମୋତେ ନିଜର ପୁଅଭାବି ଏଇଥରକ କ୍ଷମାକରିଦିଅନ୍ତୁ। ଏ ଭୁଲକୁ ଆପଣ ଗୋପନ ରଖନ୍ତୁ।'

ମାଷ୍ଟରବାବୁଙ୍କ ପାଖରେ ବସନ୍ତର ଏପରି କହିବା କିଛି ନୂଆ କଥା ନୁହେଁ। 'ସେ ସବୁ ଚଳିବ ନାହିଁ। କାଲିଠୁ ସ୍କୁଲ ଆସିବା ଦରକାର ନାହିଁ। ଆସ ଯଦି....।'

ଏହା କହି ସେ ଛେପ ଢୋକିଲେ ।

ବସନ୍ତ ପାଇଁ ଏହା ଏକ ନୂଆଘଟଣା ।

'ଆସିଲେ କଣ କରିବେ ?'

'ସେ କଥା ବାଲସ୍ତାକୁ ପଚାର ।'

ବାଲସ୍ତା ଘଣ୍ଟା ପିଟୁଥିବା ମୋଟା ସୋଟା ଚପରାସୀ । ବସନ୍ତକୁ ବଡ଼ ରାଗ ଲାଗିଲା । ଅପମାନ ବି ଲାଗିଲା । ସଦର୍ପ ଦାନ୍ତଚିପି କହିଲା 'ଆଚ୍ଛା, ବାଲସ୍ତା କ'ଣ କରିପକାଇବ ? ମୋ'ରି ବାପା ଦେଇଥିବା ଚାକିରୀ, ନହେଲେ ଗଡ଼ିଯାଇଥାନ୍ତା ! ମୋ ଦେହରେ ଟିପ ଛୁଇଁ ଦେଖୁ ! ଏଇପରି ଚିତ୍କାର କରୁକରୁ ଅସଲ କଥାକୁ ଆସିଲା, 'କାଲିଠୁ ସ୍କୁଲ ଆସିବି ନାହିଁ ? କାହିଁକି ? ମୁଁ କଣ ଫିସ୍ ଦେଉନାହିଁ ? ଫିସ୍ ଦେଉଛି ଫିସ!'

'ତୁମ ଫିସ୍ ଦରକାର ନାହିଁ, କି ତୁମକୁ ଦରକାର ନାହିଁ ।'

'ଆଚ୍ଛା ! ଆପଣଙ୍କର ଯେତେବେଳେ ଦରକାର ହେବ ମୁଁ ଆସିବି ନହେଲେ ନାହିଁ ? ଇଏ ଆପଣଙ୍କ ବାପାଙ୍କ ସ୍କୁଲ ନୁହଁ ।' ଏହାକହି ବସନ୍ତ ଦମ୍ ନେବାକୁ ଲାଗିଲା । ଚପରାସୀମାନେ ଆସି ତାକୁ ଧରି ପକାଇଲେ । ସେ ଯୋରକରି ତଳେ ବସି ପଡ଼ିଲା । ପ୍ରଧାନଶିକ୍ଷକ ଯେତେବେଳେ ଦେଶାଇଜୀଙ୍କ ଲିଖିତ କ୍ଷମାପ୍ରାର୍ଥନା ଚିଠିଟି ପଢ଼ିଲେ, ସେତେବେଳେ ତା ପାଦତଳୁ ମାଟି ଘୁଞ୍ଚିଗଲା । ପରିଶେଷରେ ପ୍ରଧାନଶିକ୍ଷକ କହିଲେ, 'ଦେଶାଇଜୀ ମୌଖିକ ଆଜ୍ଞା ଦେଇଛନ୍ତି ବାଲସ୍ତାକୁ ଦେଇ ତୁମକୁ ବାହାର କରିଦେବା ପାଇଁ । ତୁମର ସବୁକଥା ସେ ଜାଣନ୍ତି ।' ପୁଣି କହିଲେ, 'ତୁମ ବାପା ଏକଥା ମଧ୍ୟ କହିଛନ୍ତି ଯେ ରାତିରେ ମୁଁ ଗଲାବେଳେ ତୁମେ ଯଦି ରାଗରେ କିଛି କର ତେବେ.. ।' ଏସବୁ କହିସାରି ସେ କହିଲେ 'ତୁମେ ଏବେ ଯାଇ ପାର ।'

ବସନ୍ତ ବଲ୍ ପରି ଛିଟିକି ବାହାରି ଆସିଲା । ପଇସା ଦେଇ ନଥିବାରୁ ବାହାରେ ଏଯାଏଁ ଟାଙ୍ଗା ଠିଆ ହୋଇଥାଏ । ବସନ୍ତରାଓ ଆଙ୍ଗୁଠି ମଳି ନିଃଶ୍ୱାସ ନେଇ ଏପରି ଭାବରେ ଟାଙ୍ଗାରେ ଚଢ଼ିଲା ଯେପରି...'ଛାଡ଼, ଏ ସ୍କୁଲକୁ କିଏ ଆସେ' କହି ନିଜ ସ୍କୁଲ ମୁହଁରେ ଛେପ ପକାଇଦେଲା ।

# 12. ବସନ୍ତ ରାଓର ଲଙ୍କା ଦହନ

ସ୍କୁଲରୁ ବାହାରି ବସନ୍ତ ସିଧା ସାଙ୍ଗ ଅବ୍ଦୁଲ ଅଜୀଜରୁମରେ ପହଞ୍ଚିଲା । ନିଜ କଳାକୃତିର ଉଚିତ ପୁରସ୍କାର ନ ମିଳିଥିବାରୁ ଅବ୍ଦୁଲ ଅଜୀଜ୍‌କୁ ବହୁତ ଦୁଃଖ ଲାଗିଲା । ଏଇ ଭଗ୍ନ-ପ୍ରେମର ବାସ୍ତବିକ କଷ୍ଟ ତାକୁହିଁ ହେଲା । ଲୈଲା-ମଜନୁ କାହାଣୀ ପଢ଼ି ଯୁବା ପାଲଟିଥିବା ସାଥୀଟିକୁ ଏଇ ଚିନ୍ତା ଘାରିଲା ଯେ ଯଦି ବସନ୍ତରାଓ ବରବାଦ ହୋଇଯାଏ ! ଯଦି ତାର ଛାତିଫାଟି ଯାଏ ? ଯଦି ପାଗଳ ହୋଇଯାଏ ? ଏହାଭାବି ସେ ତାକୁ ବୁଝାଇବାକୁ ଆରମ୍ଭ କଲା; ହେଲେ ବସନ୍ତରାଓ ପ୍ରେମକଥା ପାଶୋରିଯାଇଥିଲା । ପ୍ରେମ ସ୍ଥାନରେ ସ୍କୁଲରେ ମିଳିଥିବା ଅପମାନ କଥା ତା' ମୁଣ୍ଡରେ ଖେଳୁଥାଏ । ସ୍କୁଲକୁ ପୋଡ଼ିପକାଇବ ? ନାଁ ଅନ୍ଧାରରେ ପ୍ରଧାନଶିକ୍ଷକଙ୍କୁ ଧରି ପାନେ ଦେବ ?– ଇତ୍ୟାଦି ଇତ୍ୟାଦି ଦୁଃସାହସିକ କଥା ସେ ଚିନ୍ତା କରୁଥିଲା । ଅବ୍ଦୁଲ ଅଜୀଜ୍‌ର ଗଜଲରୁ ତାକୁ ଶାନ୍ତି ମିଳିଲା ନାହିଁ । 'ଏକାକୀ ବିକ୍ରମଂ କୁର୍ଯ୍ୟାତ୍' ବିଚାର କରି ଅନ୍ଧାର ହେବାରୁ ଘର ଆଡ଼କୁ ମୁହାଇଁଲା । ଘର ପାଖରେ ପହଞ୍ଚି 'କାହିଁକି ଏଠାକୁ ଯିବି' ଭାବି ଫେରିଲା । ଦୋଳାୟମାନ ଚିତ୍ତରେ ଏଥର ଘୂରୁଘୂରୁ ଦଶ ବାଜିଗଲା । ଶେଷରେ ଘର ପାଚେରୀ ପାଖରୁ ସେ ନିମ୍ନ କଥାବାର୍ତ୍ତା ଶୁଣିଲା ।

'ସେ କୂଅପାଖ ଘରେ ତାସ୍ ଖେଳୁଥିବ । ସେଠାରେ ଦେଖି ଆସିଛୁ ?– ଦେଶାଇଜୀ ପଚାରୁ ଥିଲେ ।'

'ସେଠାରେ ତ ନାହାନ୍ତି ଅଣ୍ଣା ।'

'ସେ ମୁସଲମାନ ଟୋକାଘରେ ଦେଖି ଆସିଲୁ ?'

'ସେଇଠୁ ହୋଇ ଆସୁଛି ।''

'ତେବେ ଘଣ୍ଟେ ଅଧେ ତା' ପାଇଁ ଅପେକ୍ଷାକର । ସେ ଆସିଲାମାତ୍ରେ ମୋତେ ଉଠାଇ ଦେବୁ । ଯିବ କୁଆଡ଼େ.... ।' ତାପରେ ସବୁ ଚୁପ୍ ।

ଏସବୁ କଥାବାର୍ତ୍ତା ଶୁଣି ବସନ୍ତର ସେଠାରୁ ପଳାଇ ଯିବାକୁ ଇଚ୍ଛା ହେଉଥିଲା, ହେଲେ ପାଦ ବଥେଇଲାଣି । ଅଜୀଜ୍‌ର ଘର ଢେରଦୂରରେ । ଭାବିଲା ଯଦି ଆଉ କାହା ଘରକୁ ଯିବ, ତେବେ କିଛି ଅସୁବିଧା ହୋଇପାରେ । ପୁରୋହିତ ବାଳମଭଟ୍ଟଙ୍କ ଘରକୁ ଯାଇ 'ଭଟ୍ଟ ଆଜି ତୁମେ ଖୁଆଅ' କହିଲେ ହୁଅନ୍ତା, ହେଲେ ସେଠାରେ ଶୋଇବାର ଅସୁବିଧା, ବହୁତ ଓଡ଼ଶ । ତାକୁ ଗୋଟିଏ ବୁଦ୍ଧି ଦିଶିଲା । କୌଣସି

ମତେ ଘରର ବାରିପଟେ ପଶି ଚୁପ୍‌ଚାପ ଉପର ମହଲାରେ ନିଜଘରେ ଯାଇ ଶୋଇପଡ଼ିବା ଭଲ ।

ପଛପଟେ ପୂରା ଅନ୍ଧାର । ବାଡ଼କୁ ଟପିଲା ବେଳେ କଣ୍ଟା ନ ବାଜିବାରୁ ଖୁସି ହୋଇ ଘରପାଖ ଯାଏଁ ଆସିଲା । ଅନ୍ଧାରରେ ଘର ଦେବତାଙ୍କ ପରି ସାଦା ଅସ୍ପଷ୍ଟ ରୂପରେ ଠିଆହୋଇଥାଏ । ବସନ୍ତ ଟୋପିଖୋଲି ପକେଟରେ ରଖିଲା । ଆଉ କୋଟ ଖୋଲି କୋଟ୍ ହାତକୁ ଅଣ୍ଟାରେ ବାନ୍ଧି ଦେଲା । ଯୋତାକୁ ଜାଲ ଭିତରେ ଲୁଚାଇ ଦେଲା । ଧୋତି ଉପରକୁ ଟେକି ଦୋକଛି ମାରିଦେଲା । ଝରକା ଉପରେ ପାଦରଖି ରଡ଼କୁ ଆଙ୍ଗୁଠିରେ ଚିପି ଧରି ଘୁସୁରି ହୋଇ ଯାଇ ଝରକାର ସ୍ପ୍ରିଂ ମଝିରେ ଥିବା ପଥରରେ ଲଟକି ଗଲା । ସେଠାରୁ ଆଙ୍ଗୁଠି ଟିପ ଉପରେ ଭରାଦେଇ ସାନପଥର ଉପରକୁ ପାଦ ଠେକେଇ ଆଣ୍ଠୁରେ ଭରା ରଖି ମଝିରେଥିବା ପଥର ଉପରେ ଚଢ଼ିଲା । ଅଧଫୁଟ ଚୌଡ଼ା ପଥର ଉପରେ ରହି ଆଣ୍ଠୁ ବଥେଇବାକୁ ଲାଗିଲା । ପାପୁଲିରେ ପାଚେରୀ ଧରି ପୂରା ଠିଆହୋଇଗଲା । ସେଇଠାରୁ ଉପରକୁ ହାତଟେକିବାରୁ ତା'ର ଅଙ୍ଗୁଠି ନିଜ ଶୋଇବା ଘରର ଝରକାତଳର ପଥରକୁ ଛୁଇଁଲା । ଯଦି ଝରକାର ରଡ଼ ପର୍ଯ୍ୟନ୍ତ ବସନ୍ତର ହାତ ପହଞ୍ଚି ପାରନ୍ତା, ତେବେ ସେ ଏକାଡ଼ିଆଁକେ ନିଜ ଘରେ ପହଞ୍ଚି ଯା'ନ୍ତା । ଅପର ଦିଗକୁ ହାତବଢ଼ାଇଲା ବେଳକୁ ଅଳିଆରକୁ ଆସିଥିବା ଝରକାର ରେଲିଂ ହାତଠାରୁ ଇଞ୍ଚେ ଦୂରରେ । ବସନ୍ତ ସାରା ଦେହକୁ ସଙ୍କୁଚିତ କରି ଆଙ୍ଗୁଠି ଉପରେ ଭରା ଦେଇ ଠିଆ ହୋଇଗଲା । ତା'ର ଆଙ୍ଗୁଠି ଆଗ ଝରକା ପଥରକୁ ଅଧା ଧରିପାରିଲା । ହେଲେ ତା' ଉପରେ ସେ ନିଜର ଭାରା କେମିତି ଛାଡ଼ିବ.....?

ଜୀବନରେ ବସନ୍ତ କେବେ ଏମିତି ନିରାଶ ହୋଇ ନଥିଲା । ପାଶୋରି ହୋଇ ଯାଇଥିବା କ୍ଳାନ୍ତି ଏବେ ତାକୁ ବୋଧ ହେଲା । ସାରା ଦେହ ଅବଶ, ଝାଳ ବୋହି ପଡୁଛି । ଗୋଡ଼, ପେଣ୍ଡାରେ ଲୁହାକଣ୍ଟା ଲାଗି ବଥା । ଗୋଡ଼ ପାପୁଲି ମଧ ଝାଳେଇ ଲାଣି । ସେଇ ନିରାଶା ମଧରେ ସେ ଯଦି ଟିକିଏ ଅମନଯୋଗୀ ହୋଇ ପଡ଼ିଥାନ୍ତା ତେବେ ଝିଟିପଟି ପରି ଛାତରୁ ଖସି ମାଟିରେ ପଡ଼ିଥାନ୍ତା । ସେ ନିଜକୁ ସମ୍ଭାଳି ନେଲା । ତଳକୁ ପାଦଠେକାଇ ଦେଖିଲା, ତଳଝରକାର ରେଲିଂ ପାଦକୁ ଠେକିଲା ନାହିଁ । ଡ଼େଇଁବାହିଁ-ଏକମାତ୍ର ଉପାୟ । ମାଟିଯେ କେତେ ତଳେ ତାହା ଅନ୍ଧାରରେ ବୁଝାପଡୁ ନାହିଁ । ଯେଉଁଠାକୁ ଡ଼େଉଁ ପଛକେ ଗୋଡ଼ ଉପରେ ଭରାଦେଇ ଡ଼େଇଁବାଟା ଠିକ୍ ହେବ ଭାବି ଅଳ୍ପ ପଛକୁ ଝୁଙ୍କି ଡ଼ିଆଁମାରିଲା । ମୁହୂର୍ତ୍ତଟିଏ ଶୂନ୍ୟରେ ନିର୍ବିଘ୍ନରେ ଯାତ୍ରା କରି ବସୁମାତା ଉପରେ ସେ ଧପ୍ କରି ବସିପଡ଼ିଲା । ସବୁ ଅନ୍ଧକାର ଦିଶିବାରୁ ଦି'ମିନିଟ ମୁଣ୍ଡ ଚାପି ସ୍ଥିର ହୋଇ ବସିଲା । ସାରା ସଂସାର ଶୂନ୍ୟ ମନେହେଲା । ଏତିକିବେଳେ କାନରେ ସରସର ଶବ୍ଦ ବାଜିଲା । ସ୍ଥାନଟି ଗୁହାଳ ଘର । ଗୁହାଳ ସତେ ଯେମିତି ବସନ୍ତକୁ ନିମନ୍ତ୍ରଣ କରୁଛି । ଘୁସୁରି ଘୁସୁରି ଯାଇ ସେ ପାଳଗଦା ଉପରେ ଗଡ଼ିଗଲା । ସେଇଠି ନିଦ ଆସିଗଲା ।

ରାତିବାରଟା ଯାଏଁ ପୁଅ ଘରକୁ ଫେରିଲା ନାହିଁ। ଯଦି ସିନେମା ଯାଇଥାନ୍ତା, ତେବେ ଏତେବେଳକୁ ଫେରନ୍ତାଣି। ଏପର୍ଯ୍ୟନ୍ତ ମୁହଁବୁଜି ରହିଥିବା ବିଣୁବାଈ ଦୁଃଖରେ କାନ୍ଦି ପକାଇଲା। ସ୍ୱାମୀସ୍ତ୍ରୀ ଦିହେଁ ଖାଇ ନଥାନ୍ତି। ରାତି ଦି'ଟା ଯାଏଁ ଦେଶାଇଜୀ ଏ ଗଳି ସେ ଗଳି ଘୂରିଘୂରି ଫେରିଲେ। ଶେଷରେ ରେଲୱେ ଷ୍ଟେସନରେ ପହଞ୍ଚି ଗୋଟେ ପଟେ ଭରମାକୁ ଅନ୍ୟପଟେ ଯଲ୍ଲାକୁ ଖୋଜିବାକୁ ପଠାଇ ଦେଇ ୱେଟିଂ ରୁମରେ ବସିରହିଲେ। ସେମାନେ ଲଣ୍ଠନ ଧରି ଦେଢ଼ ଦେଢ଼ ମାଇଲ ଅନ୍ତର ଯାଏଁ ଖୋଜି ଖୋଜି ଫେରିଲେ। ଦୀର୍ଘଶ୍ୱାସ ନେଇ ଦେଶାଇଜୀ ଘରକୁ ଲେଉଟିଲେ। ସାନପୁଅ ପୁରୁଷୋତ୍ତମକୁ ଛାତିରେ ଜାକି ଧରି ବିନୁବାଈ ବ୍ୟାକୁଳ ହୋଇ ଏକଲୟରେ ବାଟ ଦେଖୁଥିଲେ। ପାଦଶବ୍ଦ ଶୁଣି ଧ୍ୟାନ ଭାଙ୍ଗିଗଲା ଓ ପୁଣି କାନ୍ଦିବାକୁ ଲାଗିଲେ। ଦେଶାଇଜୀ ତାଙ୍କୁ ଏଣୁ ତେଣୁ ବୁଝାଉ ବୁଝାଉ କୁକୁଡ଼ା ଡ଼ାକି ଉଠିଲା। ସିନ୍ଦୁରା ଫାଟୁ ଫାଟୁ ସଭିଙ୍କୁ ନିଦ ଲାଗିଗଲା।

ପ୍ରାୟ ସାତଟାବେଳ ଭରମା ଗୋବର ମଇଳା ଉଠାଇବାକୁ ଆସି କୁଟାଗଦା ମଧ୍ୟରେ ଦ୍ରୋଣାବତାର ପରି ଶୋଇଥିବା ବସନ୍ତକୁ ଦେଖିଲା। ଦେଶାଇଜୀଙ୍କର ସେଇ କ୍ଷଣି ଟିକିଏ ଆଖିଲାଗି ଆସିଥାଏ। ଭରମା ତାଙ୍କୁ ଉଠାଇ ଦେଲା। ବିଣୁବାଈ ମଧ୍ୟ ଦୌଡ଼ି ଆସି ଅବାକ୍ ବିସ୍ଫାରିତ ଆଖିରେ ପୁଅକୁ ଚାହିଁ ରହିଲେ। ଦେଶାଇଜୀ କିଛି ନକହି ବସନ୍ତକୁ ଉଠାଇଦେବା ପାଇଁ ଭରମାକୁ କହିଲେ। ବିଣୁବାଈ ନିଜେ ଯାଇ ପୁଅମୁଣ୍ଡକୁ କୋଳରେ ରଖି ତାକୁ ଉଠାଇଲେ। ବସନ୍ତ ଆଖି ମଳି ମଳି ଉଠି ବସିଲା। ଏପଟ ସେପଟ ଚାହିଁ ଶୁଖିଲା ଗୋବର ଘାସ ଆଦି ଦେଖିଲା ମାତ୍ରେ ତା'ର ଗତକାଲିର ସବୁ କଥା ମନେପଡ଼ିଗଲା।

ମା' ତାକୁ ଛାତିରେ ଜାକି ଧରି 'ବସନ୍ତ ବସନ୍ତ' କହି କାନ୍ଦିବାକୁ ଲାଗିଲେ। ଅତି ଯତ୍ନରେ ବସେଇ ବସେଇ ବାଟିଏ ଦୁଧ ପିଆଇଲେ। ଦେଶାଇଜୀ ସବୁ କିଛି ଚୁପ୍‌ଚାପ୍ ଦେଖିଲେ। ପୁଅକୁ ଏମିତି ଭାବରେ ଶୋଇଥିବା ଦେଖି ତାଙ୍କର ହୃଦୟ ତରଳି ଯାଇଥିଲା, ହେଲେ ମନର ଏ ଭାବକୁ ମୁହଁରେ ପ୍ରକାଶ କରିବାର ଇଚ୍ଛା ତାଙ୍କର ନଥିଲା।

ବେଣୁଙ୍କା ତେଲ ମାରି ବସନ୍ତକୁ ଗାଧୋଇ ଦେଲେ। ବନ୍ଦାପନା କରି ଦୃଷ୍ଟି ଖଣ୍ଡନ ପାଇଁ ମୁଣ୍ଡରେ ସିନ୍ଦୂରଟିପା ଲଗେଇ ଦେଲେ। ଜଳଖିଆ ପାଇଁ ନେଇ ବସାଇଲେ। ଭୋକିଲା ହୋଇଥିବାରୁ ବସନ୍ତ ବେଶ ଭଲକରି ଖାଇଲା। ତା'ପରେ ମା' ଗୁଣୁଗୁଣୁ ହୋଇ କହିଲେ, 'ବସନ୍ତ, ମୋତେ ଛାଡ଼ି କୁଆଡ଼େ ଯିବୁ ନାହିଁ ବାପା! ଦେଖ, ତୋରି ପାଇଁ ମୁଁ କାଲି ଆଖିପତା ଏକ କରିପାରି ନାହିଁ, ସାରାରାତି ଏମିତି ବସି ରହିଛି। ଇଏ ମଧ୍ୟ ସାରାରାତି ଏଗଳି ସେଗଳି ହୋଇ ତୋତେ ଖୋଜି ବୁଲିଛନ୍ତି। ଭାରୀ ଥକ୍କା ହୋଇ ଯାଇଛନ୍ତି। ମିଛ ମଣୁଛୁ ଯଦି ଭରମାକୁ ପଚାର। ଯା ବାପା, ତାଙ୍କଠୁ ଦୋଷ ମାଗିନେ– ''ବାପା ମୋର ଭୁଲ ହୋଇଯାଇଛି।'' ସେଥିରେ ତାଙ୍କ ମନ ଟିକିଏ ହାଲୁକା ହୋଇଯିବ।'

ପେଟ ପୂରିଗଲା ପରେ ବାପାଙ୍କୁ କ୍ଷମା କରିବା ପାଇଁ ବସନ୍ତ ପ୍ରସ୍ତୁତ ନଥିଲା। ବାପା ତାକୁ ସ୍କୁଲରୁ ବାହାର କରିଆଣିଛନ୍ତି। ଚପରାସୀ ଦେଇ ତାକୁ ବାହାର କରି ଦେବା ପାଇଁ ମାଷ୍ଟରଙ୍କୁ କହିଛନ୍ତି। ସେ ସବୁ ମନେପକାଇ ସେ ମା' କଥା ମାନିବାକୁ ପ୍ରସ୍ତୁତ ନଥିଲା।

ବସନ୍ତର ବିଚିତ୍ର ପରାକ୍ରମ ଓ ତା'ର ଆଗର ସବୁଭୁଲ୍ ତ୍ରୁଟିକୁ ଭୁଲି ଘରେ ସଭିଏଁ ତାକୁ ଯଥାରୂପ ସ୍ୱାଗତ କଲେ, ହେଲେ ତା' ପରଦିନହିଁ ତାକୁ ଧାରୱାଡ଼ ଜେଲଖାନା ପରି ମନେହେଲା। ତାକୁ ସ୍କୁଲରୁ ବାହାର କରାଯାଇଥିବା ଖବର ସାରା ସହରରେ ବ୍ୟାପି ଗଲା। ଏବେ ରାସ୍ତାକୁ ବାହାରିବା ମୁସ୍କିଲ। ମନେହେଲା ସାରା ସହରଟା ହିଁ ତା'ର ଶତ୍ରୁ ହୋଇଯାଇଛି। ସେ ସ୍ଥିର କଲା ନିଜର ଆକ୍ରୋଶ ମିସ ଖୋଟ୍ ଉପରେ ସୁଝାଇବ। ଦିନେରାତିରେ ଚୁପ୍‌ଚାପ୍ ଘରୁ ବାହାରି ଛୁରୀଟିଏ ନେଇ ସାର୍ବଜନୀନ ସ୍ଥାନମାନଙ୍କରେ ତା'ର ନାମସହ ଶୃଙ୍ଗାରିକ ଶବ୍ଦମାନ ଖୋଲିଦେଇ ଆସିଲା।

ଦେଶାଇଜୀ ପାଖରେ ପୁଣି ଏ ଅଭିଯୋଗ ପହଞ୍ଚିଲା। ବସନ୍ତ ଘରେ ସଭିଙ୍କ ରାଣ ଦେଇ କହିଲା, 'ମୁଁ ଘରୁ ବାହାରକୁ ବାହାରିନାହିଁ। ମୁଁ ଏ କାମ କରିନାହିଁ।' ଦେଶାଇଜୀ କ'ଣ କରିବେ ବୁଝିପାରିଲେ ନାହିଁ। ପରେ ବେଣକ୍କାର ବିନତି ନମାନି ବସନ୍ତକୁ ଗାଁକୁ ପଠାଇ ଦେଲେ। ବସନ୍ତ ଧାରୱାଡ଼ ଛାଡ଼ିବାକୁ ଚାହୁଁଥିଲା। ବାପା ଓ ଧାରୱାଡ଼ର ଲୋକଙ୍କ ଦୃଷ୍ଟିରୁ ଉହାଡ଼କୁ ଯାଇ ଗାଁରେ ପହିଞ୍ଚି ସେ ଶାନ୍ତିରେ ନିଶ୍ୱାସ ମାରିଲା।

# 13. ଜର୍ଜ ୱାଶିଂଟନ କମ୍ପାର ଗଣିବୀ

ନିଜର ପରିବର୍ତ୍ତିତ ମନୋଭାବକୁ ଖାପଖାଇଲାପରି କଚେରୀରେ କିଟ୍ଟୀକୁ ସାଙ୍ଗଟିଏ ମିଳିଲା । ସେ ହେଉଛି ଜର୍ଜ ୱାଶିଂଟନ କମ୍ପାର ଗଣିବୀ ।

ଢେର ଦିନ ଯାଏଁ ଆପଣାର ଲମ୍ବା ନାଁ ହେତୁ ଜର୍ଜ କିଟ୍ଟୀ ପାଖରେ ଏକ ଯାଦୁଗର ପରି ଦୂରସ୍ଥ ଥିଲା । ତା'ର ନିଜ କାମରେ ଉଦ୍ଦେଶ୍ୟ ଥାଏ । କାହାସହ ଯଦି ସେ ଦିପଦ କଥାବାର୍ତ୍ତା ହୁଏ, ତେବେ ସେ କେବଳ କାମ ହେତୁରୁ । କିଟ୍ଟୀ ପାଖରେ ସେ ନାମଟିଏ ଛଡ଼ା ଆଉ କିଛି ନୁହଁ । ଆଜିକାଲି କିଟ୍ଟୀର ସ୍ୱଭାବ କେତେକାଂଶରେ ବଦଳି ଯାଇଛି । ତହସିଲଦାର ସାହେବ ବତାଇଲାପରେ ସେ କେତେକ କାନୁନ ବହି ଓ କେତେ କେସ୍‌ର ଫାଇଲ ଘରେ ଦେଖିଥିଲା । କାମର ଧାରା ବୁଝିଯିବାପରେ ପୁରୁଣା ସାଙ୍ଗ ପୋଷାଉ ନାହିଁ । ସେମାନଙ୍କ ପାଖକୁ ଛୋଟ ଛୋଟ କଥାରେ ଯାଇ ଅନଭିଜ୍ଞଭଳି ପରାମର୍ଶ ନେବାଟା ନିଜର ସମ୍ମାନର ଅନୁକୂଳ ବୋଲି ତା'ର ମନେ ହେଉ ନାହିଁ । ମନେମନେ ଅବଶ୍ୟ ସେମାନଙ୍କର ଇଚ୍ଛା ଯେ କିଟ୍ଟୀ ସେମାନଙ୍କଠାରୁ ପରାମର୍ଶ ନେଉ । ଆଜିକାଲି କେଉଁକଥା ନବୁଝି ପାରିଲେ ସେ ସିଧା ତହସିଲଦାରଙ୍କ ପାଖକୁ ଚାଲିଯାଏ । ଏହାଫଳରେ ଅନ୍ୟମାନଙ୍କର ସନ୍ଦେହ ହେବାକୁ ଲାଗିଲା ଓ ସେମାନେ ଆଗପରି ତା' ସହ ମନଖୋଲି କଥାବାର୍ତ୍ତା କରିବା ବନ୍ଦକରିଦେଲେ । ତହସିଲଦାର କିଟ୍ଟୀକୁ କାମିକା ଲୋକ ବୋଲି କହିଲେ । ଏକଥା ରାଷ୍ଟ୍ର ହୋଇ ଯିବାରୁ କିଟ୍ଟୀ ସଭିଙ୍କର....କିଟ୍ଟୀ ତହସିଲଦାରଙ୍କ ପାଖକୁ ଯାଉ ନାଁ କାହିଁକି ଲୋକେ ଟପ୍‌ପଣୀ ନକାଟି ରହିପାରୁ ନଥିଲେ । ଥରେ ଏକ ଛୋଟ କାମରେ ତାକୁ ଜର୍ଜସହ କଥା ହେବାର ସୁଯୋଗ ମିଳିବାରୁ ସେ ବହୁକ୍ଷଣ ଯାଏଁ ତା' ସହ କଥାବାର୍ତ୍ତା ହୋଇ ତାକୁ ଭଲ ବନ୍ଧୁଟିଏ କରିପକାଇଲା । ଜର୍ଜ ଏ ବନ୍ଧୁତାକୁ ସ୍ୱାଗତକଲା । ଆଗଚଲା ହୋଇ କାହାର ପରିଚୟ ଚାହିଁବାକୁ ଜର୍ଜ ଇଚ୍ଛା କରେ ନାହିଁ, କିନ୍ତୁ ତା'ସହ ବନ୍ଧୁତା କରିବାକୁ ହାତବଢ଼ାଇ ଥିବା ଲୋକର ମନକୁ ସେ ଯଦି ଚିହ୍ନିପାରେ, ତେବେ କ୍ଷୀରନୀର ହୋଇଯାଏ । ଦିନ କେଇଟାରେ ସେମାନଙ୍କର ବନ୍ଧୁତା ଘନିଷ୍ଠ ହୋଇଗଲା । କେବଳ ନାମକୁ ମାତ୍ର ରହିଥିବା ଜର୍ଜ ଏକ ଜୀବନ୍ତ ବ୍ୟକ୍ତି ପାଲଟିଗଲ ।

ଜର୍ଜର ଜୀବନ ଥିଲା ନିଦ୍ରା ସମାନ। ମୌନତା ଥିଲା ତା'ର ରହସ୍ୟ। ଚୁପ୍‌ରହି ସେ କଚେରୀରେ ନିଜର ପ୍ରଭାବ ଜାହିର କରି ରଖିଥିଲା। ଲୋକେ ତା' ପଛରେ ତା'ର ନାମ ସମ୍ପର୍କରେ ତା'ର ନୀରବତା ସମ୍ପର୍କରେ ଅନେକ ପ୍ରକାର ଥଟ୍ଟା ପରିହାସ କରି ହସୁଥିଲେ; ହେଲେ କିଟ୍ଟୀପରି ସେ କେବେ ପ୍ରତ୍ୟକ୍ଷଭାବରେ ଗାଳିଖାଇଥିବା ଘଟଣା ଘଟି ନାହିଁ। ସେ କେତେବେଳେ ନିଜ ଫାଇଲ ପଢ଼େ ସେ କଥା କେହି ଜାଣେ ନାହିଁ; କିନ୍ତୁ ସେ ଯେଉଁଠି ଥାଉ ପଛକେ ସେଠାରେ କାମ ବାକିରହେ ନାହିଁ। କାମରେ ଲାଗିରହିଥିବାରୁ, ଭୁଲି ନହେଉ ଥିବାରୁ, କଚେରୀରେ ତା' କାମ ସମ୍ପର୍କରେ ମଧ୍ୟ କେହି ଜାଣେ ନାହିଁ। ତାକୁ କେହି ଭଲ କର୍ମଚାରୀ ବୋଲି କହିନାହିଁ, କିମ୍ବା ତା' କାମକୁ କେହି କେବେ ପ୍ରଶଂସା କରିନାହିଁ; କାରଣ ଅନ୍ୟମାନଙ୍କ ପରି ଯୋଗାଡ଼ଯନ୍ତ୍ର କରି ଆଗକୁ ଯିବାର ଅବସର ତାକୁ କେବେ ମିଳି ନାହିଁ। ସେ ନିଜେ ଜାଣେ ନାହିଁ କାମ ଠିକ୍ ହେଉଛି କି ନାହିଁ। କଚେରୀ କାମ ସମ୍ପର୍କରେ ତା'ର ଦୃଷ୍ଟିଭଙ୍ଗୀ ଥିଲା ଏଇପରି – ସଭିଏଁ ନିଜ ନିଜ କାମ କରୁଛନ୍ତି, ମୁଁ ମଧ୍ୟ କରୁଛି।

ପହିଲେ ପହିଲେ କିଟ୍ଟୀର ଆଉ କେହି ବନ୍ଧୁ ନଥିଲେ ବୋଲି ଯେ କିଟ୍ଟୀ ଜର୍ଜକୁ ପସନ୍ଦକଲା ତାହା ନୁହଁ, ବରଂ 'ଆଘାତ ପାଇ ପଡ଼ିବ ଯଦି, ତୂଳା ଗଦାରେ ପଡ଼' କହିଲା ପରି କିଟ୍ଟୀ ଅତିସହଜ ଏଇ ନୂଆ ଲୋକର ଚରିତ୍ର ଦ୍ୱାରା ପ୍ରଭାବିତ ହୋଇଗଲା। ପ୍ରଥମତଃ ଜର୍ଜଠାରେ ଥିବା କିଟ୍ଟୀର ପସନ୍ଦଯୋଗ୍ୟ କଥା ହେଲା ସେ ଯାହାକୁ ଯେମିତି ଦେଖେ ସେମିତି ମାନେ। ସେ କିଟ୍ଟୀର ବେଶଭୂଷା କଥାବାର୍ତ୍ତା ବିଷୟରେ ପଦେହେଲେ କହିନାହିଁ। କିଟ୍ଟୀର ଲୁଗାପଟା, ତା'ର ଚୂଟି, ନିଶ, କୋଟ, ଟୋପି ଆଦି ସମ୍ପର୍କରେ ତା'ର ସହକର୍ମୀମାନେ ସବୁବେଳେ କିଛିନାଁ କିଛି ପରିହାସ କରନ୍ତି। ମାତ୍ର ଜର୍ଜକୁ ଯେମିତି ଏସବୁ କିଛି ଦିଶେ ନାହିଁ। କିଟ୍ଟୀ ଯେପରି ତାକୁ ସେଇପରି ଭାବରେ ନିଜର କରିନେଲା।

ସେ ନିଜ କାମରେ ଚୌକସ। ଜୀବନପ୍ରତି ତା'ର ଏକ କାଳ୍ପନିକ ସୌଖୀନ, ଅରୁଚି ଥିଲା। ତାକୁ ଦୂର କରିବା ପାଇଁ ଦି' ଦିନରେ ଥରେ ସିନେମା ଦେଖୁଥିଲା। କିଟ୍ଟୀକୁ ଏହା ଜର୍ଜ ଜୀବନର ସାରକଥା ବୋଲି ମନେହେଲା। ନିଜ ସମ୍ପର୍କରେ ସେ କେବେ ଭାବିନାହିଁ, ତେଣୁ ଅନାବଶ୍ୟକ ବିନୟ ମଧ୍ୟ ତା'ଠାରେ ନଥିଲା। ଅଜାଣତରେ ଜର୍ଜ କିଟ୍ଟୀ ଠାରେ ଏକ ଆଦର୍ଶ ବ୍ୟକ୍ତି ପାଲଟି ଯାଇଥିଲା। କିଟ୍ଟୀ ପ୍ରୟାସପୂର୍ବକ ଯଶଲାଭ କରୁଥିଲା, ଜର୍ଜ ମଧ୍ୟରେ ସ୍ୱାଭାବିକ ଭାବରେ ସେ ଗୁଣ ଥିଲା। କିଟ୍ଟୀ ଏହାର କାରଣ ଭାବିବାକୁ ଲାଗିଲା। ସେ ଦିନ ତହସିଲଦାର ସାହେବ ତାକୁ ଭଲ କର୍ମଚାରୀ ବୋଲି କହୁଥିଲେ; ଜର୍ଜ ସମ୍ପର୍କରେ ଏପରି କଥା ସେ କହି ନାହାନ୍ତି। ତେଣୁ ତା'ର ମନେହେଲା ତା'କାମ ଜର୍ଜର କାମ ଅପେକ୍ଷା ଭଲ। ମାତ୍ର ଏକଥାରେ ସନ୍ତୋଷ ମିଳିଲା ନାହିଁ।

କିଟ୍ଟୀର ଜୀବନକୁ ଜର୍ଜ ସିନେମା ଆଣି ଆସିଲା। ସିନେମା ବିନା ଜର୍ଜକୁ ଜୀବନ ନୀରସ ମନେହୁଏ। ଅତିକମ୍‌ରେ ଦି'ତିନି ଦିନରେ ଥରେ ସିନେମା ଦେଖିବା

ଦରକାର। ତିନିବର୍ଷ ଆଗେ ମନୋରଞ୍ଜନ ବିଭାଗ ତା' ହାତରେ ଥିଲା। ଏବେ ତା' ହାତରୁ ଚାଲିଗଲାଣି। କିନ୍ତୁ ସିନେମା ବାଲାଙ୍କ ଉପରେ ଆଜିସୁଦ୍ଧା ତା'ର ପ୍ରଭାବ ରହିଛି। ଯେତେ ଲୋକଙ୍କୁ ଇଚ୍ଛା ସେ ମାଗଣାରେ ସିନେମା ଦେଖାଇ ପାରେ।

ତାରିସହ କିଟ୍ଟୀ ପ୍ରଥମ ଥର ପାଇଁ ସିନେମା ଗଲା। ଯିବାବେଳେ ସେ ଦୋଦୋ ପାଞ୍ଚ ହେଉଥାଏ। ପ୍ରଥମତଃ ଜର୍ଜର ଆଗ୍ରହ, ତହିଁରେ ପୁଣି ମାଗଣାରେ ସିନେମା ଦେଖା। ସେ ନିଜକୁ ବୁଝାଉଥାଏ ଯେ ନିଜ ପଇସା ସେ ଉଡ଼ାଉ ନାହିଁ। କିଟ୍ଟୀ ପାଇଁ ସିନେମା ଏକ ନୂଆ ଅନୁଭବ। ପିଲାଦିନେ ସେ ଏକ ମୂକଚିତ୍ର ଦେଖି ବିରକ୍ତ ହୋଇ ପଡ଼ିଥିଲା। ସେଇ ତା'ର ଏକମାତ୍ର ଅନୁଭୂତି। କିଟ୍ଟୀର ସରଳ ମନପାଇଁ ସିନେମା ହଲର ଅନ୍ଧାର, ପାଟିତୁଣ୍ଡ, ଗୁଳୁଗୁଳି ସବୁ ଅନୁଭୂତି ନୂଆ। ପାର୍ଶ୍ୱସଙ୍ଗୀତ ତା'ର ହୃଦୟରେ ଘଟଣା ଅନୁକୂଳ ଅନୁଭୂତି ଜାଗ୍ରତ କଲା। ବେଦନାପୂର୍ଣ୍ଣ ଗୀତ ଆସିଲେ କିଟ୍ଟୀ ମନରେ ବହୁତ ଦୁଃଖଜାତ ହେଉଥାଏ। ଭାଷା ହିନ୍ଦୀ ହୋଇଥିବାରୁ ସେ ତା'ର ଅର୍ଥ ବୁଝିପାରୁନଥାଏ। ହିନ୍ଦୀ ଜାଣିଥିବା ଜର୍ଜ ମଝିରେ ମଝିରେ କହି ଦେଉଥାଏ ଯେ ଏ ହେଲା 'ବିଲମୋରିୟା', ଇଏ 'ହୁସ୍ନବାନୁ'। ତାହାଦ୍ୱାରା କିଟ୍ଟୀର ରସାସ୍ୱାଦନରେ ବାଧା ଆସୁଥାଏ। ଚଳଚ୍ଚିତ୍ରର ଏକ ସ୍ଥାନରେ କେତେକ ଗୁଣ୍ଡା ଗୋଟିଏ ତରୁଣୀକୁ ହଇରାଣ କରୁଥିଲେ। ତାଙ୍କର ମୁଖିଆ ତରୁଣୀର ବାଳକୁ ଟାଣି ଧରିଥାଏ। ସାଥୀମାନେ ତା'ର ମୁହଁ ପାଖକୁ ମଶାଲ ଆଣି ପୋଡ଼ିଦେବାକୁ ଧମକାଉଥାନ୍ତି। ସେମାନେ ଯେ କିଏ କିଟ୍ଟୀ ବୁଝିପାରିଲା ନାହିଁ। ହେଲେ ସେଇ ଯୁବତୀର ଦୁଃଖ ଦେଖି ତା'ର ମନ ଦୋହଲି ଗଲା, ହୃଦୟରେ ଶଙ୍କା ଜାତ ହେଲା। ଅଧିକ ଦେଖି ନ ପାରି ମୁହଁ ତଳକୁ ପୋତିଦେଉଥାଏ, ପୁଣି ଦେଖିବାକୁ ଇଚ୍ଛା ହେଉଥିବାରୁ ମୁହଁ ଟେକୁଥାଏ। ଯେତେବେଳେ ସେ କରୁଣ ରସରେ ବୁଡ଼ି ଥାଏ ସେତିକିବେଳେ ଜର୍ଜ ତିନିଥର ବୋରିଂ ବୋରିଂ କହି ତା'ର ରସଭଙ୍ଗ କରିଦେଲା।

ମଧ୍ୟାନ୍ତରରେ ଯେତେବେଳେ ଦିହେଁ ବାହାରକୁ ଆସିଲେ ସେତେବେଳେ ଜର୍ଜ 'ବାଜେଛବି' କହି ଭିତରକୁ ପଶିବାକୁ ନାରାଜ ହେଲା। କିଟ୍ଟୀ ଚିନ୍ତିତ ହୋଇ ପଡ଼ିଲା। ଛବିଟି ଶେଷପର୍ଯ୍ୟନ୍ତ ଦେଖିବା ପାଇଁ ତା'ର ଭାରୀ ଇଚ୍ଛା, ମାତ୍ର ଜର୍ଜର ନିମନ୍ତ୍ରଣରେ ସେ ଆସିଛି। ଶେଷରେ ବାଧ ହୋଇ ତା'ସହ ଘରକୁ ଫେରିଲା।

ଏଇ ଘଟଣା ବାରମ୍ବାର ଘଟିବାକୁ ଲାଗିଲା। ଜର୍ଜ ହୁଟକରି ଅଧାଛବି ଦେଖି ପଳାଇ ଆସେ, ସମ୍ଭବତଃ ଶେଷ ଅଂଶ ଭଲ ହେବ ଭାବି କିଟ୍ଟୀ ଶେଷ ଯାଏଁ ଦେଖେ। ଛବି ଭଲ ହୁଏ ନାହିଁ। ବୋରହୋଇ ରାତି ଦଶଟା ବେଳକୁ ଘରକୁ ଫେରି ମା'ଠୁ ଗାଳିଖାଏ। ମା'କୁ ଦି'ଚାରି ପଦ ଜବାବ ଦିଏ। ଶେଷରେ ବିରକ୍ତ ହୋଇ ଖାଇ ବସେ। ଏମିତି ଘଟଣା ଅନେକଥର ଘଟିଲାଣି। କେଇ ଦିନ ଭିତରେ କିଟ୍ଟୀ ଛବି ଭଲ କି ମନ୍ଦ ବାଛି ଜାଣିଲାଣି। କିନ୍ତୁ ଯେତେ ଯାହାହେଉ ମଝିରୁ ଉଠି ଆସିବା ଇଚ୍ଛାକୁ ସେ ସମର୍ଥନ କରିପାରେ ନାହିଁ। 'ଘରେ ମା' ଏକୁଟିଆ ବାଟ ଚାହିଁ ବସିଥିବ, ତେଣୁ ମୁଁ ସିନେମା ଯିବିନାହିଁ'– ଏ ସିଦ୍ଧାନ୍ତ ସେ କେତେ

ଥର କଲାଣି। ମାତ୍ର ସମୟ ଆସିଲାମାତ୍ରେ ଦୃଢ଼ତା ରହେ ନାହିଁ। ଥରେ ଥରେ ସିନେମାକୁ ନିମନ୍ତ୍ରଣ କରିଥିବା ଜର୍ଜ ଉପରେ ରାଗ ଆସେ। କିନ୍ତୁ କିଛିକ୍ଷଣ ଭାବିଲା ପରେ ତା'ର ନିଜ ଉପରେ ରାଗ ହୁଏ।

ଏଇସବୁ ପ୍ରସଙ୍ଗରୁ କିଟ୍ଟୀ ଜର୍ଜ ଓ ତା' ନିଜ ମଧ୍ୟରେ ଥିବା ପ୍ରଭେଦକୁ ସ୍ପଷ୍ଟ ଦେଖିପାରେ। ଜର୍ଜ ଅନାସକ୍ତ। ଯେଉଁଠାକୁ ତା'ର ଯିବାକୁ ଇଚ୍ଛା ନହୁଏ ସେଠାକୁ ନଯିବା ପାଇଁ ସେ ନିଜକୁ ରୋକି ନେଇପାରେ। ଏଇ ପ୍ରବଳ ଇଚ୍ଛା ଶକ୍ତି ହେତୁ ତା' ଜୀବନରେ ଚିନ୍ତା'ର କାରଣ ବହୁତ କମ୍ ଥିଲା। 'ଆତ୍ମନସ୍ତୁ କାମାୟ ସର୍ବେ ପ୍ରିୟଂ ଭବତି'– ଏ ଜ୍ଞାନ ତା'ର ରକ୍ତରେ ଥିଲା। ଏଇ ନିଶ୍ଚଳବୁଦ୍ଧିର ପରିଣାମ ସ୍ୱରୂପ ବ୍ୟକ୍ତିର ଜଡ଼ତା'ରୁ ବିକଶିତ ହୋଇଥିବା ଜର୍ଜ ଏଇ ବିଶିଷ୍ଟତା ଲାଭ କରିଥିଲା। ପରିସ୍ଥିତି ଅନୁସାରେ କଚେରୀକାମରେ ପଇସା ନେଇ ନେଉଥିଲା। କିନ୍ତୁ ଲୋକଙ୍କୁ ସାଫ୍‌ସାଫ୍ ବତେଇ ଦେବାରେ ତା'ର ଲୁଚାଛପା ନଥାଏ। ସେ ସଫା କହିଦିଏ, 'ଏଇ ହେଲା ପ୍ରୋସିଜିୟୋର, ମୁଁ ବା କ'ଣ କରିପାରିବି ?' ଥରେ ସେ ସାଫ୍‌ସାଫ୍ କହିଦେଲା ପରେ ମଧ୍ୟ ଜଣେ ଲୋକ ପାଞ୍ଚଟଙ୍କାର ନୋଟ୍‌ଟିଏ ଟେବୁଲ ଉପରେ ରଖି ଚାଲିଗଲାରୁ ସେ ଚପରାସୀକୁ ଡ଼ାକି ତା' ପଛରେ ପଠାଇ ପଇସା ଫେରାଇଦେଲା। କେଉଁଥିରୁ କେଉଁଥି ପାଇଁ ତାକୁ ପଇସା ମିଳୁଛି, ଏକଥା ସେ ଠିକ୍ କରି ନ ଜାଣିଲା ଯାଏଁ ଛଦାମଟିଏ ମଧ୍ୟ ନେବାଲାଗି ପ୍ରସ୍ତୁତ ନୁହେଁ। ତା'ର ପଇସାର ଚିନ୍ତା ନଥିଲା। ଘରେ ଅବିବାହିତ ଭଉଣୀଟିଏ ସ୍କୁଲରେ ପଢ଼ାଉଥିଲା। ସେ ନିଜେ ମଧ୍ୟ ରୋଜଗାର କରେ। ଆସନ୍ତା ବର୍ଷକୁ ସାନଭାଇ ମ୍ୟାଟ୍ରିକ୍ ପାଶ୍ କରି ଚାକିରି କରିବ। ବାପା ଚର୍ଚ୍ଚରେ କାମ କରନ୍ତି। ମା' ନାହିଁ। ଘରେ ସଭିଏଁ ଦାୟିତ୍ୱଶୀଳ।

କିଟ୍ଟୀର ଢ଼ିଲମଢ଼ିଲା ସ୍ୱଭାବ ମଧ୍ୟରେ ଏ ନିସ୍ପୃହତା ନଥିଲା। ଘରକୁ ଯେତେ ବି ପଇସା ଆସୁ, ଅଭିଳାଷ ମେଣ୍ଟେ ନାହିଁ। ବେଳେ ବେଳେ ଏକଥା ମଧ୍ୟ ମନେରହେ ନାହିଁ ଯେ ପଇସା କିଏ ଦେଇଛି। କେତେଥର ଦୁଇପକ୍ଷଠାରୁ ପଇସା ମିଳିଲା ପରେ ବିଚାର ନକରି ସେ ପକେଟରେ ପୂରାଇଦେଇଛି। ଅନ୍ୟସମସ୍ତେ ମଧ୍ୟ ଏଇଆ କରନ୍ତି କହି କିଟ୍ଟୀ ମନକୁ ବୁଝାଏ। ମାତ୍ର ଜର୍ଜର ଉଦାହରଣ ଦେଖିଲା ମାତ୍ରେ ତା'ର ମନ ଅଶାନ୍ତ ହୋଇ ଉଠେ। ବାସ୍ତବରେ କିଟ୍ଟୀ ହୁସେନର ଶ୍ରଦ୍ଧାଭାଜନ ଥିଲା ଲୋକଙ୍କ ଆଗରେ ହୁସେନ ପ୍ରାୟତଃ ବାହାଦୂର ଦେଖାଏ ଯେ କୃଷ୍ଣବାବୁଙ୍କୁ ମୁଇଁ ତିଆରି କରିଛି।

ପଇସା ରୋଜଗାର କରୁଥିବା ଲୋକ ଦୁଇ ପ୍ରକାରର ଥାନ୍ତି। ଏକ ପ୍ରକାରର ଲୋକ ଆପଣାର ଅଧିକାର ବଳରେ ପଇସା ନିଏ ଓ ତାକୁ ନିତ୍ୟକର୍ମ ମନେକରି ପକେଟରେ ପକାଇଦେଇ ଯାଏ। ଦ୍ୱିତୀୟ ପ୍ରକାରର ଲୋକ ଲୋଭ ହେତୁ ଯେତିକି ମିଳୁଛି ସେତିକି ପାଇ ଖୁସିରେ ନାଚେ। ପ୍ରଥମଲୋକ ପଇସା ନେଇକରି ଯେପରି ଦେବା ଲୋକର ଉପକାର କରୁଛି। ଦ୍ୱିତୀୟ ଲୋକ ଦେବାଲୋକକୁ ନିଜର ପରିଶ୍ରମ ବିକ୍ରିକରି ଦିଏ। ପ୍ରଥମ ଲୋକ ଧନକୁ ସ୍ୱୀକାର କରି ଯେପରି ଦେବାଲୋକକୁ

କୃତ୍ୟାକୃତ୍ୟ କରେ; ଦ୍ୱିତୀୟ ସ୍ୱୟଂ କୃତଜ୍ଞ ହୁଏ। ଦାନ ଦେବା ଲୋକର ହାତ ସବୁବେଳେ ଉଚ୍ଚ– ଏ କଥା ଦ୍ୱିତୀୟ ପ୍ରକାରର ଲୋକଙ୍କ ପାଖରେ ଠିକ୍। କିନ୍ତୁ ଦାନ ନେଲାପରେ ମଧ୍ୟ ନାକରେ ନାସ ପକାଇଲା ପରି ପ୍ରଥମ ଶ୍ରେଣୀର ଲୋକର ହାତ ଉପରକୁ ରହେ। କିଟ୍ଟୀ ଯଦି ଠିକ୍‌ଭାବରେ କାହାରି କାମ କରିଦେଉଥିଲା, ତେବେ ପରିଶ୍ରମ ରୂପରେ କିମ୍ବା ଉପକାର ରୂପରେ। ମାତ୍ର ଜର୍ଜ ଯଦି କାହାରି କାମ କରିଦିଏ ତାହେଲେ ସେ ଲୋକ ଚିରଦିନ ତାକୁ ମନେରଖେ ଆଉ ତା'ର ସେବା କରିବାକୁ ତିଆର ହୋଇ ରହେ। ଏପରି କାହିଁକି ହୁଏ ଏପ୍ରଶ୍ନ କିଟ୍ଟୀ ମନରେ ଦେଖା ଦିଏ।

ରେଭିନିଉ (ରାଜସ୍ୱ) ବିଭାଗରେ ବୋଲି ନୁହେଁ, ସରକାରଙ୍କର ଯେକୌଣସି ବିଭାଗରେ କାମ କରୁଥିବା ଲୋକ ଆଜି ନହେଲେ କାଲି କାମରେ ଆସିବ। ତେଣୁ ସେମାନଙ୍କୁ ଖୁସି କରିବା ଖାଲି ସିନେମାବାଲାଙ୍କର ନୁହେଁ ବଡ଼ବଡ଼ ସଂସ୍ଥା ଗୁଡ଼ିକ ପାଇଁ ମଧ୍ୟ ଏହା ଆବଶ୍ୟକ ପଡ଼େ। ଏମିତି ବିଭାଗରେ କାମ କରୁଥିବା କର୍ମଚାରୀମାନେ ଏହାକୁ ନିଜର ନ୍ୟାଯ୍ୟ ବୋଲି ମନେକରନ୍ତି।

ଦିନେ ଏକ ରବିବାରରେ କିଟ୍ଟୀକୁ ବଡ଼ ଏକୁଟିଆ ଲାଗିବାରୁ ସିନେମା ଚାଲିଗଲା। ପକେଟରେ ପଇସା ରଖିଥିଲା, ମାତ୍ର ଟିକଟ ଘର ଆଗରେ ପାଞ୍ଚମିନିଟ ଠିଆ ହେବାକୁ ଇଚ୍ଛା ନଥିବାରୁ ବା ପଇସା ଖର୍ଚ୍ଚକରିବାକୁ ଇଚ୍ଛା ନଥିବାରୁ ସେ ସିଧା 'ବକ୍ସ'ର କବାଟ ପାଖରେ ଆସି ଠିଆ ହେଲା। ଏତିକି ବିଶ୍ୱାସ ଥାଏ ଯେ ଜର୍ଜକୁ ସବୁବେଳେ ସଲାମ ମାରୁଥିବା ଗେଟ କିପର ତାକୁ ସଲାମ ନକରୁ ପଛକେ ଭିତରକୁ ଯିବାକୁ ଦେବହିଁ ଦେବ। ସବୁ ଟିକଟ ଥିବା ଲୋକ ଭିତରକୁ ଯିବାପରେ ସେ ମଧ୍ୟ ଭିତରକୁ ପଶିବାକୁ ଯିବାରୁ ଗେଟ କିପର ଧମକ୍‌ଦେଇ ପଚାରିଲା 'ଟିକଟ ?' କିଟ୍ଟୀ ଟିକିଏ ହତଭମ୍ବ ହୋଇ ପଡ଼ିଲା। ଜର୍ଜର ନାଁ ଧରିବାଟା ଠିକ୍ ହେବ ନାହିଁ ବୋଲି ସେ ଭାବିଲା। ବଟୁଆ ବାହାର କରି ଖୋଜିବା ବାହାନା କରି 'ଆରେ କେଉଁଠି ପଡ଼ିଗଲା କହି' ଭଟର ଭଟର ହୋଇ ଫେରି ଆସିଲା। ଗେଟ କିପରର ଉଚ୍ଛୁଳା ହସ ତା'ର ଛାତିକୁ ଫଟାଇ ପିଠି ଦେଇ ବାହାରିଗଲା। ଦ୍ୱିତୀୟଥର ସିନେମାର ସୀମା ନମାଡ଼ିବା ପାଇଁ ସ୍ଥିର କଲା। ପରଦିନ ଜର୍ଜ ଡ଼ାକିବାରୁ ପୁଣି ଯିବାକୁ ଇଚ୍ଛାହେଲା। ଆଜି ସେଇ ଗେଟକିପର କଣ କହିବ, ତାହା ସେ ଦେଖିବାକୁ ଚାହୁଁଥିଲା। ଏଥର ଗେଟ କିପର ତା'ର ଅସ୍ତିତ୍ୱକୁ ଧ୍ୟାନ ଦେଲା ନାହିଁ। ଫଳରେ କିଟ୍ଟୀ ବଡ଼ ନିରାଶ ହେଲା।

ଚା' ଜଳଖିଆ ବିଷୟରେ ଜର୍ଜ ଭାରି ନିୟମ ମାନି ଚଳିବା ଲୋକ। କଚେରୀରେ ପ୍ରତିଦିନ ସନ୍ଧ୍ୟା ଚାରିଟା ବେଳକୁ ଥରେ ଚା' ପିଏ ଦରକାର ପଡ଼ିଲେ କେବେକେବେ ଦି'ଟା ବେଳେ କିଛି ଖାଏ, ନହେଲେ ନାହିଁ। କଚେରୀ ଆସୁଥିବା ଲୋକଙ୍କ ସଙ୍ଗେ କେବେ ହୋଟେଲ ଯାଏନାହିଁ। ଲୋକେ ଏହାକୁ ବେଶ୍ ଭଲ ନିୟମଟିଏ ବୋଲି କହନ୍ତି, ମାତ୍ର ଜର୍ଜ ପାଇଁ ଏହା କୌଣସି ବିଶେଷ ସିଦ୍ଧାନ୍ତ ନୁହଁ; ସମସ୍ତଙ୍କ ସହ

ବସାଉଠା କରିବାର ଇଚ୍ଛା ତା'ର ନଥିଲା।

ପହିଲେ ବନ୍ଧୁତା ହେଲାବେଳେ କିଟ୍ଟୀ ନିଜସହ ଚା' ଖାଇବା ପାଇଁ ଜର୍ଜକୁ ଯୋରକଲା। ଅଧଘଣ୍ଟା ଆଗରୁ ଚା' ପିଇ ସାରିଥିବାରୁ ଜର୍ଜ ନାଚାର ହୋଇ ପଡ଼ିଲା। ତା'ର ସଖ୍ୟହିଁ କେବଳ ଦରକାର ଏଇ ଆଗ୍ରହ ଦେଖାଇ କିଟ୍ଟୀ ତାକୁ କ୍ୟାଣ୍ଟିନକୁ ଟାଣି ନେଇଗଲା। ସେଠାରେ ପହଞ୍ଚି ତା'ର ବାରଣ ସତ୍ତ୍ୱେ ଦି'କପ୍ ସ୍ପେଶାଲ ଚା' ଅର୍ଡ଼ର ଦେଲା। ତା'ର ବିଶ୍ୱାସ ଥିଲା ଚା' ଆଣି ରଖିବା ପରେ ଜର୍ଜ ନିଶ୍ଚୟ ରାଜି ହୋଇଯିବ। ଚା' ଆସିଲା, ମାତ୍ର ଜର୍ଜ ରାଜି ହେଲା ନାହିଁ। ସ୍ପେଶାଲ ଚା' ହୋଇଥିବାରୁ ଫେରାଇ ଦେବାକୁ କିଟ୍ଟୀର ଇଚ୍ଛା ହେଲା ନାହିଁ। ଦ୍ୱିତୀୟ କପଟି ନ ପିଇ ପଇସା ଦେବାକୁ ମଧ୍ୟ ମନ ହେଲାନାହିଁ। ଫଳରେ କିଟ୍ଟୀ ଦି'କପ୍ ଯାକ ଚା' ନିଜେ ପିଇଲା। ଜର୍ଜର ଜିଦ୍‌ଖୋର ସ୍ୱଭାବ ପାଇଁ ଅନେକଥର କିଟ୍ଟୀର ମନରେ କ୍ରୋଧ ଜାତହୁଏ, ମାତ୍ର ତା' ସହ ଏହା ମଧ୍ୟ ଭାବେ ଯେ ସେ ନିଜେ ଯଦି ଜିଦ୍ ନ ଧରନ୍ତା ତେବେ କଥା ବଢ଼ନ୍ତା ନାହିଁ।

ପାଟି ଟକଳାପଣ ଯୋଗୁଁ ଘରେ ଖାଇବା ମୁସ୍‌କିଲ ହୋଇ ପଡ଼ିଲା। ପ୍ରତିଦିନ କରେରୀରେ ତିନିଚାରିଥର ଜଳଖିଆ ଚାଲେ, ଆଉ ପ୍ରତ୍ୟେକଥର କିଟ୍ଟୀ ଜଳଖିଆର ଯଥାଯଥ ସଦ୍ ବ୍ୟବହାର କରେ। ସେ ଚାହେଁ ଜର୍ଜ ତାକୁ ଆପଣାର ନୀତି ବୁଝାଇବ ଓ କିଟ୍ଟୀ ଆପଣାର ମତ ବ୍ୟକ୍ତ କରିବ। ଜର୍ଜ ହୁଏତ ସେ ଦିଗରେ ଧ୍ୟାନହିଁ ଦିଏ ନାହିଁ। ଅଥବା ତା' ବିଚାରରେ ପ୍ରତିଲୋକର ନିଜସ୍ୱ ମତଥିବା ଦରକାର। ତେଣୁ ଜର୍ଜ ଏ ବିଷୟରେ କେବେ କଥା ହୁଏ ନାହିଁ। ଶେଷରେ କିଟ୍ଟୀହିଁ ବିରକ୍ତ ହୋଇ ତାକୁ ପଚାରିଲା। ଶୁଣି ଜର୍ଜ କେବଳ ଏତିକି କହିଲା, 'ଜୀର୍ଣ୍ଣ କରିବା ପ୍ରକ୍ରିୟା ଖରାପ ହୋଇ ଯାଏ।'

କିଟ୍ଟୀ ନିଜେ ଏକଥାର ଏକ ସମାଧାନ ବାହାର କଲା। 'ଘରେ ଦିବ୍ୟ ମଣୋହି ମିଳୁଛି, ତାକୁ ଲୁଣି ନିମିକି ରୁଚିବ କୁଆଡୁ।'

ରବିବାର ଦିନ କିଟ୍ଟୀକୁ ଭାରି ଖରାପ ଲାଗେ। ସେ ଦିନ କଚେରୀ କ୍ୟାଣ୍ଟିନ୍ ବନ୍ଦ, ଆମଦାନୀ ବନ୍ଦ, ମୁଫତ୍ ପରାମର୍ଶ ବନ୍ଦ। ଗୋଟିଏ ରବିବାରରେ କିଟ୍ଟୀ ଘରପାଖ ଏକ ପରିଚିତ ହୋଟେଲକୁ ଗଲା। ବେହେରା ସ୍ପେଶାଲ ଚା' ଆଣି ଦେବାରୁ କିଟ୍ଟୀ କହିଲା, 'ଖଣ୍ଡେ ନିମିକି ଆଣ୍।' କିଟ୍ଟୀ ସାହେବ ହେଲେ ବେହେରାର କ'ଣ ଯାଏ ? ସେ ଜୋର ଦେଇ ପଚାରିଲା, 'ଗୋଟେ ପ୍ଲେଟ ନିମିକି ?' କିଟ୍ଟୀ କହିଲା, 'ନାଁରେ, ଚାହାପାଇଁ ଖଣ୍ଡେ ଆଣ।' ବେହେରା ସିଧା ହୋଟେଲ ମାଲିକ ପାଖକୁ ଯାଇ ବଡ଼ ପାଟିରେ କହିଲା, 'ସେ ସାହେବଙ୍କର ଚାହାସହ ଟିକିଏ ନିମିକି ଦରକାର।' ଉପସ୍ଥିତ ସଭିଏଁ କିଟ୍ଟୀ ଆଡ଼େ ଚାହିଁଲେ। ମାଲିକ ହସି କହିଲେ, 'ଦେଇ ଦେ' କିଟ୍ଟୀ ଆଗରେ ନିମିକି ଆସି ରହିଲା, ମାତ୍ର ତା'ର ସ୍ୱାଦୁ ବିସ୍ୱାଦୁ ହୋଇଗଲା।

ସୁଖ ଯଦି ଦରକାର ତେବେ ଲାଜ ଛାଡ଼ିବାକୁ ପଡ଼ିବ – ଏ ତତ୍ତ୍ୱକୁ ପ୍ରତ୍ୟକ୍ଷ

ବ୍ୟବହାରରେ ଲଗାଇବା ଏତେ ସହଜ ନୁହେଁ।

ଜର୍ଜର ସାଙ୍ଗସାଥୀ କମ୍। ସେ କିଟୀକୁ ବହୁତ ଭଲପାଏ। ଯେତେ ତାଙ୍କର ବନ୍ଧୁତା ବଢ଼ିଲା, ତହୁଁ ଜର୍ଜ ମନରେ ନିଜର ପ୍ରେମିକା ସହ କିଟୀର ପରିଚୟ କରାଇ ଦେବାର ପ୍ରବଳଇଚ୍ଛା ଜାତହେଲା। ବିବାହ କରିବା ପାଇଁ ସେ କଥା ସ୍ଥିରକରି ନାହିଁ, ତଥାପି ମନରେ ଇଚ୍ଛା ଅଛି। ମିତ୍ରତା ଗଭୀର ହେବାରୁ ଏ ଇଚ୍ଛା ଆଉରି ବଳବତୀ ହୋଇ ଉଠିଲା।

ଜର୍ଜର ଜୀବନରେ ତା'ର ପ୍ରେୟସୀ ଏକ ବଡ଼ ବିଜୟ। ସାରା ଜଣେ ପାଦ୍ରୀଙ୍କର ଝିଅ। ଏ ସହରର ପ୍ରଟେଷ୍ଟାଣ୍ଟମାନଙ୍କ ମଧ୍ୟରେ ସେ ସବୁଠୁ ସୁନ୍ଦରୀ। ସେ ଷଷ୍ଠ ଷ୍ଟାଣ୍ଡାର୍ଡ଼ରେ ପଢ଼ୁଛି। ଆସନ୍ତା ବର୍ଷ ମ୍ୟାଟ୍ରିକ୍ ପାଶ କରି ଚାକିରି କରିବ। ତେଣୁ ତା'ର ମହତ୍ତ୍ୱ ଦି'ଗୁଣ। ତା' ପାଇଁ କେତେ ବର ତା'ବାପାଙ୍କୁ ଅନୁରୋଧ କରିସାରିଲେଣି। ସେମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି ମାଙ୍ଗାଲୋର ଆଡ଼ର ଜଣେ ପାଦ୍ରୀ। ମାତ୍ର ଏଇଠି ବଡ଼ ହୋଇଥିବାରୁ ପାଦ୍ରୀ ମୂଳରୁ ଜର୍ଜ ବିଷୟରେ ଜାଣିଥିଲେ। ଦିନେ ସେ ଜର୍ଜକୁ ଡ଼ାକି ବିବାହ ବିଷୟରେ ତା'ର ମତାମତ ଜାଣିବାକୁ ଚାହିଁଲେ। ସ୍ୱପ୍ନରେ ସୁଦ୍ଧା ଦେଖି ନଥିବା ଏଇ ଅଲଭ୍ୟ ଲାଭ ପାଇ ଜର୍ଜର ପରିବାରର ସୁଖର ସୀମା ରହିଲା ନାହିଁ। ମାଙ୍ଗାଲୋରର ପାଦ୍ରୀର ପ୍ରସ୍ତାବକୁ ଏଡ଼େଇ ଦେଇ ଜର୍ଜକୁ ଝିଅଦେବା ପାଇଁ ନିଜେ ପ୍ରସ୍ତାବ ଦେବାଟା ଜର୍ଜର ପରିବାର ପାଇଁ ଆଉ ଅତିରିକ୍ତ ଗର୍ବ କଣ ହୋଇପାରେ।

ସାରା ଖୁସି ହୋଇ ଏ ବିବାହରେ ସମ୍ମତି ଦେଇଥିଲା। ଏହାରି ସହିତ ହିଁ ଦେଢ଼ବର୍ଷର ଦୁର୍ଲଭ କୋଟସିପ୍ ପାଇଁ ଗରିବକୁ ସୁଯୋଗ ମିଳିଥିଲା। ସାରାର ସୌନ୍ଦର୍ଯ୍ୟ ବିଷୟରେ ଜର୍ଜର ବଡ଼ ଅଭିମାନ ଥିଲା। ତା'ର ବଂଧୁ ଅଳ୍ପ। କିଟୀସହ ତା'ର ବନ୍ଧୁତା ଗଭୀର ହେବାରୁ ସାରା କଥା ତାକୁ କହିବାକୁ ସେ ଆତୁର ହୋଇ ପଡ଼ିଲା। ଦିନେ ସେ ନିଜକୁ ରୋକି ନପାରି କିଟୀକୁ କହିଲା, 'ମୋର ବିବାହ ଆସନ୍ତା ବର୍ଷ ହେବ। ପାଦ୍ରୀଙ୍କ ଝିଅ ସହ। ଠିକ୍ ହୋଇଯାଇଛି। ସେ ଭାରି ସୁନ୍ଦରୀ। ଦିନେ ପାଦ୍ରୀଙ୍କ ଘରକୁ ଗଲେ ତୁମ ସହ ତା'ର ପରିଚୟ କରାଇ ଦେବି', କହି ଆମନ୍ତ୍ରଣ କଲା। ସେଇ ସୁନ୍ଦରୀକୁ ଦେଖିବାପାଇଁ କିଟୀର ଇଚ୍ଛା ହେଲା। କିନ୍ତୁ ଅପରିଚିତ ପାଦ୍ରୀଙ୍କ ଘରକୁ ଯିବା ପାଇଁ ତାକୁ ସଙ୍କୋଚ ଲାଗିଲା। କିଟୀ ଅନେକ ବିଷୟରେ ଛୁଆଁ ଛୁଇଁ ବାରଣ ନ ମାନିଲେ ହେଁ ଖ୍ରୀଷ୍ଟିଆନ ଘରେ ଜଳଖିଆ ଖାଇବା କଥାରେ ତା'ର ଭାରି ଭୟ। ଘରକୁ ଗଲେ ଜର୍ଜ ବହୁତ ବଳେଇଲେ ସେ କେବଳ କପେ ଚା ପିଏ। ଏ ଦି' ତିନିଥର ସେ ବାହାନା କରି ବଞ୍ଚିଯାଇଛି। ମାତ୍ର ଜର୍ଜ ଆଉ ଏକ ପନ୍ଥା ବାହାର କଲା।

ଦିନେ ଦିହେଁ ସିନେମା ଗଲେ। ସେଠାରେ ସାରା ଏମାନଙ୍କ ବାଟ ଚାହିଁ ମହିଳା ସିଟ୍‌ରେ ବସିଥାଏ। ଏମାନଙ୍କୁ ଦେଖି ପାଖକୁ ଆସିଲା। ଜର୍ଜ ପଚାରିଲା 'ବହୁତ ସମୟ ଅପେକ୍ଷା କଲ ? ଏହା ଶୁଣି ସେ କହିଲା 'ନାଇଁତ।' ଜର୍ଜ କିଟୀସହି

ତା'ର ପରିଚୟ କରାଇ ଦେଲା, 'ଇଏ ହେଲେ କୃଷ୍ଣଜୀ କୁଲକର୍ଣ୍ଣି। ମୋର କଲିଗ (ସହକର୍ମୀ)। ଆଉ ଇଏ ସାରା ଡ଼ି'ସୁଜା, ମୋର ବାଗଦତ୍ତା।' କିଟ୍ଟୀକୁ ଭାରୀ ଲାଜ ଲାଗିଲା, ତା'ର ମାଟିରେ ମିଶିଯିବାକୁ ଇଚ୍ଛା ହେଲା। ତିନିହେଁ ଚା' ଦୋକାନକୁ ଗଲେ। ଚା' ବିସ୍କୁଟ ଖାଇଲେ। ସାରାକୁ ଜର୍ଜ ନିଜ ବନ୍ଧୁ ବିଷୟରେ କହିସାରିଥିଲା। ସାରା ପାଖରେ ପହଞ୍ଚି ଜର୍ଜ ବୁଝିପାରିଲା ନାହିଁ କ'ଣ କଥା ହେବ। ସେ ଏକ ଉପାୟ ଚିନ୍ତାକଲା। ସାରା ସକଳ ଧ୍ୟାନ ଜର୍ଜର ଲଜ୍ଜାଶୀଳ ବନ୍ଧୁଟି ଉପରେ ଥାଏ। ସାରା ବିଷୟରେ ଅନେକ କଥା ଜର୍ଜର କିଟ୍ଟୀକୁ କହିବାକୁ ଅଛି। ସେ ସାରାର ବାପାଙ୍କ ବିଷୟରେ, ସ୍କୁଲରେ ତା'ର ପାରଗତା ବିଷୟରେ, ତା'ର ଘରକରଣା 'ଏମ୍ବ୍ରୋୟଡ଼ରୀ' ରୁଚି ଇତ୍ୟାଦି ବିଷୟରେ ସୁବିସ୍ତାର କହିଲା। ସାରା ହାତରେ ପିନ୍ଧିଥିବା ନିର୍ବନ୍ଧ ମୁଦିଟିକୁ ଦେଖାଇ ସେ କିପରି ପଥରଟି ପାଇ ପାରିଲା, କେମିତି ତା'ର ଡ଼ିଜାଇନ ନିଜେ ବାଛିଲା, କେଉଁଠି ଗଢ଼ାଇଲା ଇତ୍ୟାଦି ଇତ୍ୟାଦି ସବୁ ବର୍ଣ୍ଣନା କଲା। ମଝିରେ ମଝିରେ ସାରା ଚୁପ୍‌ଚାପ୍ କିଟ୍ଟୀର ପ୍ଲେଟକୁ ବିସ୍କୁଟ ଦେଇ ଦେଉ ଥାଏ। ସାରା ଦେଉଛି, ତା'ର ମାନ ରକ୍ଷା କରି କିଟ୍ଟୀ ଖଣ୍ଡେ ଦି' ଖଣ୍ଡ ବିସ୍କୁଟ ନେଲା।

ସାରାର ସୌନ୍ଦର୍ଯ୍ୟ ବିଷୟରେ ଜର୍ଜ କିଟ୍ଟୀକୁ ଯେତେ ବେଶୀ କହିଥିଲା, କିଟ୍ଟୀ ସେତେ ସୌନ୍ଦର୍ଯ୍ୟ ଦେଖିପାରିଲା ନାହିଁ। ଏହା ସତ ଯେ ସ୍ୱାସ୍ଥ୍ୟ ଓ ହସ ଖୁସି ଭାବ ହେତୁ ତା'ର ମୁହଁ ଉପରେ ଏକପ୍ରକାର କାନ୍ତି ଲାଗିରହିଛି। ମୁହଁ ଲମ୍ବାଳିଆ ହୋଇ ଥିବାରୁ ଏବେ ବି ପିଲାଳିଆ ଦିଶୁଛି। ସେ ଦିନ ସେ ହଳଦିଆ ରଙ୍ଗର ଫ୍ରକ୍ ପିନ୍ଧିଥାଏ। ମୁଣ୍ଡରେ ଲାଲରିବନ ବନ୍ଧା। ଆଠ ଦଶଟି ହେୟାର ପିନ୍ କୋଣାକୋଣି ଭାବରେ ବାଳରେ ମରା ହୋଇଥାଏ। କେବଳ ପଚାରିବା କଥାର ହିଁ ସେ ଜବାବ ଦେଉଥାଏ ଓ ବାକି ସମୟତକ ଜର୍ଜର କଥାରେ ସମ୍ମତ ସୂଚକ ସ୍ମିତହସ ମୁହଁରେ ଟାଣି ବସି ରହୁଥାଏ।

ସିନେମା ଯିବାଲାଗି ସାରା ରାଜି ହେଲା ନାହିଁ। ଅନ୍ୟ କେଉଁ ସହରକୁ ପରୀକ୍ଷା ସଂକ୍ରାନ୍ତରେ ତା'ର ବାପାଙ୍କର ଯିବାର ଥାଏ। ତେଣୁ ରାତିପାଇଁ ସହଳ ରାନ୍ଧିବାକୁ ପଡ଼ିବ। ସେ ଘରର ଗୃହିଣୀ। ପାଦ୍ରୀଙ୍କ ସ୍ତ୍ରୀ ମରିବାର ଛଅ ବର୍ଷ ହୋଇଗଲାଣି। ବିବାହପରେ ଜର୍ଜ ପାଦ୍ରୀଙ୍କ ସହ ରହିବା କଥା। ସଙ୍ଗେ ସଙ୍ଗେ ସାରାକୁ ଘରକୁ ପଠାଇ ଦେବାକୁ ଜର୍ଜର ଇଚ୍ଛା ହେଲା ନାହିଁ। କିଣାକିଣି ପାଇଁ ତାକୁ ବଜାରକୁ ନେଇଗଲା। ବର୍ତ୍ତମାନ କିଟ୍ଟୀ ଅସୁବିଧାରେ ପଡ଼ିଲା।

ବର୍ତ୍ତମାନ ସେମାନଙ୍କୁ ଛାଡ଼ିଦେଇ ଚାଲିଯିବାଟା ତା'ର ଠିକ୍ ମନେହେଲା ନାହିଁ। ସେମାନଙ୍କ ସହ ଯିବାକୁ ତାକୁ ଲାଜ ଲାଗୁଛି। ତେଣୁ ହାତେ ଛାଡ଼ି ସେମାନଙ୍କ ପଛେ ପଛେ ଚାଲିଲା। ସାରା ଓ ଜର୍ଜ ବୁଝିପାରିଲେ ନାହିଁ ଯେ ସେମାନେ କ'ଣ କଥା ହେବେ। କଥାବାର୍ତ୍ତା ମଝିକୁ କିଟ୍ଟୀକୁ ଟାଣି ଆଣିବା ମଧ୍ୟ କଷ୍ଟକର। ଏମିତି ଭାବରେ ମନେହେଲା ରାସ୍ତାରେ ଏକ ମୂକାଭିନୟ ଚାଲିଲା।

ଦୋକାନରୁ ସାରା ପାଇଁ ରିବନ, ରୁମାଲ, ଲେସ ଏବଂ ପାନିଆ ଆଦି ଛୋଟ ଛୋଟ ଜିନିଷ କିଣା ହେଲା । ସେ ସବୁକୁ ଏକ କାର୍ଡ଼ବୋର୍ଡ଼ ଡ଼ବାରେ ରଖି ରିବନରେ ବାନ୍ଧି ଜର୍ଜ ସାରାକୁ ଘର ପର୍ଯ୍ୟନ୍ତ ପହଞ୍ଚାଇ ଦେବାକୁ ବାହାରିଲା । ଏବେ ଏ ଶୋଭାଯାତ୍ରା ପଛରେ ଯିବାଟା ଠିକ୍ ହେବ ନାହିଁ ଭାବି ପରିବା କିଣିବା ବାହାନା କରି କିଟ୍ଟୀ ସେମାନଙ୍କଠାରୁ ଅଲଗା ହୋଇଗଲା ।

ସେ ଦିନ ନିଦରେ ସେ ଅନେକ ସ୍ୱପ୍ନ ଦେଖିଲା । ରତ୍ନାକୁ ସେ ଏଇପରି ସାରା ସହର ବୁଲାଇଲା, ସିନେମା ଗଲା, ଦୋକାନରେ ଚୂଡ଼ି ପିନ୍ଧାଇଲା ଇତ୍ୟାଦି ଇତ୍ୟାଦି । ସାରାର ସୌନ୍ଦର୍ଯ୍ୟରେ ମୁଗ୍ଧ ଜର୍ଜ ଯଦି ରତ୍ନାକୁ ଦେଖିବ, ତେବେ କେଜାଣି କ'ଣ କହିବ ! ଏମିତି ମୂର୍ଖତାପୂର୍ଣ୍ଣ ଚିନ୍ତା ତା' ମନକୁ ଆସିଲା । ନିଦ ଆସୁଆସୁ ବାରଟା ବାଜିଗଲା ।

ସୌନ୍ଦର୍ଯ୍ୟ ଶବ୍ଦର ପ୍ରୟୋଗ ଜର୍ଜ ଯେଉଁ ଅର୍ଥରେ କରିଥିଲା ତାକୁ ବୁଝିବା ପାଇଁ କିଟ୍ଟୀକୁ ଏବେ ବି ଅନେକ ସମୟ ଲାଗିବ ।

# 14. କିଟ୍ଟୀର ପ୍ରଣୟ

ରାଘସ୍ତାର ଘର କିଟ୍ଟୀର କଚେରୀ ପାଖରେ। ଘରକୁ ଆସି ଟା ଜଳଖିଆ ଖାଇବା ପାଇଁ ରାଘସ୍ତା କିଟ୍ଟୀକୁ ସ୍ଥାୟୀ ନିମନ୍ତ୍ରଣ କରିଥିଲେ ସୁଦ୍ଧା କିଟ୍ଟୀ ନିମନ୍ତ୍ରଣର ସଦ୍‌ବ୍ୟବହାର କରିନାହିଁ। ସେଥିପାଇଁ ଦୀପାବଳୀ ସମୟରେ ''ନରକ ଚତୁର୍ଦ୍ଦଶୀ'' ଦିନ ଆଦର କରି ଜଳଖିଆ ଖାଇବା ପାଇଁ ତାକୁ ଡ଼ାକିଲା। ସେ ଦିନ କିଟ୍ଟୀ ବ୍ୟତୀତ ଆଉ କାହାକୁ ଡ଼କାହୋଇନଥାଏ। ମାତ୍ର ପାଖ ପଡ଼ୋଶୀ ବାର ତେର ଜଣ ଝିଅ ଦଳ ବାନ୍ଧି ରତ୍ନାର ବରକୁ ଦେଖିବାଲାଗି ଟାକି ରହିଥାନ୍ତି। ଏଇ ପ୍ରମିଳାରାଜ୍ୟରେ କିଟ୍ଟୀର ଅନେକ ସୁଖକର ଅନୁଭୂତି ଲାଭହେଲା। ଝିଅମାନେ ତା'ସହ ଏପରି ବ୍ୟବହାର କଲେ ଯେପରି ରତ୍ନାର ବିବାହ କିଟ୍ଟୀ ସହ ସ୍ଥିର ହୋଇଯାଇଛି। ସେମାନଙ୍କ ମଧ୍ୟରୁ ମୋଟାସୋଟା ପୁରୁଷେ ଉଁଚା ପ୍ରଗଲଭା ଝିଅଟି କିଟ୍ଟୀକୁ ବହୁତ ହଇରାଣ କଲା। କିଟ୍ଟୀ ବୈଠକରେ ବସିଥିବା ବେଳେ ସେ କନ୍ୟାସେନା ସହ ଦୁଆର ମୁହଁରେ ଭିଡ଼ କରି ଠିଆ ହୋଇ ଆଖିତରାଟି କିଟ୍ଟୀକୁ ଦେଖୁଥାଏ ଓ ଅନ୍ୟମାନଙ୍କୁ ଚିମୁଟି ଇଙ୍ଗିତ କରୁଥାଏ। ପ୍ରଗଲ୍‌ଭା ଗୋଦାବରୀ ପାଦେ ଆଉରି ଆଗେଇଲା। ନିଜର ଅସାମାନ୍ୟ ଲମ୍ବା ଓ ମଜବୁତ୍ ହାତରେ ରତ୍ନାର ହାତକୁ ଧରି ଟାଣିଟାଣି ବୈଠକର ଦ୍ୱାର ମୁହଁକୁ ନେଇ ଆସି କହିଲା, ଆପଣ ରାଗିବେ ନାହିଁ। ଇଏ ଆପଣଙ୍କୁ ଭଲ କରି ଦେଖି ନାହିଁ। ତେଣୁ ମୁଁ ଭିଡ଼ି କରି ଆଣିଛି। ଏଇ ଟଣାଓଟରା ଓ ପରିହାସ ଭିତରେ ରତ୍ନାର ଗାଲ, ଲାଲ ପଡ଼ିଗଲା, ଆଖି ଛଳ ଛଳ ହୋଇ ଉଠିଲା ଓ ବିନ୍ଦୁଏ ଲୁହ ଆଖିକୋଣରେ ଜକେଇ ଉଠି ଝରିଯିବାକୁ ବସିଲା। ସେ କିଟ୍ଟୀ ଆଡ଼େ ଥରେ ଚଞ୍ଚଳ ଦୃଷ୍ଟିଢ଼ାଳି 'ଛାଡ଼ ଛାଡ଼' କହି ହାତଛିଞ୍ଚାଡ଼ି ପଳାଇବାକୁ ବସିଲା। ଷୋଳବର୍ଷ ହୋଇଯାଇଥିଲେ ହେଁ ଗୋଦାବରୀର ବିବାହ ହୋଇ ନଥାଏ। ମାତ୍ର ସେ ବିଷୟରେ ତା'ର କୌଣସି ଚିନ୍ତା ନାହିଁ। ତା'ର ପିଲାଳିଆମୀ ଏବେ ବି ଯାଇନଥାଏ। ଅନ୍ୟର ବିବାହ ବ୍ରତଘରେ ତା'ର ଦୃଷ୍ଟାମୀ ଆଉରି ବଢ଼ିଯାଏ।

ସାଢ଼େ ଆଠ ବାଜିଲାଣି; ତଥାପି କିଟ୍ଟୀ ପାଇଁ ସଜଡ଼ା ହୋଇ ଥିବା ବନ୍ଦାପନା ଏଯାଏଁ ହୋଇ ନାହିଁ। ରାଘସ୍ତା ଆସିବା ମାତ୍ରେ ବନ୍ଦାପନା ଆରମ୍ଭ ହେଲା। 'ତୁ ଏ ପଟେ ଆ, ତୋ'ରି ହାତରେ ବନ୍ଦାପନା କରାଇ ଦେବି' କହି ଗମ୍ଭୀର ପ୍ରତିଜ୍ଞା କରି ଗୋଦାବରୀ ଲାଜରେ ପଳାଉଥିବା ରତ୍ନା ପଛରେ ଗୋଡ଼ାଇଲା।

ରତ୍ନା ନାରାଜ ହେଲା। ଗୋଦାବରୀ ଚିମୁଟି ଦେଲା। ଘରଭିତରୁ ମା' ଝିଅର ପକ୍ଷ ନ ନେଇ ରାଗିକରି କହିଲା, 'ଯାଉନୁ, ସାଙ୍ଗମାନେ ଡ଼ାକୁଛନ୍ତି। ତୁତ ଘରର ଝିଅ।' ନାଚାର ହୋଇ ରତ୍ନା ବନ୍ଦାପନା ଥାଳି ନେଇଆସିଲା। ସାଙ୍ଗରେ ଗୋଦାବରୀ ଆରତୀ ଗୀତ ଗାଇବା କଥା ଉଠିଲା ମାତ୍ରେ ଗୋଦାବରୀ କନ୍ୟା-ସେନାଙ୍କୁ କଡ଼ା ନିର୍ଦ୍ଦେଶ ଦେଲା, 'ଏଇ, ତୁମମାନଙ୍କ ଭିତରେ କେହି ଗୀତ ଗାଇବ ନାହିଁ। ରତ୍ନା ଗାଇବ।' ସବୁ ନୀରବ ହୋଇଗଲା 'ମୁଁ ଗାଇବି ବୋଲି ହିଁ ଏ ନୀରବତା'—ଏହାଭାବି ରତ୍ନାକୁ ଗାଇବାକୁ ପଡ଼ିଲା। ସେ ମହବୁବ୍‌ଠାରୁ ଶିଖିଥିବା 'କୃଷ୍ଣ ନୀନୁ ବେଗନେ ବାରୋ' ଗୀତଟି ଗାଇଲା। ମହବୁବର ଶିକ୍ଷା ପଦ୍ଧତି ଅନୁସାରେ ଅଥବା ମୂଳପଦ୍ଧତି ଅନୁସାରେ 'କୃଷ୍ଣ' ଶବ୍ଦର ପୂରା ପ୍ରୟୋଗ କେବଳ ପଲ୍ଲବୀରେ ହୁଏ, ଶେଷରେ 'ନା' ରହିଯାଏ। ପଲ୍ଲବୀ ଧରିଲା ମାତ୍ରେ ଗୀତରେ ମୋତେହିଁ ସଂବୋଧନ କରୁଛିଭାବି କିଙ୍ଗୀ ତଳକୁ ମୁହଁ ପୋତିଦେଲା। ସଖୀଗଣ ଏହାର ଅର୍ଥ ବାହାର କରି କଳକଳ କରି ହସି ଉଠିଲେ। ପ୍ରଥମେ ରତ୍ନା ନଜାଣି ଗାଇ ଚାଲିଥିଲା। ଦ୍ୱିତୀୟ ପଦ ଦ୍ୱିତୀୟଥର ଗାଇଲାବେଳେ ଏକଥା ବୁଝିପାରି ଅପ୍ରସ୍ତୁତ ହୋଇ ପଡ଼ିଲା। ଲାଜରେ ତା'ର ମୁହଁ ଲାଲ ପଡ଼ିଗଲା; ଥରଥର କଣ୍ଠରେ ଆଗକୁ ଗାଇଲା, ମାତ୍ର ଏଥର ପଲ୍ଲବୀ ଗାଇ ପାରିଲା ନାହିଁ। 'କୃଷ୍ଣ' ପୂରା କହିପାରିଲା ନାହିଁ, ହସି ମୁହଁ ବୁଲାଇ ନେଲା। ଝିଅମାନଙ୍କର ଦଳ ହସି ହସି ଲୋଟରା କୋଟରା ହୋଇ ପଡ଼ିଲେ।

ଲାଜରେ କିଙ୍ଗୀ ବୈଠକର ଅନ୍ୟପଟକୁ ଦୃଷ୍ଟି ଫେରାଇ ନେଲା। ସେପଟେ ଆନନ୍ଦାଶ୍ରୁପ୍ଲୁତ ସହସ ମୁହଁଟିଏ ତା'ରି ଆଡ଼କୁ ଚାହିଁଥିବାର ଦେଖିଲା। ସେ ମୁହଁ ଚମ୍ପକାର।

ଜଳଖିଆ ଖାଇବାକୁ ବସିଲାରୁ ଗୋଦାବରୀ ଲଙ୍କା ଦିଆ 'ଗୁଁଝିୟାଁ'* ସହ ଭଲ 'ଗୁଁଝିୟାଁ' ମିଶାଇ କିଙ୍ଗୀକୁ ପରସି ଦେଲା। ହାସପରିହାସ ପ୍ରକାଶରେ ଅକୁଣ୍ଠିତ କିଙ୍ଗୀ ଆଉ ଗୋଟିଏ ସୁଯୋଗ ଦେଇ ବସିଲା। ତା'ର ମନେହେଲା, 'ବାପ୍‌ରେ, ଏ ଝିଅଙ୍କ ଦଳ ମଝିରେ କାହିଁକି ଯେ ଆସି ପଡ଼ିଲି।

ଜଳଖିଆ ପରେ 'ଏଇଠି ଭାତ ଖାଇ ଯିବୁ, ମୁଁ ଏଇ ଆସୁଛି' ବୋଲି କିଙ୍ଗୀକୁ କହି ରାଘପ୍ପା ପାନଗୁଆ ନେଇ କାମରେ କୁଆଡ଼େ ବାହାରିଗଲା। ଏପରି ପରିସ୍ଥିତିରେ ନିଜର ସତ୍ତାକୁ ଭୁଲି ଯାଇଥିବା କିଙ୍ଗୀ ସମ୍ପୂର୍ଣ୍ଣ ଅରାଜି ହୋଇ ନପାରି ଚୁପ୍ ହୋଇଗଲା। ଏଣେ ମନରେ ଅନ୍ୟଏକ ଆଶାଥାଏ, ସମ୍ଭବତଃ ରତ୍ନାକୁ ଦେଖିପାରିବ। ଲାଜଲାଜ ହୋଇ ଦିଖିଲ ପାନ ରଖିଦେଇ ରତ୍ନା ଚାଲିଗଲା। କିଙ୍ଗୀ ତହିଁରୁ ବଡ଼ ଖିଲଟି ଉଠାଇଲା, ସେଥିରେ ମଧ ଲଙ୍କା। ଶେଷଥର ପାଇଁ ସ୍ତ୍ରୀ ସମାଜ ପ୍ରାଣଭରି ହସି ଯେଝା ଘରକୁ ଗଲେ। ଏବେ ରାଘପ୍ପା ଅପେକ୍ଷାରେ କିଙ୍ଗୀକୁ ଏକା ବସିରହିବାକୁ ପଡ଼ିଲା।

ବୈଠକରେ ଖବରକାଗଜଟିଏ ସୁଦ୍ଧା ନଥାଏ। ଅଧଘଣ୍ଟା ଏକା ବସିବା ପରେ କିଙ୍ଗୀର ଅଧେ ଉତ୍ସାହ ନିଭିଗଲା। ପେଟ ମନ୍ଥିହୋଇ ଗଲାପରି ମନେ ହେଲା।

---

* ପୁର ଦିଆ ମିଠା 'କରଞ୍ଜି'।

ମା' ଓ ଘର ମନେପଡ଼ିଲା ।

ସେଦିନ ଭୋର ପାଞ୍ଚଟା ବେଳକୁ ଗଙ୍ଗୱା କିଟ୍ଟୀକୁ ଉଠାଇ ଦେଇଥିଲା । ପନ୍ଦର ବର୍ଷହେଲା ସାଇତି ରଖିଥିବା ଶିଶିରୁ ଦି'ଟୋପା ତେଲ ଗିନାରେ ମିଶା ହୋଇଥାଏ । ଏଥର ଦୀପାବଳୀରେ ଘରେ କିଟ୍ଟୀ ପାଇଁ ବନ୍ଦାପନାର ଆୟୋଜନ କରିବାକୁ ତା'ର ଭାରୀ ଇଚ୍ଛାଥାଏ । ସ୍ୱାମୀରାୟ ମରିବାବର୍ଷ ଘରେ ଅଶୁଦ୍ଧି ପାଳିଥିବା ହେତୁ ସେ ଦୀପାବଳୀ ବନ୍ଦାପନା ପାଇଁ କିଟ୍ଟୀକୁ ଦେଶାଇବାବୁଙ୍କ ଘରକୁ ପଠାଇ ଦେଇଥିଲା । ସେଇ ବ୍ୟବସ୍ଥା ଆଜିଯାଏଁ ଚଳିଆସୁଛି । ଏଥର ମଧ୍ୟ ଦେଶାଇବାବୁଙ୍କ ନିମନ୍ତ୍ରଣର ମାନରକ୍ଷା କରିବା ଉଚିତ ଥିଲା । 'ଚାକିରି ପାଇଲା ମାତ୍ରେ ହିଁ ଯାର ଅହଙ୍କାର ବଢ଼ିଗଲା'—ସେମାନଙ୍କୁ ଏକଥା କହିବାର ସୁଯୋଗ ଦେବା ଅନୁଚିତ । ବନ୍ଦାପନା ପାଇଁ ସେଠାକୁ ଯିବା ଦରକାର । ମାତ୍ର ତା' ପୂର୍ବରୁ ଘରେ ଚୁପ୍‌ଚାପ୍ ଆରତୀ ସାରି ଦେବାକୁ ଗଙ୍ଗୱାର ଇଚ୍ଛା । ସେଥିପାଇଁ ସେ ପଡ଼ିଶାଘରେ କାଶୀର ମା' ତା'ର ଛଅ ବର୍ଷର ପୁଅ ଓ ତା' ସ୍ୱାମୀକୁ ସାଢ଼େପାଞ୍ଚ ବାଜିଲା ବେଳକୁ ଜଳଖିଆ ଖାଇବାକୁ ଡ଼ାକିଥାଏ । ସେମାନେ ଆସିଲେ । ଗୀତ ବି ଗାଇଲେ । ତେଲ ହଳଦୀ ଲଗାଇଲେ ଓ କିଟ୍ଟୀକୁ ବନ୍ଦାଇଦେଲେ । ସେଦିନ ଗଙ୍ଗୱା ଗରିବ କାଶୀମା'ର ବନ୍ଦାପନା ଥାଳିରେ କିଟ୍ଟୀ ହାତରୁ ଟଙ୍କାଟିଏ ଦିଆଇ ଦେଲା । ପନ୍ଦର ବର୍ଷ ପରେ ଘରେ ଏଇ ପ୍ରଥମ ଆରତୀ । ଗଙ୍ଗୱା ଆଖିରୁ ଲୁହ ବୋହି ଯାଉଥାଏ । ସଭିଙ୍କ ଛାତିରେ କୋହ । ଜଳଖିଆ ଖାଉ ଖାଉ କାଶୀମା ଅନେକ ପ୍ରକାର ବୁଝାସୁଝା କଲା । ହେଲେ ଗଙ୍ଗୱା ନିଜକୁ ରୋକିପାରିଲା ନାହିଁ; ରୋଷେଇ ଘର ଦ୍ୱାରବନ୍ଧକୁ ଧରି ପାଟିକରି ବାହୁନି ଉଠିଲା । ତାରିପରି ଦୁଃଖୀ କାଶୀମା ପଣତକାନି ଆଖିରେ ଯାକି ସୁଁସୁଁ ହେଲା । ତା'ର ଆଡ଼ପାଗଳା ସ୍ୱାମୀ 'କାନ୍ଦନାହିଁ ମା' କହି ଗଙ୍ଗୱାକୁ ବୋଧ ଶୋଧ କରିବାକୁ ଲାଗିଲା । କିଟ୍ଟୀର ଛାତି ଭାରିହୋଇଗଲା; ମାତ୍ର ସେ ଲୁହ ସମ୍ଭାଳି ଚୁପ୍ ହୋଇ ରହିଲା ।

ତା'ପରେ ସବୁଥର ପରି ଦେଶାଇଜୀଙ୍କ ଘରେ ଆରତୀ ହେଲା । ଏସବୁ କଥା କିଟ୍ଟୀ ସେଇଠି ଅଧା ଭୁଲିଯାଇଥିଲା, ସଞ୍ଜରେ ରାଘସ୍ବା ଘରର ହଟ୍ଟଗୋଳ ଭିତରେ ପୂରା ଭୁଲିଗଲା । ଏବେ ଅଧଘଣ୍ଟା ଏକା ବସିବାକୁ ସକାଳର ସବୁ କଥା କିଟ୍ଟୀର ଆଖି ଆଗରେ ନାଚିବାକୁ ଲାଗିଲା । ଭିତରେ ଭିତରେ ସେ ଅସ୍ଥିର ବୋଧ କଲା । ଘରେ ମଧ୍ୟ ଉତ୍ସବ । ଘରେ ଆୟୋଜନ ହୋଇଛି, ମା' ବାଟ ଚାହିଁ ଥିବ । ରନ୍ଧାବଢ଼ା ସାରି ବସିଥିବ । କିଟ୍ଟୀ ନିଜକୁ ସମ୍ଭାଳି ପାରିଲା ନାହିଁ । ଭାବିଲା ଭିତରକୁ ଯାଇ ଚମ୍ପକ୍କାକୁ କହିବ 'ଘରେ ପୂଜା, ଭାତ ଖାଇ କରି ଯାଇପାରିବି ନାହିଁ । ସେ ଝଟ୍ କରି ଚମ୍ପକ୍କା ଥିବା ଘରକୁ ପଶିଗଲା ।

ଘରେ ଚମ୍ପକ୍କା ନଥିଲା । ଏକୋଟିଆ ରତ୍ନା କାନ୍ଥରେ ବଡ଼ ଦର୍ପଣଟିଏ ଠେକାଇ ଦେଇ ଆପଣାର ଫୁରଫୁର ନୁଖୁରା ବାଳର ଗୁଚ୍ଛକୁ ଆଙ୍ଗୁଳିରେ କେତେବେଳେ ଡ଼ାହାଣକୁ, କେତେବେଳେ ବାମକୁ ବୁଲାଇ, ନିଜର ବହୁବିଧ ସୌନ୍ଦର୍ଯ୍ୟରେ ଆସକ୍ତ

ହୋଇ ନିଜେ ଆନନ୍ଦିତ ହେଉଥିବା ସୃଷ୍ଟିକର୍ତ୍ତାଙ୍କ ପରି ଭାବକରି ବସିଥାଏ। ତା'ର ନୁଖୁରା ଗହଳ କେଶ ଭାରୀ ଆକର୍ଷଣୀୟ। ସେ ନିଜେ ନିଜକୁ ଥରେ ହସି ଥରେ ଆଡ଼ ଆଖିରେ ଚାହିଁ ଦେଖିଲା।

ଏ ସୌନ୍ଦର୍ଯ୍ୟ ସେବାକୁ ଦେଖିବାର ଧୈର୍ଯ୍ୟ କିଟ୍ଟୀର ନଥିଲା; ତେଣୁ ସେ ଖଣ୍ଟିକାଶ ମାରିଲା। ରତ୍ନା ବୁଲିପଡ଼ି ଦେଖି ତରତର ହୋଇ ବାଳକୁ ଗୁଡ଼ାଇ ଦେଇ କଡ଼େଇ ଗଲା। କିଟ୍ଟୀ ସଙ୍କୋଚିତ ହୋଇ କହିଲା,

'ମୁଁ ଘରେ ଯାଇ ଖାଇବି।'

ଯେତେ ଲାଜକୁଳି ହେଉନାଁ କାହିଁକି ଖାଇବା ପାଇଁ ଉପରୋଧ ନକରି କେଉଁ ଝିଅ ଚୁପ୍‌ରହି ପାରିବ?

'ଖାଇ କରି ଯିବେ।'

'ଭାରୀ ଅଧିକାର ଥିଲା ପରି କହୁଛତ?' କିଟ୍ଟୀ ପରିହାସ କରି କହିଲା; ପନ୍ଦର ବର୍ଷର ସରଳା ଝିଅ ଏ ପରିହାସକୁ ବୁଝିପାରିଲା ନାହିଁ।

'ଆମ ଘରେ ଖାଇକରି ଯିବାକୁ କହିବାର ଅଧିକାର ମୋର ନାହିଁ ନାଁ କ'ଣ।' ନିଜକଥାକୁ ପୂରା ବୁଝାଇ ନଦେଲା ଯାଏଁ କିଟ୍ଟୀକୁ ଶାନ୍ତି ଲାଗିଲା ନାହିଁ। ମୋ ସହିତ ତମର ବିବାହ ହେବ, ତୁମେ ଜାଣ?'

'ସେ ସବୁ କଥା ସେମାନେ ଜାଣନ୍ତି।' ରତ୍ନା ନୀରସ ଭାବରେ କହିଲା।

'ପାନ ଖିଲରେ ଲଙ୍କା ଖୁଆଉ ଥିବା ଝିଅ ସହିତ ବାହାଘର କେମିତି ହେବ?

'ମୁଁ ଦେଇ ନାହିଁ। ଗୋଦାବରୀ ଦେଇଥିବ, ମୁଁ ଜାଣି ନଥିଲି।'

ଯିଏ ବି ଦେଉନା କାହିଁକି ପାଟି ତ ପୋଡ଼ିଲା', କହି କିଟ୍ଟୀ ତା'ର ଲାଲଓଠ ଆଡ଼େ ଚାହିଁବାକୁ ଲାଗିଲା।

'ସେଇଥି ପାଇଁ ତ ଖାଇକରି ଯିବାକୁ କହୁଛି। ''କଡ୍ଡୁବୁ''* ତିଆରି ହୋଇଛି।'

'ତୁମ ବାପା ବାହାଘର ପାଇଁ ହଁ ଭରିଛନ୍ତି, ତୁମେ ଯଦି ନାହିଁ କର?'

ଏବେ ରତ୍ନା ପୂର୍ବ ପରିହାସର ଅର୍ଥ ବୁଝିପାରିଲା।

'ମୋ କଥା ଛାଡ଼ନ୍ତୁ ; ଆପଣଙ୍କ ମା' କ'ଣ କହୁଛନ୍ତି ଆଗ ସେ କଥା ବୁଝନ୍ତୁ, ଆପଣଙ୍କ ପାଇଁ ସେଇଟି ମୁଖ୍ୟ।'

ମା' କଥା ଏଠାରେ ଉଠିବ ବୋଲି କିଟ୍ଟୀ ଭାବି ନଥିଲା। ତା'ର ମୁହଁ ଶୁଖି ଗଲା। ନିଜର ରସିକତାପୂର୍ଣ୍ଣ କଥାବାର୍ତ୍ତାକୁ ନୀରସ ଗଦ୍ୟସ୍ତରକୁ ଆଣି ଆସିଲା ଭଳି କାବ୍ୟ-ପ୍ରତିଭାର ଗଭୀରତା ପର୍ଯ୍ୟନ୍ତ ସେ ଯାଇ ପାରିଲା ନାହିଁ।

ସୌଭାଗ୍ୟବଶତଃ ଚମ୍ପକ୍କା କାଶିକାଶି ସେଇଠି ପହଞ୍ଚି ଯିବାରୁ ସେ କଥାବାର୍ତ୍ତା ସେଇଠି ଅଟକିଗଲା। କିଟ୍ଟୀ ଚମ୍ପକ୍କାକୁ କହିଲା, 'ଆଜି ପର୍ବପର୍ବାଣୀ ଦିନ, ଯାଇ ଘରେ ଖାଇବି।'

'କାହିଁକି ଏଇଟା କ'ଣ ଘର ନୁହଁ?' ଚମ୍ପକ୍କା ପଚାରିଲା।

---

* ଚାଉଳ ଚୂନା ଓ ତିଳରେ ତିଆରି ଏକପ୍ରକାର ଶୁଖିଲା ମିଠା।

'ହଁ ଇଏ ବି ଘର। ସେ କଥା ନୁହଁ, ମା' ବାଟ ଚାହିଁଥିବ। ପୁଣି ଆସିବି।'

'ନାହିଁ ନାହିଁ, ରନ୍ଧା ସରିଲାଣି; ଇଏ ଆସିଲାମାତ୍ରେ ବଢ଼ାଯିବ।'

ଏତିକିବେଳେ ରାଘଷା ଆସି ପହଞ୍ଚିଲା। ଚମ୍ପକ୍କା ତାକୁ କିଟ୍ଟୀକଥା କହିଲା। କିଟ୍ଟୀକୁ କିଛି କହିବାର ସୁଯୋଗ ନ ଦେଇ ରାଘଷା କହିଲା, 'ଛି ଛି କିଟ୍ଟୀ, ନାଁ ମୁଁ ପର, ନାଁ ତୋ ମା' ପର। ତୋ ମା' ଓ ମୋ ଭିତରେ କ'ଣ ବା ପ୍ରଭେଦ ଅଛି? ଦିଇଟି ଯାକ ଘର ତୋରି। ଦିନେ ଅଧେ ଆସିଛୁ; ଖାଇକରି ଯିବାକୁ ପଡ଼ିବ। କେତେଥର ଚା' ପିଇ ଯିବାକୁ କହିଲି, ଜମା ଆସିଲୁ ନାହିଁ। ଫେର କେବେ ଆସିବୁ କିଏ ଜାଣେ! ଚାଲ ବସିବା।'

ଅନ୍ୟ ଉପାୟ ନଦେଖି କିଟ୍ଟୀ ଖାଇ ବସିଲା। ଖାଉଁ ଖାଉଁ ରାଘଷା କେତେକ ମଜାର କଥା କହିଲା। ତହିଁରୁ କିଟ୍ଟୀକୁ କୌଣସି ରସ ମିଳିଲା ନାହିଁ। ଖାଇସାରିଲା ମାତ୍ରେ ହିଁ ତରତର ହୋଇ ଘରକୁ ଚାଲିଲା।

ତାଙ୍କଘର ଛାଡ଼ିଲା ମାତ୍ରେ ରାଘଷା ସ୍ତ୍ରୀ ଆଡ଼େ ବୁଲିପଡ଼ି ମୁରୁକି ହସି କହିଲା, 'ଆଜି ମୋର ଚୋଟ ଗଙ୍ଗଓ୍ୱା ପାଖରେ ଯାଇ ପହଞ୍ଚିବ।' ଏହା ଶୁଣି ସ୍ତ୍ରୀ ନିର୍ବିକାର ଭାବ କରି ଚୁପ୍ ରହିଲା।

କିଟ୍ଟୀଘରେ ପହଞ୍ଚୁ ପହଞ୍ଚୁ ଗୋଟାଏ ବାଜିଗଲା। ଗଙ୍ଗଓ୍ୱା ମଧ୍ୟ 'କଡ୍ଡୁବୁ' ତିଆରି କରି ବାଟ ଚାହିଁଥାଏ। କେତେଥର ଘର ପାଖ ଛକ ପର୍ଯ୍ୟନ୍ତ ଯାଇ ଆସି ଥକିଗଲାଣି। ତରବର ହୋଇ କିଟ୍ଟୀ ପହଞ୍ଚିଲା ମାତ୍ରେ ସେ କହିଲା, 'ଏତେ ଡ଼େରି! କିଟ୍ଟୀ, ଭାତ ଶୁଖି ଚାଉଳ ହୋଇଗଲାଣି।'

'ନାଇଁ, ମୁଁ ଖାଇକରି ଆସିଛି। ଜଣେ ସାଙ୍ଗ ଛାଡ଼ିଲା ନାହିଁ, ଜବରଦସ୍ତ କଲା ଭାତ ଖାଇବା ପାଇଁ। ତୁ ଖାଇଦେ ମା।'

ଏହା ଶୁଣି ଗଙ୍ଗଓ୍ୱା ଦୁଃଖରେ କହିଲା, 'ଏତେ ରକମର ରାନ୍ଧି କରି ରଖିଲି, ଭାବିଲି କିଟ୍ଟୀ ଆସୁଥିବ। ଏଇ ଆସିଯିବୁ, ଆସିଯିବୁ ଭାବି ବାଟ ଚାହିଁଛି, ଆଉ ତୁ ଖାଇକରି ଆସିଲୁ? ସେମାନେ କ'ଣ ଜାଣ୍ତି ନାହାଁନ୍ତି ଯେ ଅନ୍ୟ ଲୋକଙ୍କ ଘରେ ଆଜି ପୂଜାପର୍ବ! ଭାରୀ ଭଲ ସାଙ୍ଗ ତ! (କ'ଣ ମନେପଡ଼ିବା ମାତ୍ରେ) କିଟ୍ଟୀ ସତକହ, କୁଆଡ଼େ ଯାଇଥିଲୁ? ରଘୁ ଘରକୁ ଯାଇଥିଲୁ ନାଁ?'

ଏଯାଏଁ ମା' ପାଇଁ ଯେଉଁ ସହାନୁଭୂତି ଥିଲା ଶେଷ କଥାପଦକ ଶୁଣି ତାହା ଘୁଞ୍ଚିଗଲା।

ନୀରସ କଣ୍ଠରେ କହିଲା, ହଁ।

'ଆଚ୍ଛା, ଯାହା ହେଉଛି ହେଉ ଭଗବାନ କାନ୍ଦିବା ପାଇଁ ସ୍ତ୍ରୀ ଜନ୍ମ ଦେଇଛନ୍ତି। ଅଚ୍ଛା ଭୋଗାଣ ଭୋଗୁଛି, କହି ଭିତରକୁ ଯାଇ କିଛି ନକହି ଭାତ ବାଢ଼ିଲା। ଅତି ଦୁଃଖରେ ମୁଣ୍ଡ ବୁଲାଉଛି। ଦି'ଗୁଣ୍ଡାଭାତ ଗିଳିବା ପାଇଁ ଚାରିଗ୍ଲାସ ପାଣି ପିଇଲା। ଆଉ ଦି'ଗୁଣ୍ଡା ଖାଉଣୁ ନଖାଉଣୁ ଉଠି ପଡ଼ି ନଳା ମୁହଁରେ ବାନ୍ତି କରିପକାଇଲା। ଯାହା ଖାଇଥିଲା ସବୁ ବାହାରି ଆସିଲା। ମୁହଁ ପିତା ହୋଇଗଲା।

ମା'ର ବିଚାରଶୂନ୍ୟ ଦୁଃଖ ଦେଖି ଚିଡ଼ି ଯାଇଥିବା କିଟ୍ଟୀ ଅଧାଖିଆରୁ ମାକୁ ଉଠିବାର ଦେଖି ଦୁଃଖିତ ହେଲା। ଏଯାଏଁ ସେ ଚୁପ୍‌ଚାପ୍ ଥିଲା, ହେଲେ ଏବେ ଉଠି ଭିତରକୁ ଆସି ଅଳିକରି କହିଲା 'ମା' ତୁ ଥରେ ଖାଉ, ଆଉ ଦି'ଟା ଖା। ରାତିରେ ଖାଇବୁ ନାହିଁ।'*

ଦି' ବର୍ଷ ଭିତରେ ଏମିତିକଥା କିଟ୍ଟୀ ମୁହଁରୁ ଏଇ ପ୍ରଥମ ବାହାରିଲା। ଏତିକିରେ ହିଁ ତା'ର ମନ ତରଳି ଗଲା।

'ସେ କଥା କେମିତି ହେବ ବାପା। ମୋର ତ ଥରେ ଖାଇବା କଥା। ଭୋକ ଯଦି ଲାଗିବ ରାତିରେ ଚୂଡ଼ା ମୁଠେ ଖାଇଦେବି' କହି ବାସନ ମାଜିବାକୁ ଉଠିଗଲା। ନିଭିଲା ଚୂଲିରେ ବସାଇ ରଖିଥିବା 'କଡ୍ଡୁବୁ' ପୂର୍ଣ୍ଣ ପିତଳ ଡେ଼କିଚି ତାକୁ ପରିହାସ କରୁଥାଏ।

---

* ଦକ୍ଷିଣ ଭାରତରେ ବିଧବାମାନେ ସାରାଦିନରେ ଥରେ ଖାଆନ୍ତି)।

# 15. ଦେଶାଇ ବାବୁଙ୍କ ପ୍ରୟାସ

ଏଥର ଦେଶାଇବାବୁଙ୍କୁ ଗଙ୍ଗୱା ଏକ ବଡ଼ ଦାୟିତ୍ୱ ସମ୍ପି ଦେଲା। ଯାହା ଯାହା ହୋଇଥିଲା ମୂଳରୁ ଚୂଳଯାଏଁ ସବୁ ତାଙ୍କୁ ଶୁଣାଇଲା। ପୂଜାପର୍ବ ଦିନରେ କିଟ୍ଟୀକୁ ଘରେ ଖାଇବାକୁ ନ ଦେଇ ରାଘପ୍ପା ଗଙ୍ଗୱା ଉପରେ ଏକ ଚିରସ୍ଥାୟୀ ଚୋଟ ହାଣିଛି। ମାତ୍ର ଯାହା ହେଉ ଭଲହିଁ ହେଲା। ସମୟ ମୁତାବକ ଗଙ୍ଗୱାକୁ ଚେତାବନୀ ମିଳିଗଲା। ସେ ଭାବିଲା କଥା ହାତ ବାହାରକୁ ଯିବା ପୂର୍ବରୁ କିଟ୍ଟୀ ପାଇଁ ଅନ୍ୟଜାଗାରେ ପାତ୍ରୀ ଠିକଣା କରିବା ଦରକାର।

'ମୁଁ ଭାବୁଥିଲି ଚାକରି କରିବାର ମାତ୍ର ଦିନ କେଇଟା ହୋଇଛି, ଟିକିଏ ସ୍ଥାୟୀ ହୋଇଗଲେ ବାହା କରାଇବି। ମାତ୍ର ଗୋପର୍ଣ୍ଣା, ଏବେ ଚାଲିଚଳନରୁ ଏମିତି ମନେହେଉଛି ଯେମିତି ରାଘୁର ଯୋଜନା କାର୍ଯ୍ୟକାରୀ ହୋଇଯାଉଛି। ସେ କିଛି ଖୁଆଇ ପିଆଇ ମଧ୍ୟ ଦେଇ ପାରେ। ସତକଥା କହିଲେ ଭାଇ, ମୋତେ ଡ଼ର ଲାଗୁଛି। ମୁଁ ଭାବୁଥିଲି କିଟ୍ଟୀ ମୋର ନିଜର ପୁଅ....କିନ୍ତୁ ଏବେ....ଛାଡ଼। ଏବେ ଯେମିତିହେଉ ତା'ପାଇଁ ଝିଅଟିଏ ଖୋଜ। ଯାହା ବି ହେଉ ଥରେ କଥା ପକ୍କା କରି ପରିସ୍ଥିତି ସୁଧାରିଗଲା ମାତ୍ରେ ବିବାହ କରିଦେବା।

କିଟ୍ଟୀ ପାଇଁ ଦେଶାଇଜୀଙ୍କ ପାଖକୁ ଅନେକ ପ୍ରସ୍ତାବ ଆସୁଥିଲା। କିନ୍ତୁ ଗଙ୍ଗୱା କଥାଟା ଉଠାଇ ନଥିଲା, ସେଥିପାଇଁ ସେ ଚୁପ୍ ଥିଲେ। ସେ ଭିତରୁ ତାଙ୍କର ଜଣେ ଗରିବ ସାଙ୍ଗ ଦୁନ୍ଦୁରୁ ଶିବପ୍ପାର ପନ୍ଦର ବର୍ଷର ଝିଅଟିକୁ ତାଙ୍କର ପସନ୍ଦ ହୋଇଥିଲା। ଟିକିଏ କଳା ହେଲେ କ'ଣ ହେଲା ଝିଅଟିର ଗଠନ ସୁନ୍ଦର। ସ୍ୱାସ୍ଥ୍ୟ ଭଲ। ଘରର କାମପାଇଟିରେ ପୋଖତ। ଗଙ୍ଗୱାକୁ ସୁଖରେ ରଖିବ ତାକୁ ଦେଖିବାମାତ୍ରେ ଦେଶାଇଜୀ ଭାବିଥିଲେ ସମ୍ଭବ ହେଲେ ଏ ସମ୍ବନ୍ଧ କରାଇ ଦେବା ଦରକାର। ଏଥିରେ ଗରିବ ବନ୍ଧୁର ଉପକାର ହେବ। ଶିବପ୍ପାର ଝିଅ ବିଷୟରେ ଦେଶାଇଜୀ ଗଙ୍ଗୱାକୁ ସବିସ୍ତାର କହିଲେ। ଶୁଣି ଗଙ୍ଗୱାର ମନ ଛକପକ ହେବାକୁ ଲାଗିଲା। ଦୁନ୍ଦୁରୁ ଶିବପ୍ପା ଭାରୀ କର୍ମଠ ସଂସ୍କାରଶୀଳ ବ୍ରାହ୍ମଣ। ଗରିବ ହେଲେ ହେଁ, ଦରିଦ୍ର ନୁହଁ। ତା'ଛଡ଼ା ସେ ଭାରୀ ଉଦାର। ଘରେ 'ଅଗ୍ନିହୋତ୍ର' କରେ; ନିଜେ ବେଦାନ୍ତବାଦୀ। ସବୁଶୁଣି ଗଙ୍ଗୱା ବଡ଼ ପ୍ରସନ୍ନ ହେଲା। ଦେଶାଇଜୀଙ୍କ ପାଖରେ ଥିବା ଟିପ୍ପଣୀ ମିଳାଇବା ପରେ ପୂରା ମନ ମାନିଗଲା।

ଗଙ୍ଗୱା ପାଖରେ ବସି ଝିଅଦେଖାଇବା ଲାଗି ଦୁନ୍ଦୁରୁ ଶିବପ୍ପାକୁ ସପରିବାର ଆସିବା ପାଇଁ କହି ଦେଶାଇଜୀଙ୍କ ଦ୍ୱାରା ଚିଠି ଲେଖାଇଲା ।

ରବିବାର ଦିନ ସକାଳ ପହରୁ ଗଙ୍ଗୱା ଦେଶାଇଜୀଙ୍କ ଘରୁ କେତେ ଥର ବୁଲି ଆସିଲାଣି । ସବୁ କଥା ଜାଣିନଥିବାରୁ କିଟ୍ଟୀ ଏହାର ରହସ୍ୟ ବୁଝିପାରିଲା ନାହିଁ । ପ୍ରାୟ ଦଶଟା ବେଳକୁ ଦେଶାଇଜୀଙ୍କ ଘରୁ କିଟ୍ଟୀକୁ ଡ଼କରା ଆସିଲା । ଦେଶାଇବାବୁଙ୍କ ଘରୁ ଡ଼କରା ଆସିଲା ମାତ୍ରେ ସବୁବେଳେ ଚଟାପଟ୍ କିଟ୍ଟୀ ପାଖକୁ ଚାଲି ଆସୁଥିବା ମା' ଆଜି ନ ଜାଣିଲା ପରି ରୋଷେଇ ଘରେ ଯାଇ କ'ଣ ସବୁ ରଖାରଖି କରିବାରେ ଲାଗିଲା । ଦେଶାଇଜୀଙ୍କ ଘରକୁ କିଟ୍ଟୀର ଯିବା ଆସିବା ଟିକିଏ କମିଯାଇଥିଲା । ଆଜିକାଲି ସେ ନଡ଼ାକିଲେ କିଟ୍ଟୀ ତାଙ୍କ ଘରକୁ ଯାଏ ନାହିଁ । ଦୀପାବଳୀଦିନ ପ୍ରତିବର୍ଷପରି ସେ ଆରତୀ ପାଇଁ ତାଙ୍କ ଘରକୁ ଯାଇଥିଲା, ମାତ୍ର ଦେଶାଇଜୀ ତା' ସହ ବିଶେଷ କଥା ହୋଇନଥିଲେ । ବସନ୍ତରାଓର କଥା କାଳେ ପଡ଼ିଯିବ ସେଇ ଭୟରେ ଦେଶାଇଜୀ ଆଜିକାଲି ଅନ୍ୟମାନଙ୍କ ସହ କମ୍ କଥାବାର୍ତ୍ତା କରୁଛନ୍ତି । ଏଇନେ କାହିଁକି ଡ଼ାକୁଛନ୍ତି ଭାବୁଭାବୁ କିଟ୍ଟୀ ଚପଲ ପିନ୍ଧି ନଙ୍ଗଳା ମୁଣ୍ଡରେ ତାଙ୍କ ଘରଆଡ଼କୁ ଚାଲିଲା । ଏତିକିବେଳେ ଗଙ୍ଗୱା ଝଟ୍ କରି ରୋଷେଇ ଘରୁ ବାହାରି ଆସି କହିଲା, ହଇରେ କିଟ୍ଟୀ, ଦେଶାଇବାବୁଙ୍କ ସହ ଦେଖା କରିବାକୁ ଯାଉଛୁ, ଟୋପି ପିନ୍ଧି ଯାଉନାହୁଁ କାହିଁକି ?

ଶିବପ୍ପାର ପୂଜାପାଠ ଏ ଯାଏଁ ବଢ଼ି ନଥାଏ । ବୈଠକରେ ଗମ୍ଭୀର ହୋଇ ବସିଥିବା ଦେଶାଇବାବୁ ଆଦର କରି କିଟ୍ଟୀକୁ ସ୍ୱାଗତ କଲେ । ଏଆଡୁ ସେଆଡୁ କଥା ହେଉଁ ହେଉଁ ଅସଲ କଥାକୁ ଆସିଲେ । 'ଦୁନ୍ଦୁରୁ ଶିବପ୍ପା ବୋଲି ମୋର ଜଣେ ପୁରୁଣା ସାଙ୍ଗ ଅଛି । ଭଲ ଘରର । ଝିଅ ଭଲ । ତାରି ପ୍ରସ୍ତାବ ତୁମ ସହିତ ପକାଇବା ପାଇଁ ମୋର ବହୁଦିନରୁ ଇଚ୍ଛା ।''

କିଟ୍ଟୀ ମଝିରେ ହିଁ କହିଲା, 'ଏବେ ମୁଁ ବିବାହ କଥା ଭାବୁ ନାହିଁ ।'

'ତୁମମାନଙ୍କର କେବେ ଚିନ୍ତା ହୁଏ ନାହିଁ । ବିବାହ ବିଷୟରେ ତୁମର ଚିନ୍ତା କରିବା ଦରକାର ମଧ୍ୟ ନାହିଁ । ଏହା ଗୁରୁଜନମାନଙ୍କର ଭାବିବା କଥା । ତୁମମାନଙ୍କର କାମ ଝିଅ ପସନ୍ଦ କରିବା ।'

'ହେଲେ ଗୋପର୍ଣ୍ଣାବାବୁ, ଯେ ଯାଏଁ ଚାକିରି ସ୍ଥାୟୀ ନହୋଇ ଯାଇଛି ସେ ଯାଏଁ ବିବାହ ନ କରିବା କଥା ମୁଁ ଭାବୁଛି.. ।'

'ହଁ, ସେ କଥା ଠିକ୍ । ବିବାହ କରିବାକୁ ହେଲେ ସବୁକଥା ଭାବିବାକୁ ପଡ଼େ । କିନ୍ତୁ ଝିଅ ଦେଖି କଥା ସ୍ଥିର କରି ରଖିବାରେ ବାଧା କେଉଁଠି ? ଦିନକେଇଟାରେ ଚାକିରି ସ୍ଥାୟୀ ହୋଇଯିବ ।'

'ଏବେ ଦେଖି ଲାଭ ?

ପ୍ରଥମ ଥର ପାଇଁ ଦେଶାଇଜୀଙ୍କ ସହିତ କିଟ୍ଟୀ ଏପରି କଥାବାର୍ତ୍ତା କରୁଥାଏ । ତା'ର ବିଚାର ଯେ ଏତେ ଦୃଢ଼ ହୋଇପାରେ ସେ କଥା ଦେଶାଇଜୀ

ଭାବି ନଥିଲେ। ସେ ଟିକିଏ କ୍ଷୁଣ୍ଣ ହୋଇ କହିଲେ, 'ତୁମେ ନଚାହିଁଲେ ନଦେଖିବ। ମୁଁ ଭାବିଲି ବିଚରା ବ୍ରାହ୍ମଣ ରେଲଭଡ଼ା ଖର୍ଚ୍ଚ କରିଆସିଛି ଯଦି ଦେଖାଦେଖି ହୋଇ ଯିବ ତେବେ କାମଟିଏ ତୁଟି ଯିବ। ତା'ପରେ ତୁମମାନଙ୍କର ଇଚ୍ଛା।'

ଦେଶାଇଜୀଙ୍କର ଅସନ୍ତୋଷ ଦେଖି କିଟ୍ଟୀର ମୁହଁ ଖୋଲିବାକୁ ସାହସ ହେଲା ନାହିଁ। ତଥାପି ମନକୁ ମନ ଗୁଣୁ ଗୁଣୁ ହୋଇ କହିଲା, 'ଆପଣ କହୁଛନ୍ତି ଯଦି ଦେଖିବି।'

ଏଇନେ କାମଟି ଉଠିଯାଉ ଭାବି ଦେଶାଇଜୀ ଶାନ୍ତିରେ ନିଃଶ୍ୱାସ ନେଲେ। ଏତିକିବେଳେ ପୂଜାପାଠ ଶେଷକରି ବିଭୂତିମଣ୍ଡିତ ଶିବପ୍ପା ଖାଲିଦେହରେ ବାହାରି ଆସି ବୈଠକରେ ଦରୀ ପଡ଼ି ନଥିବା କୋଣରେ ଗୋଡ଼ ଉପରେ ଗୋଡ଼ ରଖି କାନ୍ଥକୁ ଆଉଜି ବସି ପଡ଼ିଲେ। ଛୁଆଁଛୁଇଁ ଡ଼ରରେ ଯେଉଁ କୋଣରେ ସେ ବସିଥିଲେ ସେଇ ଆଡ଼କୁ ଦେଶାଇବାବୁ ପାନ ଦି'ଟା ଗୁଆ ଓ ଧୂଆଁ ପତ୍ର ଡ଼ବା ଠେଲି ଦେଲେ। ହାତରେ ପୂଜାମୁଦ୍ରିକା, ମଥାରେ ତ୍ରିପୁଣ୍ଡ, ଗଳାରେ ରୁଦ୍ରାକ୍ଷଧାରୀ ବାଙ୍ଗରା ମଣିଷ— ସବୁ ଦେଖି କିଟ୍ଟୀ ମନରେ ତାଙ୍କ ପ୍ରତି ଶ୍ରଦ୍ଧାଜାତ ହେଲା। ମାତ୍ର ତାଙ୍କୁ ଶ୍ୱଶୁର ଭାବରେ ସ୍ୱୀକାର କରି ନେବାରେ କିଟ୍ଟୀ କେତେକ ତ୍ରୁଟି ଲକ୍ଷ୍ୟ କଲା। ଏଇ ତ୍ରିପୁଣ୍ଡଧାରୀଙ୍କର ତହସିଲଦାରଙ୍କ ସହ ପରିଚୟ ସମ୍ଭବ ନୁହେଁ। ଅତିବେଶୀରେ ତାଙ୍କର ପରିଚୟ ତାଙ୍କ କୁଳ ଦେବତାଙ୍କ ପର୍ଯ୍ୟନ୍ତ ଥାଇ ପାରେ। ଏଇ ଚିତାଚଇତନଧାରୀ କୃଷ୍ଣକାୟଙ୍କ ସହ ରାସ୍ତାକୁ ବାହାରିବା ମୁସ୍କିଲ ହୋଇ ଉଠିବ। ଇଏତ ଏମିତି, ଯାଙ୍କ ଝିଅ କେମିତି ହୋଇଥିବ? ଯେ କାହିଁ, ଆଉ କାହିଁ ମାଞ୍ଚେଷ୍ଟର ବୁଣା ଧୋତି ପିନ୍ଧା। ଛ'ଫୁଟ ଲମ୍ବା ଗୌରାଙ୍ଗ ରାଘପ୍ପା....ଇତ୍ୟାଦି।

ଦେଶାଇବାବୁ ସଂକ୍ଷେପରେ ପରିଚୟ କରାଇ ଦେଲେ। ଆଜେବାଜେ ଚିକ୍କଣିଆ କଥାରେ ଶିବପ୍ପାର ଅରୁଚି। ସେ ସିଧା ନିଜ କଥାକୁ ଆସିଲେ। କହିଲେ, ଦେଖନ୍ତୁ, ଏବେ କାହାକୁ ଖାଇବାକୁ ଡ଼ାକି ଦିଅ, ଏକା ସବୁ ତିଆରି କରିପକାଇବ। ଏଇଗୋଟିଏ କଥା ମୁଁ ବଡ଼ ଗର୍ବର ସହିତ କହିବି। ବାକି ଆଉ ଆପଣମାନେ ଜାଣନ୍ତି।' ଆଉକିଛି ନକହି ତାଳିମାରି 'କୃଷ୍ଣା, ଝିଅ ଏଆଡ଼େ ଆସିଲୁ' ବୋଲି ଡ଼ାକିଲେ।

ମା' ଓ ଭାଇ ଭଉଣୀଙ୍କ ପଛେ ପଛେ କୃଷ୍ଣା ଆସିଲା। ଆଉ ଗୋଟିଏ କଥାରେ ମଧ ଶିବପ୍ପାଙ୍କର ଭାରି ଅଭିମାନ ଥାଏ। ସେ କହିଲେ, 'ଦେଖନ୍ତୁ, ଆମ ଘରର ସଭିଏଁ କଳା। ମୁଁ ସଭିଙ୍କ ନାଁ ସେଇ ଅନୁସାରେ ରଖିଛି। ଇଏ କୃଷ୍ଣା, ତା'ଠାରୁ ସାନଟି କଳିଙ୍ଗା। ତା'ତଳଟି ଶ୍ୟାମଳା; ଆଉ ସବାସାନ ଏଇ କୋଳ୍‌ରଟି ଘନଶ୍ୟାମ। ଏ ସଭିଙ୍କ ଭିତରେ କୃଷ୍ଣା ଟିକିଏ କମ୍ କଳା। ସେଇ କ୍ରମରେ ଶିବପ୍ପାର ପିଲାମାନେ ଦରୀ ଉପରେ ବସିପଡ଼ିଲେ। ଘନଶ୍ୟାମର ନାଁ ଧରିବା ମାତ୍ରେ ସେ ମା' କୋଳରୁ ବାପାଙ୍କ ପାଖକୁ ଯିବା ଲାଗି ହାତ ବଢ଼ାଇଲା। ହେଲେ ବାପାଙ୍କର ଛୁଆଁଛୁଇଁ ଡ଼ରରେ ଶ୍ୟାମଳା ତାକୁ ଟେକି ନେଲା। ସ୍ତ୍ରୀ ଲୋକମାନଙ୍କର ଛୋଟିଆ ଦଳଟିଏ କବାଟ ପଛରୁ ଭଙ୍ଗିମାରୁଥାଏ। ସେମାନଙ୍କର ଅଗ୍ରଣୀ ବିଶୁବାଈ।

କୃଷ୍ଣ କୁମାରୀ ଗୋଟିଏ ଖମ୍ବ ପାଖରେ ଆଣ୍ଠୁରେ ମୁହଁ ପୋତି ବସିଥାଏ।

ଠିଆ ହୋଇଥିବା ସ୍ଥାନରୁ ବିଣୁବାଇ କହିଲେ 'ଦେଖ ଭାଇ, ତୁମେ କୃଷ୍ଣ, ଆଉ ଇଏ କୃଷ୍ଣା। ଆମ ସଭିଙ୍କୁ ଏ ଯୋଡ଼ି ଭାରୀ ପସନ୍ଦ। ତୁମ ମା' ସକାଳେ ଦେଖି ଖୁସି ହୋଇଯାଇଛି।' ଏହା ଶୁଣି କିଟ୍ଟୀ କୌଣସି ଜବାବ ଦେଲା ନାହିଁ।

ସବୁ ଚୁପ୍‌ଚାପ। ଦେଶାଇବାବୁ ଗୋଟିଏ ଯୋଡ଼ିଏ ପ୍ରଶ୍ନ ପଚାରି ପ୍ରଥାର ମାନରକ୍ଷା କଲେ।

ତୁମ ନାଁ କ'ଣ ? କେତେବାଟ ପଢ଼ିଛ ? ଗୀତ ଆସେ ? ଇତ୍ୟାଦି। ଝିଅଟି ସୁର ଦେଇ ଭଜନଟିଏ ଗାଇଲା। କଣ୍ଠ ଭାରୀ ମଧୁର ନହେଲେ ସୁଦ୍ଧା ସ୍ୱର ଭଲ। ଅଧିକ କିଛି ନ ପଚାରି ଦେଶାଇଜୀ କୃଷ୍ଣାକୁ ଭିତରକୁ ପଠାଇ ଦେଲେ। ସଭିଏଁ ଭାବିଲେ କଥା ଠିକ୍ ହୋଇଗଲା। ଶିବପ୍ପା ବାକିକଥା କିଟ୍ଟୀକୁ ଶୁଣାଇ ଦେଶାଇଜୀଙ୍କୁ କହିଲା, ଦେଖନ୍ତୁ, ନିଜର ଶକ୍ତି ଅନୁସାରେ ସବୁ କରିବି। ହଜାର ଟଙ୍କା ବରପଣ ଦେବି....।'

'ଭଲ କଥା। ମାତ୍ର ମୁଁ ଏବେ ବାହାହେବା କଥା ଭାବୁ ନାହିଁ।' କଥାଟା କିଟ୍ଟୀ ଏତେ ଧୀରେ କହିଲା ଯେ କେବଳ ଦେଶାଇବାବୁ ଶୁଣି ପାରିଲେ। ଏମିତି ପରିସ୍ଥିତିରେ କଥା ଆଗକୁ ବଢ଼ାଇବାଟା ତାଙ୍କୁ ଉଚିତ ମନେହେଲା ନାହିଁ। କବାଟ ପାଖରେ ଠିଆ ହୋଇଥିବା ଗଙ୍ଗପ୍ପାକୁ ଠାରରେ ଜଳଖିଆ ପରଷି ଦେବାକୁ କହି ସେ ଦିନର କାର୍ଯ୍ୟକ୍ରମ ସମାପ୍ତ କଲେ। ତାପରେ କିଟ୍ଟୀକୁ ଘରକୁ ଯିବାକୁ ଅନୁମତି ମିଳିଲା।

ବିଚଳିତ ହୋଇ ଘରକୁ ଆସି କିଟ୍ଟୀ ତାଲା ଖୋଲି ଚୌକିଉପରେ ବସିପଡ଼ିଲା। ତା'ର ମନେ ହେଲା, ଏସବୁ ତା'ର ମା' ଓ ଦେଶାଇଜୀଙ୍କର ମିଳିତ ଷଡ଼ଯନ୍ତ୍ର। ମା' ମୂର୍ଖ, ଏହା ଜଣାକଥା। କିନ୍ତୁ ଦେଶାଇଜୀ ମଧ୍ୟ କିଛି ବୁଝିପାରୁନାହାନ୍ତି ନାଁ କ'ଣ ? ସେ କେବେ ଥରେ ଉପକାର କରିଦେଇଥିଲେ ବୋଲି କ'ଣ ମୋତେ ବାହାଘର ମାମଲାରେ ସୁଦ୍ଧା ଚୁପ୍ ରହିବାକୁ ପଡ଼ିବ। ସହଳ ଭାବିଚିନ୍ତି ଚିଠି ଖଣ୍ଡିଏ ଲେଖି ଦେଶାଇଜୀଙ୍କ ପାଖକୁ ପଠାଇବାକୁ ମନସ୍ଥ କଲା। କାଶୀମାର ଝିଅ ହାତରେ ଚିଠିଟି ଦେଇ ଦେଶାଇବାବୁଙ୍କୁ ଦେବାପାଇଁ କହି ପଠାଇ ଦେଲା।

ଶ୍ରୀମାନ୍,

ଆଦରଣୀୟ ଗୋପର୍ଣ୍ଣାଜୀଙ୍କ ସେବାରେ ଚିରଞ୍ଜିବ କୃଷ୍ଣଜୀର ସାଷ୍ଟାଙ୍ଗ ନମସ୍କାର। ଆପଣ ମୋର ବିବାହ ବିଷୟରେ ଚିନ୍ତା କରୁଛନ୍ତି, ସେ ନିମନ୍ତେ ମୁଁ ଅତ୍ୟନ୍ତ ଅନୁଗୃହୀତ। ମାତ୍ର ମୁଁ ଦୁଃଖିତ ଯେ ଏଥିରେ ଆପଣଙ୍କର ବୃଥା ପରିଶ୍ରମ ସାର ହେବ। ଏଣୁ କୃପାକରି ବର୍ତ୍ତମାନ ପାଇଁ ଏ ବିଷୟରେ ଅଧିକ ପରିଶ୍ରମ କରିବେ ନାହିଁ। ମୋର ଯେବେ ବିବାହ କରିବା ପାଇଁ ଇଚ୍ଛା ହେବ ମୁଁ ସେତେବେଳେ ଆପଣଙ୍କୁ ଜଣାଇବି।

ଆପଣଙ୍କର ବିନମ୍ର ବାଳକ

କୃଷ୍ଣଜୀ।

ବିଶେଷ ସୂଚନା – ଏ ସମ୍ପର୍କରେ ମୁଁ ନିଜେଯାଇ ଆପଣଙ୍କୁ ସାକ୍ଷାତ କରିବି।

କୃଷ୍ଣଜୀ।

ଚିଠିର ଚେହେରା ଦେଖି ଦେଶାଇଜୀ ନିଜକୁ ଅପମାନିତ ବୋଧ କଲେ। କାହାକୁ ନ ଦେଖାଇ ଯେପରି କିଛି ହୋଇନାହିଁ, ସେମିତି ଭାବ କରି ଚିଠିଟିକୁ ସିନ୍ଦୁକରେ ସାଇତି ରଖିଲେ। ଶିବପ୍ପାଙ୍କୁ ଦୁଇ ଦିନ ଅଟକାଇ ରଖି ତାହାଙ୍କ ଦ୍ୱାରା ଘରେ ଗ୍ରହଶାନ୍ତି କରାଇଲେ। ଗାଁକୁ ଯିବା ସମୟରେ ଶିବପ୍ପା ଅର୍ଦ୍ଧ-ସଂଶୟାନ୍ୱିତ ଭାବରେ ବିବାହ କଥା ଉଠାଇଥିବାରୁ ଦେଶାଇଜୀ କହିଲେ, 'ଛାଡ଼ ଛାଡ଼ ଭାଇ, ଏଇ ବାହାନାରେ ତୁମେ ମୋ ଘରକୁ ଅନ୍ତତଃ ଥରେ ଆସିଲ, ଏଇ ବଡ଼ କଥା। ଖାଲି ଡାକି ଥିଲେ ତୁମେ କ'ଣ ତୁମର ପୂଜାପାଠ ଛାଡ଼ି ଆସିଥାନ୍ତ? ଏମିତି ଉପର ଠାଉରିଆ କଥା କହି ତାଙ୍କୁ ପଠାଇଦେଲେ। ଗଙ୍ଗୱା ସହିତ ମଧ୍ୟ ଏ ବିଷୟରେ ବିଶେଷ କଥାହେଲେ ନାହିଁ।

ଘରେ ଗଙ୍ଗୱା ଦୁଇତିନିଦିନ କିଟ୍ଟୀକୁ ଖୁବ୍ ଶାସନ କଲା। 'ଏମିତି ଆଉ ଚାରିବର୍ଷ ବିତିଯିବ ଯଦି ତେବେ ତୋତେ ଝିଅ ମିଳିବ ନାହିଁ' କହି ସେ ତାକୁ ଡ଼ରାଇବାକୁ ଚେଷ୍ଟା କଲା। ଏଇ ଖିଟ୍‌ମିଟ୍‌ରୁ ବଞ୍ଚିବା ପାଇଁ କିଟ୍ଟୀ ରାତିରେ ଡ଼େରିରେ ଫେରିବାକୁ ଲାଗିଲା। ସଭିଙ୍କ କଥାରେ ତା'ର ସେଇ ଦି' ପଦ ଜବାବ— 'ଏବେ ମୁଁ ବାହାହେବା କଥା ମୂଳରୁ ଭାବୁ ନାହିଁ। ଚାକିରି ସ୍ଥାୟୀ ହୋଇଗଲେ ଦେଖାଯିବ।'

# 16. ଦେଶାଇବାବୁଙ୍କ ପୁନଃ ପ୍ରୟାସ

କିଟ୍ଟୀ ବଡ଼ ଚିନ୍ତିତ ଥାଏ। ରାଘପ୍ପା ମା' ଆଗରେ ଥରେ ବିବାହକଥା ପକାଇବା ପରେ ସେ ବିଷୟ ଆଉ କେବେ ଉଠାଇନାହିଁ। କିନ୍ତୁ ଅପ୍ରତ୍ୟକ୍ଷଭାବରେ ତା'ର ଚାରିପଟେ ଜାଲବିଛାଇ ଦେଇଛି। କିଟ୍ଟୀ ଯଦି କେବେ ଭୁଲକ୍ରମେ ରାଘପ୍ପାର ଗଳିଭିତରକୁ ପଶିଯାଏ, ତେବେ ପାଖ ପଡ଼ୋଶୀ ସ୍ତ୍ରୀ ଲୋକମାନେ ତା' ଆଡ଼କୁ ଆଙ୍ଗୁଳି ଦେଖାଇ କହନ୍ତି 'ଇଏ ରତ୍ନାର ବର।' ଦୀପାବଳୀରେ ଏତେକଥା ହେଲାପରେ ରାଘପ୍ପା ନିଜେ ଏ ବିଷୟରେ କୌଣସି କଥା କହିନାହିଁ। ଦିନ ଗଡ଼ିବାକୁ ଲାଗିଲା। ତହସିଲଦାରଙ୍କ ସହ ଚିହ୍ନା ପରିଚୟ, ଜିଲ୍ଲାପାଳଙ୍କ ସହ ବନ୍ଧୁତା, ଜମିଦାରଙ୍କର ପୋଷ୍ୟପୁତ୍ର ଗ୍ରହଣ ଇତ୍ୟାଦି ବିଷୟରେ ରାଘପ୍ପା ବକ୍‌ବକ୍ ହୁଏ; କିନ୍ତୁ ରତ୍ନା ବିଷୟରେ କିଛି କହେ ନାହିଁ। ରତ୍ନା ମଧ୍ୟ କିଶୋରୀ ଅବସ୍ଥା ଅତିକ୍ରମ କରିଯିବାରୁ ହେଉ ବା ମା'ର ଆକଟ ହେତୁ ହେଉ, ଦୀପାବଳୀର ସେଇ ଘଟଣାପରେ ଆଉ କେବେ କିଟ୍ଟୀ ଆଗରେ ଠିଆହୋଇ କଥା ହୋଇନାହିଁ। ଏମିତି ପ୍ରଣୟ ଲୋପହୋଇଯିବା ହେତୁରୁ କିଟ୍ଟୀ ଦୁଃଖିତ ହୋଇପଡ଼ିଲା। ରତ୍ନା ଦିନୁଦିନ ସୁନ୍ଦରତର ହୋଇ ଉଠୁଛି। ଆଜି ରତ୍ନା କାଲିକୁ ଅଲଗା ମନେ ହେଉଛି। କେବଳ ବେଶଭୂଷାରେ ନୁହେଁ, ଶରୀରର ପ୍ରତ୍ୟେକ ଅଙ୍ଗରେ ଅଲଗା। ସେଦିନ କିଟ୍ଟୀ ସହ କଥାହେବା ବେଳେ ଯେଉଁ ସାହସ ତା'ର ଥିଲା, ତାହା ଏବେ ପବନରେ ଉଡ଼ିଗଲାଣି। ସେ କିଟ୍ଟୀକୁ ଦେଖିଲା ମାତ୍ରେ ହିଁ ଲାଜରେ ପରଦା ପଛପଟେ ଲୁଚିଯାଏ। ତହିଁରୁ ରତ୍ନାଠାରେ ଅନେକ ସାନବଡ଼ ପରିବର୍ତ୍ତନ କିଟ୍ଟୀର ନଜରକୁ ଆସିଛି। ପ୍ରଥମେ ତା'ର ଓଠରେ ଯେଉଁ ପିଲାଳିଆ ଶେତା ଭାବ ଥିଲା ତାହା ସ୍ଥାନରେ ଏବେ ପାଚିଲା ଫଳର ରସାଳଭାବ ଦେଖା ଦେଇଛି। ଆଖିରେ ଏକ ନୂଆ ଚମକ। ଗାଲ ଓ ବେକରେ ହାତୀ ଦାନ୍ତର ଶୁଭ୍ରତା, ଆଖି ଉହାଡ଼ରେ ଥିଲେ ହେଁ ସେ କିଟ୍ଟୀର ମନରେ ସ୍ପଷ୍ଟ ଦିଶୁଥିଲା। ବହୁଦିନରୁ କିଟ୍ଟୀର ଆତୁର ମନ ବାହାନା ଖୋଜୁଥିଲା, ମାତ୍ର ତାକୁ କାର୍ଯ୍ୟରେ ରୂପାନ୍ତରିତ କରିବାର ସାହସ ତାଠାରେ ନଥିଲା। ଦେଶାଇଜୀଙ୍କ ଘରେ ଝିଅ ଦେଖା ଘଟଣା ଘଟିଲା ପରେ ତାକୁ ଏକ ବାହାନା ମିଳିଗଲା। ଥରେ ବାଟରେ ଦେଖା ହେବାରୁ କିଟ୍ଟୀ ରାଘପ୍ପାକୁ କହିଲା,

'ଦେଶାଇଜୀ ଏକ ଝିଅ ସହ ବିବାହ ପାଇଁ ଆଗ୍ରହ ପ୍ରକାଶ କରୁଛନ୍ତି।।'

କେଉଁ ଦେଶାଇ ?' ରାଘପ୍ପା ମୁଖ୍ୟ ପ୍ରଶ୍ନକୁ ଏଡ଼େଇ ଯାଇ ପଚାରିଲା।

'ଆମ ପାଖ ଘର ବାଲା, ବାହାଦୁର ଦେଶାଇଜୀ। ଧଳାକୋଠାର ମାଲିକ।'

'ଆଚ୍ଛା, ଏମିତି କଥା।'

ସେ ନୀରବ ରହି ଫେର କହିଲା,

'ଏବେ ମୋର ବାହା ହେବାକୁ ଇଚ୍ଛା ନାହିଁ, ଏହା ମୁଁ ତାଙ୍କୁ କହିଦେଇଛି।'

'ତେବେ କେବେ ଫେର କରିବୁ ଭାବୁଛୁ ?'

'ନାଇଁ ତାଙ୍କୁ ଏମିତି କହିଛି', ଲଜ୍ଜିତ ହୋଇ କିଟ୍ଟୀ କହିଲା।

'ତେବେ ମୁଁ....।' ରାଘପ୍ପା ଆଉ କ'ଣ କହିବାକୁ ଚାହୁଁଥିଲା କେଜାଣି, ନିଜକୁ ସଂଯତ କରୁଥିବା କିଟ୍ଟୀକୁ ଏଇ ଅଧାକୁହା କଥା କହିବାର ସୁଯୋଗ ଦେଲା—

'ନାହିଁ ନାହିଁ, ଆପଣଙ୍କର ଚିନ୍ତା କରିବାର କୌଣସି କାରଣ ନାହିଁ। ମୁଁ ଭାବି ନେଇଛି ଯେ ଯଦି ପୁଣି ଜୋର କରନ୍ତି, ତେବେ କହିଦେବି ଆପଣଙ୍କ ଝିଅଛଡ଼ା ଆଉ କାହାକୁ ବିବାହ କରିବିନାହିଁ।' କହିସାରି ରାଘପ୍ପା ଯେ ତା'ର ଗୁରୁଜନ ଏହା ମନେପଡ଼ିବା ମାତ୍ରେ ଚୁପ୍ ହୋଇଗଲା।

ଏତେ ଦିନ ଧରି ରାଘପ୍ପା ଏଇ କଥାକୁ ପ୍ରତୀକ୍ଷା କରିଥିଲା। ଆଜି ସେ ନିଜେ କରିଥିବା ଉପାୟର ଚାରା ଅଙ୍କୁରିଲା। ତା'ର ମୁହଁରେ ଖୁସିର ସ୍ମିତ ଫୁଟି ଉଠିଲା।

ରାଘପ୍ପା ପଚାରିଲା 'ଏକଥା ପକ୍କା ?'

'କାହିଁକି, ଆପଣଙ୍କର ସନ୍ଦେହ ଥିଲା ନାଁ କଣ ?

'ନାଇଁ। ଗଙ୍ଗୱାର ଏ ବିଷୟରେ କ'ଣ ଇଚ୍ଛା ?

'ସେ ବିଷୟରେ ମଧ୍ୟ ମୁଁ ଭାବି ସାରିଛି। ମା' ଦେଶାଇଜୀଙ୍କ କଥା କାଟି ପାରେ ନାହିଁ। ମୂଳ କଥା ହେଉଛି ଦେଶାଇଜୀଙ୍କୁ ମନାଇବା। ସେ ଯଦି ରାଜି ହୋଇ ଯିବେ, ତେବେ ମା' ମଧ୍ୟ ରାଜି ହୋଇଗଲା ବୋଲି ଜାଣିବେ।'

ରାଘପ୍ପା କିଛିକ୍ଷଣ ଯାଏଁ ଗମ୍ଭୀରହୋଇ ଭାବିଲା। ପରେ ସେ ଦେଶାଇଜୀଙ୍କର ଖବରାଖବର, ସ୍ୱଭାବ ଚରିତ୍ର, ତାଙ୍କର ସାଙ୍ଗସାଥୀ ଇତ୍ୟାଦି ବିଷୟରେ ସବୁ ଜାଣି ନେଇ ଭବିଷ୍ୟତ କାର୍ଯ୍ୟକ୍ରମ ପାଇଁ ପ୍ରସ୍ତୁତ ହେଲା।

ରାଘାପ୍ପାର ପରବର୍ତ୍ତୀ ସମସ୍ୟା ବଡ଼ ଦ୍ୱନ୍ଦ୍ୱବହୁଳ। ତା'ର ଦେଶାଇଜୀଙ୍କ ସହ ପ୍ରତ୍ୟକ୍ଷ ପରିଚୟ ନାହିଁ। ଦେଶାଇଜୀଙ୍କର ଜଣାଶୁଣା କାହାରିକୁ ସାଙ୍ଗରେ ନେଇକରି ଯାଇ ପାରନ୍ତା କିମ୍ବା ଏକା ମଧ୍ୟ ଯାଇପାରନ୍ତା। କିନ୍ତୁ ତା'ର ଏଇ କଥାକୁ ଡ଼ର ଯେ ଗଙ୍ଗୱା ତାଙ୍କୁ ତା' ସଂପର୍କରେ ବହୁତ କିଛି କହିଥିବ। ଯଦି କାହାରିକୁ ସାଙ୍ଗରେ ନେଇ କରିଯାଏ, ତେବେ ସମ୍ଭବତଃ ଗଙ୍ଗୱା ସହ ଘଟିଥିବା ପୁରୁଣା କଥାସବୁ ପ୍ରକଟ ହୋଇଯିବ। ଫଳରେ ତା'ର ଇଜ୍ଜତ ମାଟିରେ ମିଶିଯିବ। ଏଇପରି ଅନେକ କଥା ଭାବି ବିଚାରି ସେ ଏକା ଯିବାକୁ ସ୍ଥିର କଲା। କିଟ୍ଟୀର ଅଫିସ ସମୟକୁ ଆଖିରେ ରଖି ଦିନେ ଦି'ପହରେ ପାଖାପାଖି ତିନିଟା ବେଳକୁ ସେ ଦେଶାଇଜୀଙ୍କ ଘରେ କବାଟ ଖଟ୍ ଖଟ୍ କଲା।

ପ୍ରାୟ ସେତିକି ବେଳକୁ ନିଦରୁ ଉଠି ଦେଶାଇଜୀ ହାତମୁହଁ ଧୋଇ ଖବର କାଗଜ ଦୋହରାଉଥିଲେ। ଉଠି କବାଟ ଖୋଲି କହିଲେ, 'ଆସନ୍ତୁ। ଆପଣଙ୍କୁ ଚିହ୍ନି ପାରିଲି ନାହିଁ।' କୌଣସି ଜବାବ ନଦେଇ ରାଘପ୍ପା ତାଙ୍କୁ ଦଣ୍ଡବତ କଲା। ଏହା ନାଟକୀୟ ମନେହେଲେ ସୁଦ୍ଧା ପାଦଛୁଇଁ ପ୍ରଣାମ ଗ୍ରହଣ କରିବାର ଯଥେଷ୍ଟ ଅନୁଭୂତି ଦେଶାଇଜୀଙ୍କର ଥିଲା। କେବଳ ଗାଁର ଚାଷୀମାନେ ନୁହନ୍ତି, ଚାକିରି ପାଇଁ ସାହାଯ୍ୟ ଲୋଡୁଥିବା ଓ କରଜ ପାଇଁ ଆସିଥିବା ସୁସଂସ୍କୃତ ଭାଗ୍ୟହୀନ ମଧ୍ୟ ତାଙ୍କୁ ପ୍ରାୟତଃ ଦଣ୍ଡବତ କରୁଥିଲେ। ସେ ଝୁଙ୍କିପଡ଼ି ରାଘପ୍ପାକୁ ଉଠାଉ ଉଠାଉ ଆହା, ଏମିତି ସମସ୍ତଙ୍କ ପାଦତଳେ ପଡ଼ନ୍ତି ନାହିଁ କହି ବସିବା ଘରକୁ ନେଇ ଗଲେ।

ସକେଇ ହେବାର ଅଭିନୟ କରି ରାଘପ୍ପା କହିଲା, 'ରାୟ ସାହେବ, ମୋତେ ସଙ୍କଟରୁ ଉଦ୍ଧାର କରିବାର ଶକ୍ତି କେବଳ ଆପଣଙ୍କର ହିଁ ଅଛି। ସେଥିପାଇଁ ଆପଣଙ୍କ ଶରଣକୁ ଆସିଛି।

'ମୋର ନାଁ ବିନ୍ଦଗୋଠୁ ରାଘପ୍ପା। ଆପଣଙ୍କ ପଡ଼ୋଶୀ ଗଙ୍ଗପ୍ପା ମୋରି ଭଉଣୀ। (ଦେଶାଇଙ୍କର ମୁହଁ ବିତୃଷ୍ଣାରେ ଭରିଯିବାର ଦେଖି ସୁଦ୍ଧା ନ ଦେଖିଲା ଭଳି ରାଘପ୍ପା ନିଜର କଥା ଚାଲୁରଖିଥାଏ।) ତା'ର ଆଉ ମୋର ମନଫଟାଫଟି ହେବାର ଦଶବର୍ଷ ବିତିଗଲାଣି। ମାତ୍ର ଭଗବାନଙ୍କର ଖେଳ ଦେଖନ୍ତୁ, ମୋତେ ନିଜ ଭଉଣୀ ସହିତ ମିଳାମିଶା କରିବା ପାଇଁ ପୁଣି ଆପଣଙ୍କ ପରି ଗୁଣଉଜନଙ୍କର ପାଦ ଧରିବାର ମଉକା ମିଳିଲା। ଯେ ପର୍ଯ୍ୟନ୍ତ ବିନ୍ଦଗୋଠୁରେ ଥିଲି ସେ ପର୍ଯ୍ୟନ୍ତ ସ୍ୱପ୍ନରେ ମଧ୍ୟ କେବେ ଭାବି ନଥିଲି ଯେ ଏମିତି ପରିସ୍ଥିତି ଉପୁଜିବ। ଗାଁ ଛାଡ଼ି ପିଲାଙ୍କୁ ଦିଅକ୍ଷର ପଢ଼ାଇବା ଲାଗି ଏଠାକୁ ଆଣିଲି ଯଦି ମୁଣ୍ଡରେ ଏହାହିଁ ପଡ଼ିଲା।' ଏହା କହି ରାଘପ୍ପା ଦୀର୍ଘଶ୍ୱାସ ନେଲା।

ଦେଶାଇଜୀଙ୍କ ଆଖି ଆଗରୁ ପରଦା ଘୁଞ୍ଚିଗଲା। କଥାଟା ଯେ କ'ଣ ସେ ବୁଝିଗଲେ। ସାଧାରଣ ସଂସାରୀ କଥା ପାଇଁ ଏତେ ଅଭିନୟ ଦରକାର ନଥିଲା। ଅନ୍ତିମ ପରିଣାମକୁ ଆଖିରେ ରଖି ଯେତିକି ସମ୍ଭବ ସେ ସବୁ ଶୁଣିବାକୁ ପ୍ରସ୍ତୁତ ହୋଇଗଲେ। ତେଣୁ ଏ ଅଭିନୟକୁ ସହିଗଲେ।

'କାହିଁକି, ଏବେ କ'ଣ ହେଲାକି ?'

ଏଠାକୁ ଆସିଲାପରେ ଅକସ୍ମାତ୍ ମୋର ଆମ କିଟ୍ଟୀ ସହିତ ଦେଖା ହୋଇ ଗଲା। ଦେଖନ୍ତୁ, ରକ୍ତର ସମ୍ପର୍କ, ଯେତେ ଯାହା ହେଉନା କାହିଁକି ମନ ମାନୁଛି କେତେବେ। ଗଙ୍ଗପ୍ପା ହେଲା ସ୍ତ୍ରୀ ଲୋକ। ନିଜର ଜିଦ୍ ଛାଡୁନାହିଁ। ଅନ୍ତତଃ ପିଲାଟା ସହ ଆଗପରି ସମ୍ପର୍କ ଥାଉ ଭାବି କିଟ୍ଟୀ ତାକୁ ତିନିଚାରିଥରଚା'ପିଇବାକୁ ଘରକୁ ଡ଼ାକି ନେଇଥିଲି। ମୁଁ ଏହାଜାଣେ, ଗଙ୍ଗପ୍ପା ନାରାଜ ହେବ, ତେବେବି ନେଇଗଲି; କାହିଁକି ନାଁ ମୋର ଅପୁତ୍ରିକ ଘର, ପୁଅ ନାହିଁ। କୀଟର୍ଣ୍ଣାକୁ ଦେଖିଲେ ମନ କ'ଣ ହୋଇଯାଏ। କିନ୍ତୁ କ'ଣ କରିବାକୁ ଯାଇ କ'ଣ ହେଲା। କ'ଣ ହୋଇଗଲା କହି

ଏବେ ଲାଭ ନାହିଁ। ଗଙ୍ଗୱା ଭଲା କାହିଁକି ଛାଡ଼ିଦେବ? ମାତ୍ର ଆପଣଙ୍କ ପରି ମହାନୁଭବୀ ନିଶ୍ଚୟ କହିବେ ଯେ ଯାହାକିଛି ହୋଇଛି ଭଲ ହୋଇଛି। ମୋ ବଡ଼ଝିଅ ରତ୍ନାକୁ ବାହା ହେବା ପାଇଁ କିଟୀ ମୋ ପଛରେ ଲାଗିଛି।....ଦେଖାଇଜୀ, ଏକଥା ନୁହଁ ଯେ ଝିଅ ଦେବାପାଇଁ ମୋର ଇଚ୍ଛା ନଥିଲା। କିନ୍ତୁ ମୁଁ ସ୍ୱପ୍ନରେ ମଧ ଭାବିନଥିଲି ଯେ କିଟୀ ଏମିତି ଅଡ଼ିବସିବ। ଏ ତ ଗଲା କିଟୀର କଥା। ଏଣେ କଥାଟା ବାଟଘାଟରେ ପ୍ରଚାର ହୋଇଯାଇ ଥିବାରୁ ଆମ ରତ୍ନାକୁ ତା'ର ସାଙ୍ଗମାନେ 'ଇଏ ତୋର ସ୍ୱାମୀ' କହି ଚିଡ଼ାଉଛନ୍ତି। କଥାଟା ବାରମ୍ବାର ତା' ମୁଣ୍ଡରେ ପୂରାଇ ଦିଆ ଯାଇଛି।

'ଏମିତିରେ ଦେଖିବାକୁ ଗଲେ ସଭିଏଁ ଖୁସିରେ ଏ ବିବାହ ପ୍ରସ୍ତାବକୁ ମାନିନେବା ଦରକାର। ରକ୍ତର ସମ୍ପର୍କ ରାୟସାହେବ। କିନ୍ତୁ ଗଙ୍ଗୱାର ମୋ ଉପରେ ସନ୍ଦେହ। କାହିଁକି? ମୁଁ କିଛି ଜାଣେ ନାହିଁ। ଏମିତିରେ ଆମ ଗଙ୍ଗୱା ସେତେ କଠୋର ନୁହଁ ରାୟସାହେବ। ତା'ର ମନ କେଡ଼େ ଉଦାର ସେକଥା ମୋ'ଠାରେ ଛପି ରହିନାହିଁ। ମୋ 'ବାହାଘରରେ ବଡ଼ ଉତ୍ସାହରେ ଖିଆପିଆର ବନ୍ଦୋବସ୍ତ କରିଥିଲା। ବ୍ରାହ୍ମଣଙ୍କୁ ନିଜ ହାତରୁ ଜଣ ପିଛା ଦି'ଟଙ୍କା କରି ଦକ୍ଷିଣା ଦେଇଥିଲା। ହେଲେ ଭାଗ୍ୟ ଖରାପ, ତା'ର ମଧ, ଆମର ମଧ। ସମୟ ଖରାପପଡ଼ିବାରୁ ତା' ସଭିଙ୍କ ଉପରେ ଏକ ଅଦ୍ଭୁତ ସନ୍ଦେହ ଯେ ଏଇମାନଙ୍କ ହେତୁ ମୋର ଘର ଉଜୁଡ଼ିଗଲା। ସେଇଟା ତା'ର ଦୋଷବୋଲି ମୁଁ କହୁ ନାହିଁ। କେତେ ବଡ଼ ବଡ଼ ଥିଲାବାଲା ପୁରୁଷ ଧନହରାଇ ପାଗଳ ହୋଇଯାଇଛନ୍ତି, ଇଏତ ଛାର ଅସହାୟ ସ୍ତ୍ରୀ ଲୋକଟାଏ, ତଥାପି ତ ବଞ୍ଚିଛି। ଛମାସ ଭିତରେ ଟଙ୍କା ଗଲା, ସମ୍ପତ୍ତି ଗଲା, ସ୍ୱାମୀ ଗଲା— ଏଥିରେ ତା'ର ଆଉ ଦୋଷବା କ'ଣ? ଆପଣଙ୍କ ପରି ବଡ଼ଲୋକ ତାକୁ ସାନ୍ତ୍ୱନା ଦେବା ପାଇଁ ଯାହେଉ ପାଖରେ ଥିଲେ। ଜ୍ଞାତି କୁଟୁମ୍ବକୁ ସେ ପସନ୍ଦ କରେ ନାହିଁ। ଛାଡ଼, ଭାଗ୍ୟ ଉପରେ କାହାର ହାତ ଅଛି।

'ଏବେ ମୋରି ହାଲ ଦେଖନ୍ତୁ। ଏଣେ କିଟୀ ମୋ ଜୀବନ ଖାଉଛି। ଫେର କହୁଥିଲା ଆପଣ ତାକୁ ଝିଅଟିଏ ଦେଖାଇଥିଲେ। ଆପଣଙ୍କ ପରି ପୁରୁଖା ଲୋକ ତାରି ଭଲମନ୍ଦ ଚିନ୍ତା କରିଛନ୍ତି, ଏହାହିଁ ବଡ଼ କଥା। ଏହା ଭାବି ମୁଁ ନିଜର ଭଉଣୀ ପାଖକୁ ନଯାଇ, ଆପଣଙ୍କ ପାଖକୁ ଆସିଛି। ସେପଟେ ସେ ପାଗଳି ଝିଅ—ରତ୍ନା....ଏବେ ଯାଏ...ସବୁ ଭଲ; କିନ୍ତୁ ଆଜିକାଲି ଝିଅ, ସିନେମା ଥିଏଟର ଦେଖି ଦେଖି ନମୁନାଟିଏ ପରି ହୋଇ ଯାଇଛନ୍ତି। କାଲି ଯଦି ଗଙ୍ଗୱା ଯୋଗୁଁ ବା ଅନ୍ୟ କୌଣସି କାରଣରୁ କିଟୀ ବାହାହେବାକୁ ମନା କରିଦିଏ ତେବେ ରତ୍ନା ନିଜର ସାଙ୍ଗସାଥି ମେଳରେ କେମିତି ବଂଚିରହିବ। ପାଞ୍ଚଜଣକୁ ମୁହଁ ଦେଖାଇବ କେମିତି?....ତହିଁରେ ପୁଣି ଝିଅ ପିଲାର କୋମଳ ମତି, ଅଳ୍ପ ବୟସ, ଅସ୍ଥିର ସ୍ୱଭାବ, ବଡ଼ ବିପଜ୍ଜନକ। ଏମିତି ସଙ୍ଗୀନ ଅବସ୍ଥା ଆସି ପହଞ୍ଚିଛି ଯେ କେବଳ ଭଗବାନହିଁ ଭରସା...।

'ରାୟ ସାହେବ, ଇଏ ବଡ଼ କଥା ନୁହଁ। ଏ ସବୁକୁ ମୁଁ କୌଣସି ପ୍ରକାରେ ସମ୍ଭାଳି ନେବି। ମୂଳକଥା ହେଲା ଆପଣ ଥରେ ଦେଖନ୍ତୁ...। ଏମିତିରେ କିଟ୍ଟୀର ଦାୟିତ୍ୱ ଆପଣ ନେଇଛନ୍ତି, ତେଣୁ ମୋ ଝିଅକୁ ଥରେ ଆପଣଙ୍କୁ ଦେଖାଇବି। ଆପଣ ଯେମିତି ଚାହାନ୍ତି ତାକୁ ପରୀକ୍ଷା କରନ୍ତୁ। ଆପଣଙ୍କ ମନ ସନ୍ତୋଷ ହେଲେ ଏ ପ୍ରସ୍ତାବରେ ହଁ ଭରିବେ। ଆଉରି କଥାଟିଏ। ରକ୍ତର ସମ୍ପର୍କ ରକ୍ତ ସହ। ଗଙ୍ଗୱ୍ୱା ମୋ ପାଇଁ ଯେତେ ବିଷ ଉଦ୍‌ଗାରୁ ପଛକେ କିଟ୍ଟୀକୁ ଦେଖିଲେ ମୋର ଛାତି କୁଣ୍ଢେମୋଟ ହୋଇଯାଏ।...ମୋ ରତ୍ନା ରତ୍ନ ପରି....ଏମିତି କଥା ନୁହଁ ଯେ ମୁଁ.....।'

ଏତିକିବେଳେ ରାଘୱାର ଦୃଷ୍ଟି କବାଟ ପାଖରେ ଠିଆ ହୋଇ ସବୁକଥା ଶୁଣୁଥିବା ବିଶୁବାଈଙ୍କ ଉପରେ ପଡ଼ିଲା। ସେ ଦଣ୍ଡେ ଅଟକି ଇଆଡ଼େ ସିଆଡ଼େ ଥରେ ଚାହିଁ ପୁଣି ନିଜକଥା କହିଚାଲିଲା। ଏଇ କୁହାଳିଆର କଥାକୁ ସ୍ୱାମୀ ମୁହଁବୁଜି ଶୁଣୁଥିବାର ଦେଖି ବିଶୁବାଈ ସହିପାରିଲେ ନାହିଁ। ମଝିରେ ହିଁ କହି ଉଠିଲେ।—

'ଆମର କ'ଣ ଅଛି ହୋ! ଛାଡ଼! କିଟ୍ଟୀ ଯାହାକୁ ବାହା ହେଉ ଆମର କ'ଣ ଯାଏ ଆସେ? ବିଚାରୀ ଗଙ୍ଗୱ୍ୱା ଅନେକ ଦୁଃଖ ସହିଛି, ପୁଅ ନାଁ ପଡ଼ିଲେ ଜୀବନ ଦେଇଦେବ। ସେ ଯେଉଁ ଦୁଃଖ ସହିଛି ତାକୁ ଆମେ ଆଖିରେ ଦେଖିଛୁଁ। ଏତେ ସାହସ କରି ଏ ଯାଏଁ ନେଇ ଆସିଛି, ତାକୁ ଟିକିଏ ସୁଖ ମିଳୁ ଏହାହିଁ ଆମର ଇଚ୍ଛା।'

କଥାଟା ଦେଶାଇବାବୁଙ୍କ ମନକୁ ପାଇଲା। ଯେତେଦୂର ସମ୍ଭବ ଏ ବିଷୟରେ ମୁଣ୍ଡ ପୂରାଇବେ ନାହିଁ ଭାବିଥିବାରୁ ବିଶୁବାଈଙ୍କ ଶେଷ ପଦ ଆମର ଇଚ୍ଛାଟି ତାଙ୍କର ମନକୁ ପାଇଲା ନାହିଁ। ସେ କହିଲେ, 'ଆମର ନା କୌଣସି ଇଚ୍ଛା ଅଛି ନାଁ ଅଛି କିଛି ସ୍ୱାର୍ଥ।'

'ଏମିତି ଦେଖିଲେ ଗଙ୍ଗୱ୍ୱା ଆମର କିଏ; କୃଷ୍ଣ ବା ଆମର କିଏ? ଏ ବିଷୟରେ ମୁଁ ପ୍ରଥମରୁହିଁ ଜଡ଼ିତ ହେବାକୁ ଚାହୁଁ ନଥିଲି। ଆପଣ ଗଙ୍ଗୱ୍ୱାକୁ ଦେଖା କରି ମନେଇ ନିଅନ୍ତୁ। ଯଦି ଚାହିଁବେ ବିବାହରେ ଆଶୀର୍ବାଦ କରିବା ପାଇଁ ମୁଁ ଅବଶ୍ୟ ଯିବି।'

'ରାୟସାହେବ, ପ୍ରକୃତରେ ସେ ପିଲାଟିର ଭଲମନ୍ଦ ଚିନ୍ତା କରିବା ଲୋକ ଆପଣ। ଆପଣ ନଥିଲେ ବିଚାରୀ ଗରିବ ଗଙ୍ଗୱ୍ୱା କ'ଣ କରି ପାରିଥାନ୍ତା? ଦେଶାଇଜୀ କଥା ମଝିରୁ ଉଠି ବାହାରକୁ ଗଲେ। ରାଘୱା ବିଶୁବାଈଙ୍କ ସହ କଥା କହିଚାଲିଥାଏ। 'ସେ ପିଲାଟା ପାଇଁ ଆପଣମାନେ କ'ଣ ନ କରିଛନ୍ତି। ସେ କଥା ସେ ନିଜେ କହୁଛି। ସାରା ଦୁନିଆ କହୁଛି। ପିଲାଟାତ ଆପଣଙ୍କ ଉପରେ ହିଁ ଭରସା ରଖିଛି। ଦେଶାଇଜୀ ନିଜକୁ ଆଉ ରୋକିପାରିଲେ ନାହିଁ। ଉଠି ପଡ଼ି ସିନ୍ଦୁକ ଖୋଲି, କିଟ୍ଟୀର ଚିଠି ବାହାର କରି ରାଘୱାର କଥା ଶେଷ ହେଲାମାତ୍ରେ ତା' ଆଖି ଆଗରେ ମେଲାଇ ଧରିଲେ।

ଚିଠି ରାଘୱା ଟିକିଏ ସଂକୋଚିତ ହୋଇ ପଡ଼ିଲା। ମାତ୍ର ତଳଟିପଣୀ ଦେଖି

ସେ ଭରସା ପାଇଲା। କହିଲା, 'ହଁ ହଁ, କିଟୀ କହୁଥିଲା, ''ଦେଶାଇଜୀ କଷ୍ଟକରି ମୋ ପାଇଁ ଝିଅ ଖୋଜୁଛନ୍ତି। ମୋ ମନ ରଦ୍ଧା ଆଡ଼କୁ ଟାଣୁଛି ତାଙ୍କୁ ଏକଥା କହିବାକୁ ସାହସ ହେଉନାହିଁ। କିନ୍ତୁ ସାହସ କରି ତାଙ୍କଠାରୁ ଏ ବିଷୟରେ ଆଶୀର୍ବାଦ ମାଗିନେବି।'' ଆପଣଙ୍କ ପ୍ରତି ତା'ର ଏତେ ସମ୍ମାନ ଓ ଭୟ।'

ପିଲାଙ୍କ ପରି ଏ ବହଲାଇବା ପଣ ସହ ଦେଶାଇଜୀ ପରିଚିତ। ପରିଣତି କଥା ଭାବି ସେ ନିଜର କ୍ରୋଧକୁ ରୋକି ନେଲେ। କହିଲେ,

'ଏ ଚିଠିର ଉଦ୍ଦେଶ୍ୟ ଯାହାବି ହେଉ....ସଭିଙ୍କ ପରି ମୁଁ ମଧ ଚାହେଁ ଗଙ୍ଗୁା ସୁଖୀ ହେଉ।'

'କାହିଁକି ହବ ନାହିଁ ରାୟସାହେବ? ଭଗବାନ ମୋତେ ମିଛ ନ କୁହାନ୍ତୁ। ଗଙ୍ଗୁା ସହିତ ମୁଁ କେମିତି ସମ୍ପର୍କ ରଖିବି ସେକଥା ଆପଣମାନେ ଦେଖିବେ। ତା'ର ଅନେକ ଉପକାର ବୋଝ ମୋ ଉପରେ ଅଛି। କ'ଣ କରିବି କହନ୍ତୁ, କିଛି ଉପାୟ ନଥିବାରୁ ଚୁପ୍ ହୋଇ ରହିଛି। କଥାଟିଏ, କେବଳ ଆପଣଙ୍କୁ କହୁଛି,.....ମୋର ମୋଟରେ ଦୁଇଟି ଝିଅ। ବଡ଼କୁ କିଟୀକୁ ଦେଇ ଗଙ୍ଗୁାକୁ ପାଖକୁ ଆଣିବାକୁ ଚାହୁଁଛି। ଏ ହେଲା ମୋର ପ୍ରଥମ ଇଚ୍ଛା-। ଦ୍ୱିତୀୟ ଝିଅ ବଡ଼ ହେବାକୁ ଏବେ ଆଉରି ପାଞ୍ଚ ବର୍ଷ ଲାଗିବ, ଦି'ଚାରି ହଜାର ଖର୍ଚ୍ଚ କରି ତାକୁ ଭଲ ଜାଗାରେ ବାହା କରାଇଦେବା ମୋର ଦ୍ୱିତୀୟ ଇଚ୍ଛା। ତୃତୀୟ କଥା ହେଲା କିଟୀକୁ ପୋଷ୍ୟପୁତ୍ର କରି ନେବି। ଏହା ମୋର ଆନ୍ତରିକ ଇଚ୍ଛା।.....ଏକଥା ଠିକ୍ ଯେ ଗଙ୍ଗୁାର ଗୋଟିଏ ମାତ୍ର ପୁଅ, ମାତ୍ର 'ଦ୍ୱାୟମୁଷାୟଣ' ପୋଷ୍ୟ ନିଆଯାଇପାରେ। ଢ଼େର ଲୋକଙ୍କର ମୁଁ ଏପରି ପୋଷ୍ୟ କରାଇ ଦେଇଛି। ଠାକୁରଙ୍କୁ ସାକ୍ଷୀରଖି ମୁଁ କହୁଛି, ଆଦୌ ଧୋକା ଦେବି ନାହିଁ। ନିଜର ରକ୍ତ, ଧୋକା ଦେବି ବା କେମିତି? ...ବର୍ଷ ପୂରିଲେ ମୋର ହଜାର ଟଙ୍କା ଆୟ। ଏ ବାହାଘରରେ ଯଦି ଅଳ୍ପ ସଳ୍ପ ଜମି ହାତରୁ ବାହାରି ଯାଏ, ତେବେ ସୁଦ୍ଧା ଅତିକମ୍‌ରେ ବର୍ଷରେ ସାତ ଆଠଶହଟଙ୍କା ହାତରେ ରହିବ। ଏତକ କିଟୀ ଜିମା କରି ଦେଇ ଭଗବାନଙ୍କ ନାଁ ନେଇ ଦି' ଦଣ୍ଡ ଜୀଇଁ ରହେଁ, ତା'ର ପିଲାମାନଙ୍କୁ ଖେଳାଇ ଆଖି ବୁଜେଁ -ଏହା ହିଁ ଆମ ସ୍ୱାମୀ ସ୍ତ୍ରୀଙ୍କର ଇଚ୍ଛା। ...ପିଲାଟାର ସ୍ୱଭାବ ଭଲ। ମୋରି ନିଜର ଯେ! ମଲାପରେ ତାହାତରୁ ଆମକୁ ପିଣ୍ଡ ମିଳିବ, ଏଥିରେ ମୋର ଭରସା ଅଛି। ଇଏ ମୋର ଅନ୍ତରର କଥା, ମନଖୋଲି ଆପଣଙ୍କ ଆଗରେ କହିଦେଲି। ଏପଟେ ଛୁରୀ, ସେପଟେ ତରଭୁଜ, ସବୁ ଆପଣଙ୍କ ହାତରେ, ଯାହାଇଚ୍ଛା କରନ୍ତୁ। ଏକ ନିର୍ବାକ ମୌନତା ଛାଇ ଗଲା; ଏହା ଦେଖି ରାଘସା ଅନ୍ତିମ ବାଧାକୁ ହଟାଇ ଦେବା ପାଇଁ ଉଦ୍ୟତ ହେଲା।

'ଏବେ ଯଦି ଆପଣ କହିବେ ଯେ ଏ ସବୁ କଥା ନିଜ ଭଉଣୀକୁ କହ, ତେବେ ମୁଁ ଏଇ ଉତ୍ତର ଦେବି, ...ସେ କଥା କହିବା ଅପେକ୍ଷା ଆପଣ ଏକଥା କାହିଁକି କହିଦେଉନାହାନ୍ତି ଯେ ରାଘସା ତୁମେ ଲୋକ ଭଲ ନୁହଁ। ତୁମ ଝିଅ

ଆମର ପସନ୍ଦ ନୁହଁ, ତୁମେ ନିଷ୍ଚିଣ୍ତ ହୋଇ ମର...। ଏ ସବୁ କହି ମୋତେ ଘରୁ କାଢ଼ି ଦିଅନ୍ତୁ। ତହିଁରେ ମଧ୍ୟ ମୁଁ ଖୁସି। କିନ୍ତୁ ଆପଣ ଯଦି କହନ୍ତି "ଯା'ଅ ନିଜ ଭଉଣୀକୁ ବୁଝାଅ'', ତେବେ ସେ କଥା ମୋ ଦେଇ ହେବ ନାହିଁ। ତାହା ଆପଣଙ୍କ ପରି ଗୁରୁଜନଙ୍କର କାମ। କାହିଁକି, ଭାଇ ଭଉଣୀ ଭିତରେ କ'ଣ କଳି ହୁଏ ନାହିଁ? ନାଁ ଆପଣଙ୍କ ପରି ବଡ଼ବଡ଼ିଆମାନେ ତାକୁ ମେଣ୍ଟାନ୍ତି ନାହିଁ? ...ଏତେ ଲୋକଙ୍କର ଭଲ ପାଉଥିବା ଲୋକ ମୋତେ ଯଦି ଖାଲି ହାତରେ ଫେରାନ୍ତି, ତେବେ ଏହାକୁ ମୁଁ ନିଜର ଦୁର୍ଭାଗ୍ୟ ବୋଲି କହିବି।

ରାଘବ୍ଜାର ତର୍କ ଜାଲରେ ପଡ଼ି ଦେଶାଇଜୀ ଛଟପଟ ହୋଇ ଉଠିଲେ। ତାଙ୍କର ମନେ ହେଲା ଯେପରି ତାଙ୍କର ପରୀକ୍ଷାର ମୁହୂର୍ତ୍ତ ଆସିଛି। ଦୁନ୍ଦୁରୁ ଶିବଜ୍ଜାର ଝିଅ ବଡ଼ ହୋଇଥିଲେ କଥା ଭିନ୍ନ ପ୍ରକାର ହୋଇଥାନ୍ତା। ଏବେ ଏକତରଫା ରାୟ ଦେବାକୁ ପଡ଼ିବ। କିଟ୍ଟୀର ଭଲ ମନ୍ଦ ଉପରେ ନଜର ରଖିବାକୁ ହେବ। କିଟ୍ଟୀ ଯଦିବା ମୂର୍ଖାମୀ କରିଥାଏ, ମୁଁ ନିଜର ବିବେକ ହରାଇବା ଉଚିତ ହେବ ନାହିଁ। ଏ କାମ ମୋରି ଦ୍ୱାରା ହେବ। ଲୋକେ କାହିଁକି ଆସି ମୋର ଜୀବନ ଖାଉଛନ୍ତି? ମୋର ନିଜର ଦୁଃଖ କାହିଁରେ କ'ଣ। ଏହିପରି ଭାବି ମନକୁ ମନ ବିରକ୍ତ ହୋଇ ସେ ଶେଷକାମଟି ପାଇଁ ପ୍ରସ୍ତୁତ ହେଲେ। ଗଙ୍ଗୱାକୁ ଡାକି ଆଣିବା ପାଇଁ ଭରମାକୁ ପଠାଇ ଦେଲେ।

# 17. ଗଙ୍ଗୱା ଓ ରାଘୱା

ଭରମାଠାରୁ ଯେଉଁସବୁ ସୂଚନା ମିଳିଲା, ତହିଁରୁ ଗଙ୍ଗୱା ଅନୁମାନ କଲା, ରାଘୱା ହିଁ ଆସିଛି। ସେ ସହଳ ପାଦପକାଇ ସିଧା ଦେଶାଇଜୀଙ୍କ ବସିବାଘର ପାଖରେ ପହଞ୍ଚି ବାହାର ବାରଣ୍ଡାକୁ ଆଉଜି ବସିପଡ଼ିଲା। ବିଶ୍ଣୁବାଈ କହିଲେ 'ଭିତରକୁ ଆ ଗଙ୍ଗୱା।' ସେ ସେଇଠି ବସି ରହିଲା। ତହୁଁ ରାଘୱା ମୁହଁ ଖୋଲିଲା, 'ଗଙ୍ଗୱା ଭିତରକୁ ଆ। ଭୁଆସୁଣୀ ପରି ବାରଣ୍ଡାରେ ବସିଲୁ କାହିଁକି ?'

'ଏଇଠି ବସିଛି ଭାଇ, ଯିଏ ଯେତିକିର ଲୋକ ସେ ସେତିକିରେ ରହିବା ଭଲ।' ରାଘୱାର ଚାଲାକି କଥା ଗଙ୍ଗୱାର ସିଧାଚୋଟ ଆଗରେ ହାର ମାନିଯାଏ। ବିଶ୍ୱ ବିଜେତା ରାଘୱା ବୁଝିପାରେ ନାହିଁ ଯେ ସେ କାହିଁକି ଭଉଣୀକୁ ଟିକିଏ ଡ଼ରେ। ଖାଲିରେ ଠିଆ ହୋଇ ଯୁଝୁଥିବା ସିପାହୀ ଅପେକ୍ଷା ଢ଼ିପ ଉହାଡ଼ରେ ଠିଆ ହୋଇ ଯୁଝୁଥିବା ସିପାହୀର ଆଘାତ ଅଧିକ ମାରାତ୍ମକ ହୁଏ। ସେଇପରି ଏବେ ଗଙ୍ଗୱାର ଆଘାତ କାନ୍ଥ ଉହାଡ଼ରୁ ଆସୁଥିବାରୁ ଅଧିକ ଗଭୀର ଥିଲା। ଦେଶାଇଜୀଙ୍କ କଥା ଉପେକ୍ଷା କରି ସେ ଯେଉଁଠି ବସିଥିଲା ସେଇଠି ବସିରହିଲା। ଆଗରେ ଆସି ବସିବାକୁ ପ୍ରସ୍ତୁତ ହେଲାନାହିଁ। ତାର ଅନ୍ୟ ଗୋଟିଏ କଥାପ୍ରତି ଡ଼ର, ସାନ ଭାଇ ଆଗରେ ବସିଲେ ଯଦି ତାକୁ ଦେଖି କରି ମନ ତରଳି ଉଠିବ ତେବେ କଣ ହେବ। ତାର ସୁନ୍ଦର କଥାଜାଲରେ ସେ ଭୁଲିବ ନାହିଁ, ଏକଥା ନିଶ୍ଚୟ କରି ସେ ଘରୁ ଆସିଛି। ତେଣୁ କାନ୍ଥ ଉହାଡ଼ ହିଁ ତାକୁ ଠିକ୍ ମନେହେଲା।

ଦେଶାଇଜୀ ଗୌରଚନ୍ଦ୍ରିକା ଆରମ୍ଭ କଲେ। 'ଗଙ୍ଗୱା, ତୋର ସାନଭାଇ ସହ ମୋର ଭଲ ପରିଚୟ ନାହିଁ। ମାତ୍ର ଏଇ ଘଣ୍ଟାକ ଭିତରେ ଏଣୁ ତେଣୁ କଥା, ଘରଦ୍ୱାର କଥା ଅନେକ ହେଲାଣି। ତାଙ୍କ ଇଚ୍ଛା କୃଷ୍ଣ ସହ ତାଙ୍କ ଝିଅର ବିବାହ ହେଉ। ପରସୁଦିନ ଶିବପ୍ପାର ଝିଅକୁ କୃଷ୍ଣକୁ ଦେଖାଇଥିଲେ। ସେ କଥା ଶୁଣି ଇଏ ଏଠାକୁ ଆସିଛନ୍ତି। ତୋ ମତାମତ ନଜାଣି ମୁଁ କିଛି କହିପାରିବି ନାହିଁ। ସେଥିପାଇଁ ତୋତେ ଡକାଇଛି।'

ମଝିରୁହିଁ ରାଘୱା କହିଉଠିଲା 'ଛି ଛି, ଗଙ୍ଗୱାର ଆଶୀର୍ବାଦ ବିନା ଏ କାମ କେମିତି ସମ୍ଭବ ହୋଇପାରେ !'

ଗଙ୍ଗୱା ବ୍ୟଙ୍ଗ କରି କହିଲା, 'ମୋ ଆଶୀର୍ବାଦର ବା କଣ ଦରକାର। ତୁ ତୋର ବରଦ-ହସ୍ତ ତା ଉପରେ ରଖି ଦେଇଛୁ।'

'ସେ କଥା ଛାଡ଼ ଗଙ୍ଗୱା; ଯାହାବି ହେଉ ତୁମେମାନେ ନିଜର ଭାଇ ଭଉଣୀ। ଆଜି କଳିକରୁଛ, କାଲି ଏକ ହୋଇଯାଇ ଆମକୁ କହିବ। ଏବେ ମନଫଟାପଟି ଭୁଲିଯାଅ। ମୂଳ କଥାକୁ ଆସ। ତୁ ଝିଅ ଦେଖିବାକୁ ଚାହୁଁ?'

'ଗୋପର୍ଣ୍ଣା, କାହିଁକି ବେକାର କଥା କହୁଛୁ? ମୁଁ ସେ ଝିଅକୁ ଦେଖିବାକୁ ଚାହୁଁନାହିଁ, କିମ୍ବା ତା'ବାପକୁ ଚାହୁଁ ନାହିଁ। ଏ ଲୋକଙ୍କୁ ଦେଖି ଦେଖି ମୁଁ ଥକି ଗଲିଣି, ଭାବୁଛି କେବେ ମୋ ଆଖି ବନ୍ଦହୋଇଯିବ!'

ଦେଶାଇଜୀ ମୁହଁ ପୋତିଲେ। ମୋର କହିବା ବେଳ ଆସିଲା ଭାବି ରାଘସା ଠିଆହୋଇ ପଡ଼ିଲା। ଚାଦର ସଜାଡୁ ସଜାଡୁ କହିଲା 'ଗଙ୍ଗୱା, ଯାହା ହୋଇ ଯାଇଛି, ଯାଇଛି। ପଛ କଥା ଭୁଲିଯା। ମୋତେ ନିଜର ସାନ ଭାଇ ବୋଲି ମନେକରି ମୋ ଆଡ଼େ ଟିକିଏ ଚାହାଁ। କେତେ ଦିନ ରାଗିବୁ? ବିନା କାରଣରେ ଏ ଆକ୍ରୋଶ କାହିଁକି? ଦେଖ, ପଥର ମଧ୍ୟ ତରଳେ।'

'ହଁ ଭାଇ ରଘୁ, ମୋ ହୃଦୟ ପଥର। ତୋ ଧନ ଦେଖି, ତୋର ବିଭବ ଦେଖି, ତୋ ରକ୍ଷିତାକୁ ଦେଖି ମୋ ମନ ତରଳିଲା ନାହିଁ। ଏତେ ଦିନ ଦୁଃଖ ସହି କିଟ୍ଟୀକୁ ପାଳିପୋଷି ଏଡ଼େ ବଡ଼ କଲି। ମୁଁ ଏକା। ଆଗକୁ କିଏ ଥିଲା ନାଁ ପଛକୁ କିଏ ଥିଲା। କାହାର ଗୋଡ଼ ଧରି, କାହା ଘରେ କାମ ପାଇଟି କରି, କାହାକୁ ଅପଦସ୍ତ କରି, କାହାକୁ ବା ସ୍ନେହ ଦେଖାଇ କଣ କଣ ନ କରିଛି? ସେତେବେଳେ ତୁ କେବେ ମୋତେ ମନେ ପକାଇଛୁ? ଭାଇପଣିଆର କିଛି କାମ ତୁ କରିଛୁ? କେବେ ପଚାରିଛୁ ଯେ ଭଉଣୀ କେମିତି ଅଛୁ? ମୋ ଘରେ ଦାନାପାଣି ଅଛି କି ନାହିଁ? ଦିନଟିଏ...? ଆଉ ଆଜି କିଟ୍ଟୀ ଚାକିରୀ ପାଇଗଲାରୁ ମୋ କଥା ମନେ ପଡ଼ିଗଲା। ସେତେବେଳେ ତୋ ମନରେ ଦୟା ନଥିଲା?'

'ଗଙ୍ଗା, ତୁ ଶିକାରୀ କୁକୁର ପରି ମୋତେ ତୋ ଘର ତାଟି ମାଡ଼ିବାକୁ ଦେଇ ନଥିଲୁ। ଅଇଁଠା ପତ୍ର ସୁଦ୍ଧା ଦେଖିବାକୁ ଦେଇନାହୁଁ। ଅଛୁଆଁଙ୍କ ପରି ଆମକୁ ଦୂରେଇ ରଖିଥିଲୁ...?'

'ଆରେ ଭାଇ, ତୁ କାହିଁକି ଅଛୁଆଁ ହେବୁ, ଅଛୁଆଁ ଆମେ, ଯିଏ ନିଜର ଧନ ହରାଇ ବସିଛି। ପଇସା ଥିଲେ ସଭିଏଁ ନିଜର। ପଇସା ନଥିଲେ କେହି ପାଖ ପଶିବେ ନାହିଁ। ଏହାହିଁ ଦୁନିଆର ରୀତି।'

'ତୁ ମାନ ବା ନମାନ, ମୋତେ ଅନ୍ୟର ପଇସାମାରି ଖାଇ ଆସେ, ତାହା ମୋର ଲକ୍ଷ୍ୟ।'

କଥାଟା ଶୁଣିଲା ମାତ୍ରେ ଗଙ୍ଗୱା ଜଳି ଉଠିଲା। ଏ ଯାଏଁ କଥାବାର୍ତ୍ତା ଆରୋପ ପ୍ରତ୍ୟାରୋପରେ ସୀମିତ ଥିଲା। ଏବେ ଗଙ୍ଗୱା ରାଗରେ କଠୋର ହୋଇ କାନ୍ଥପାଖରୁ କବାଟ ପାଖକୁ ଘୁଞ୍ଚି ବସି ଫାଟି ପଡ଼ିଲା,–

'ଅନ୍ୟର ପଇସା ! ତୋ ପାଖରେ କେବେ ପଇସା ଥିଲା ? ମୋତେ ମାଲୁମ ନାହିଁ ନାଁ କଣ ? ଜମି ବନ୍ଧା ପଡ଼ିଥିଲା । ଆମେ ବରବାଦ ହୋଇଗଲା ପରେ ତୋ ଜମି ତୋ ହାତକୁ ଆସିଲା । ଆରେ, ଛାଡ଼ ତୋ ବାହାଦୂରୀ !'

'କାହିଁକି ଏମିତିକଥା କହୁଛୁ ଗଙ୍ଗୱା ? ତୋ ଧନ ମୁଁ ଚୋରି କରି ନେଇଛି ନାଁ ଲୁଟି ନେଇଛି ? ଗୋଟିଗୋଟିକରି ବିଚାର କରି ଦେଖ । ତୋର ବରବାଦ ହୋଇଗଲା, ଆଉ ମୋତେ ଦୁଃଖ ଲାଗିଲା ନାହିଁ, ଏଇ କଥା ତୁ କହିବାକୁ ଚାହୁଁଛୁ ?'

'ମୋତେ ବରବାଦ କରିବାଲୋକ ତୁ । ଆମକୁ ଜାମିନରେ ରଖେଇବା ଲୋକ ତୁ । ସେ ହାରାମ୍‌ଜାଦା ଭେଙ୍କାକୁ ଘରୁ ବାହାର କରିବାବାଲା ମଧ୍ୟ ତୁହି । ସେତେବେଳେ କଣ ତୋତେ ମାଲୁମ ନଥିଲା ଯେ ଭଉଣୀ ଗଲାରେ ଫାଶି ପଡ଼ିବ ? ତୋ'ରି ଯୋଗୁଁ ମୋର ସୁନାର ଘର ମାଟିରେ ମିଶିଗଲା । ମୋ ସ୍ୱାମୀକୁ ତୁ ହିଁ ଗ୍ରାସକଲୁ । ଭାଇରେ, ଦୁନିଆରେ ଅଂଶୀଦାର ଥାନ୍ତି, ହେଲେ ତୋପରି ଲୋକ ଦୀପ ଜଳାଇ ଖୋଜିଲେ ସୁଦ୍ଧା ଭୂଭାରତରେ ମିଳିବେ ନାହିଁ ।'

'ଟିକିଏ ରହିଯା ଗଙ୍ଗୱା । କିଏ ଜାଣେ ଆମର ଫେର ଆଉ କେବେ ଦେଖା ହେବ କି ନାହିଁ । ମୁଁ ବି ବହୁଦିନରୁ ଏମିତିକଥା ଶୁଣିଶୁଣି ଆସୁଛି । ଏବେ ଦେଶାଇଜୀ ମଧ୍ୟ ସାକ୍ଷୀ ରହିଲେ । ତୋର ପ୍ରତିକଥାର ଜବାବ୍ ମୋ ପାଖରେ ଅଛି । ଥରେ ଦିହିଙ୍କର ମନର କଥା ମୁହାମୁହିଁ ସାଫ୍ ସାଫ୍ ହୋଇଯାଉ । ମନରେ ଏ ସବୁ ଜମେଇ ରଖି ପଚାଇବା ଦରକାର ନାହିଁ । ପ୍ରଥମ କଥା ହେଲା, ଗଙ୍ଗୱା, ମୁଁ କଣ ଭେଙ୍କଟୀ ପାଇଁ ଜାମିନ ରହିବାକୁ କହୁଥିଲି ? ମୁଁ ନିଜେ ପଛରେ ରହି ସ୍ୱାମୀରାୟକୁ ଆଗକୁ ଠେଲି ଦେଇଥିଲି କି ? ନାହିଁ । ପରେ ଯାହା ଘଟିଲା ସେ ସବୁ ଭଗବାନଙ୍କ ହାତରେ କଥା । ତହିଁରେ ମୋ ଦୋଷ କଣ ? ଜାମିନ ଦେବା ପାଇଁ ମୁଁ ନିଜେ ଆଗେଇ ଆସିଥିଲି, ଓକିଲ କହିଲା, ତମ ଜମି ବନ୍ଧକ ଅଛି, ତୁମେ ଜାମିନଦାର ହୋଇ ପାରିବ ନାହିଁ । ତହୁଁ ସ୍ୱାମୀରାୟ ବାହାଦୂର ପରି କହିଲେ 'ତୁମେ ଚିନ୍ତା କରୁଚ କାହିଁକି ? ମୁଁ ଜାମିନଦାର ହେବି ।' —ଏକଥା ତୋର ମନେ ନାହିଁ ? ବଂଶର ମାନରକ୍ଷା ପାଇଁ, ସେ ପାଗଲାର ଜାମିନଦାର ଦେବାକୁ ସ୍ୱାମୀରାୟ ପରି ଭଲ ଲୋକ ଆଗେଇ ଆସିଥିଲେ । ସେ ପ୍ରାତଃସ୍ମରଣୀୟ, ସେ ଥିଲେ ତୁ ଲକ୍ଷେଟଙ୍କାର କ୍ଷତି ବରଦାସ୍ତ କରିଥାନ୍ତୁ ପଛକେ ଆମ ଉପରେ ଏପରି ବିଷ ବର୍ଷୁ ନ ଥାନ୍ତୁ । ଛାଡ଼, ଗଲା କଥା କହି କି ଲାଭ ? ମୁଁ ଭଗବାନଙ୍କୁ ହିଁ ଅଭିଶାପ ଦିଏଁ । ମୋର ଭାଗ୍ୟ ଖରାପ !'

'ଆରେ ଭାଇ, ଏସବୁ କଅଁଳ କଥା ଛାଡ଼... । ଏମିତି କହି କାହିଁ କେତେ ଲୋକଙ୍କୁ ଗ୍ରାସ କଲୁଣି, ହାକୁଟି ସୁଦ୍ଧା ମାରିଲୁ ନାହିଁ । ସାରା ଗାଁ ଏଇ କଥା କହୁଛି, ମୁଁ କଣ କହିବି ? ଏକଥାରେ ପଶିବା ବାଲା ମୁଁ ନୁହେଁ ।'

ଟିକିଏ ଥୟ ଧର, ମୋତେ କଥାଟା ସାରିବାକୁ ଦେ । ଆଜି ସାଫ୍ ସାଫ୍

କଥା ହୋଇ ଯାଉ, ମୋର ଯାହା କିଛି କହିବାର ଅଛି ସବୁ ତୋତେ ଶୁଣାଇ ଦେବି। ଶୁଣିସାରି, ତୁ ଚାହିଁଲେ ଭାଇବୋଲି କହ, ନଚାହିଁଲେ କାଟିଦେ। ତୋର ଏଇ ଧାରଣା ଯେ ତୁମମାନଙ୍କୁ ବୁଡାଇ ଦେବାଲାଗି ମୁଁ ଭେଙ୍କଟକୁ ବାହାର କରାଇଦେଲି। ତାକୁ ବାହାର କରାଇଦେଇ ମୋତେ କଣ ମିଳିଥାନ୍ତା ? ....ମୁଁ ତାକୁ ବାହାର କରାଇଦେବି ବା କାହିଁକି, ସେ ତ ଅଧାପାଗଳ। କାହା ପାପରୁ ପାଗଳ ହେଲା କିଏ ଜାଣେ ? ସେ ଦିନରାତିରେ ସେ ମୋ ଘରେ ଶୋଇଥିଲା, ଏକଥାସତ। ମାତ୍ର ତା ମାନେ ନୁହଁ ଯେ ମୁଁ ଚବିଶଘଣ୍ଟା ତାକୁ ନିଘା କରୁଥାନ୍ତି ନ ହେଲେ ତା ବେକରେ ପଘାପକାଇ ଖମ୍ବରେ ବାନ୍ଧି ପକାଇଥାନ୍ତି। ....ରାତି ଦଶଟା ହୋଇଥାଏ, ଅଳ୍ପ ଖାଇଲା, କହିଲା 'ଟିକିଏ ବୁଲି ଆସେ।' ଆଉ ଫେରିଲାନାହିଁ। ପଳେଇଗଲା। ତା'ପରେ କଣ ହେଲା ଜାଣୁ ? ତାକୁ ଖୋଜିବା ପାଇଁ ସ୍ୱାମୀରାୟ ମୋତେ ଶହେ ଟଙ୍କା ଦେଇ ପୁନା ପଠାଇଲେ। ତୋ ସ୍ୱାମୀ ମନରେ ମୁଁ ଭେଙ୍କଟୀକୁ ବାହାର କରାଇଦେଇଛି, ଏ ସଂଶୟ ନଥିଲା ! ତୋ ମୁଣ୍ଡରେ ଏକଥା ପଶିଛି କାହିଁକି ? ମୁଁ କିଛି ବୁଝି ପାରୁନାହିଁ। ସ୍ୱାମୀରାୟ ଆମଭାଇର ମାନରଖିଲେ। ସେମିତି ଦେଖିଲେ, ଗଙ୍ଗଓ୍ୱା ଭେଙ୍କଟୀ ମୋର ଭାଇ, ତୋର ବି ଭାଇ। ଏବେ ଯଦି ମୁଁ କହେଁ ଯେ ଭେଙ୍କଟୀ ତୋରି ଭାଇବୋଲି ସ୍ୱାମୀରାୟ ଜାମିନଦାର ହେଲେ ତେବେ ? ସ୍ୱାମୀରାୟ କ'ଣ ମୋର ଶତ୍ରୁ ଥିଲେ ? ମୋରି ଆଖି ଆଗରେ ଜାମିନ କାଗଜରେ ସ୍ୱାମୀରାୟ ସଇକଲେ– ମୁଁ କଣ ଏତିକି ଜାଣିନଥିଲି ଯେ ଭେଙ୍କଟୀକୁ ବାହାର କରାଇଦେଲେ ସ୍ୱାମୀରାୟ ବୁଡ଼ି ଯିବେ ? ଯଦି ତାଙ୍କର କିଛି ହୋଇଯାଏ ତେବେ ମୋ ଭଉଣୀର ଜୀବନ ଚାଲିଯିବ ଏକଥା କଣ ମୁଁ ଜାଣିନଥିଲି ?

ଗଙ୍ଗଓ୍ୱା ଏସବୁକଥା ଏତେ ବିସ୍ତାରିତ ଭାବରେ ଜାଣିନଥିଲା। ତାର ଜୀବନରସ୍ମୃତିରେ ଏଇ ଅଂଶତକ ବହୁ ଦୁଃଖରେ ଭରା। ଭେଙ୍କଟୀ ଚାଲିଯିବା ପରେ ତାକୁ ବହୁସ୍ଥାନରେ ଖୋଜି ଲୋକେ ଫେରିଲେ। ରାଘପ୍ପା ବିଷୟରେ ଅନେକ ଲୋକ ବାହାରେ ଅନେକ କଥା କହୁଥିଲେ। ମାତ୍ର ଘରେ ଏକତା ଥିବାରୁ ସେ ସବୁ କଥାର ପ୍ରତିଧ୍ୱନି ଘରକୁ ଆସୁ ନଥିଲା। ଘର ଉଜାଡ ହୋଇଯିବାରୁ ଦ୍ୱେଷ ଓ ସଂଶୟର ବାତାବରଣ ଜନ୍ମନେଲା। ଲୋକଙ୍କ କଥା ଗଙ୍ଗଓ୍ୱାର କାନକୁ ଆସିଲା। ଅନେକ ଅନେକ କଥା ଶୁଣି ଶୁଣି ଗଙ୍ଗଓ୍ୱା ମନରେ ଏ ଧାରଣା ବଦ୍ଧମୂଳ ହୋଇଗଲା ଯେ ରାଘପ୍ପାହିଁ ଭେଙ୍କଟୀକୁ ଘରୁ ବାହାର କରାଇଦେଇଥିବା ଲୋକ। ଏକଥା ସେ ବିନା ପ୍ରମାଣରେ ବିଶ୍ୱାସକରିନେଲା। ଛଅ ସାତମାସ ପରେ ଯେତେବେଳେ ତାର ସ୍ୱାମୀ ଚାଲିଗଲେ, ସେତେବେଳେ ତାର ସେ ବିଶ୍ୱାସ ଆଉରି ଦୃଢ଼ ହୋଇଗଲା। ଏକ କଥାରେ ଗଙ୍ଗଓ୍ୱା, ରାଘପ୍ପା ଓ ତାର ସ୍ତ୍ରୀ ତଥା ପିଲାଙ୍କ ନାଁରେ ତର୍ପଣ କରିଦେଲା।

ଏସବୁକଥା ସ୍ପଷ୍ଟ ହେବାରୁ ସେ ନିରୁତ୍ତର ହୋଇ ରହିଗଲା। ଟଙ୍କାର ବଳ କମିଯିବାରୁ ଦ୍ୱେଷ ଦୁଃଖ ରୂପରେ ତରଳି ଗଲା। ଏବେ ସେ ଅଧିକ ବାଦବିବାଦ କରିବାକୁ ଅସମର୍ଥ ହୋଇ ପଡ଼ିଲା। ପୁରୁଣା କଥା ମନେପଡ଼ିଯିବାରୁ ସେ ଲୁହ

ଗଡ଼ାଇ ଏତିକି କହିଲା –

'ତୁ ତାଙ୍କୁ ଖାଇକରିହିଁ ନିଶ୍ୱାସ ନେଲୁ।

ରାଘସା କଥା ସାରିବାକୁ ଦେଲା ନାହିଁ। କଥାଟିଏ କହିବାକୁ ବାକି ରହିଯାଇଛି। ଅନେକ ଦିନରୁ ସେ କହିବାକୁ ଚାହୁଁଥିଲା।

'ଗଙ୍ଗୁଆ ! ତୋ କଥାରେ ମୋତେ ରାଗ ଲାଗେନାହିଁ, କାରଣ ଏବିଷୟରେ ମୁଁ ବହୁତ ଭାବିଚି। ସେ ସବୁ ଦୋହରାଇ କିଛି ଲାଭନାହିଁ। କଥା ଉଠିଛି ବୋଲି ସାଫ୍ ସାଫ୍ କହିଦେଉଛି। ଏକଥା ସତ ଯେ ସ୍ୱାମୀରାୟ ପାଇଁ ସବୁଠୁ ବେଶୀ ଦୁଃଖ ତୁ ପାଇଛୁ। ମାତ୍ର ମୁଁ ନିଜ ବିଷୟରେ ମଧ୍ୟ କିଛି କହିବି। ତୁ'ତ ଘରର ଝିଅ, ସେଥିପାଇଁ ଭେଙ୍କଟର ଜାମିନ ତୋ'ରି ଦେବା ଉଚିତ ଥିଲା। ସେ ପଳାଇଗଲା ମୋ'ରିଘରୁ ଓ ସେଥିପାଇଁ ମୋ'ରି ଭଉଣୀ ଘର ଉଜୁଡ଼ି ଗଲା। ତେଣୁ କୌଣସି ନା କୌଣସି ପ୍ରକାରେ ମୁଁ ଭଉଣୀର କରଜ ସୁଝିବାକୁ ଚାହୁଁଥିଲି। ଆଉ ସେତିକିବେଳେ ଅକସ୍ମାତ୍ ସ୍ୱାମୀରାୟ ଚାଲିଗଲେ। ତାଙ୍କୁ ମାରିବା ଲୋକ ମୁହିଁ, ଏଇ ପଶ୍ଚାତ୍ତାପରେ ମୁଁ ଦାଣ୍ଡରେ ବୁଲିଛି – ଭଗବାନ ମୋ ଜୀବନ ନେଇନିଅ ପଛକେ ତାଙ୍କୁ ଫେରାଇ ଦିଅ। ଏସବୁ କଥା ତୋତେ ଯଦି ଜଣା ଥାନ୍ତା ! – ଛାଡ଼, ସେ ସବୁ ଯାଉ ! ତୋତେ ବା ଜଣା ହେବ କେମିତି ? ତୋର ଅସହନୀୟ ଦୁଃଖହିଁ ତୋ ପାଇଁ ଯଥେଷ୍ଟ ଥିଲା। ଏଥିରେ ତୋର ଦୋଷ କଣ ? ମାତ୍ର ଦେଶାଇଜୀ, ମୋର ଏତିକି କହିବା କଥା ଯେ – ମୋତେ ଜାଣିବା ଲୋକ ମଧ୍ୟ ଅଛନ୍ତି। ଅନ୍ତତଃ ଦୁଃଖ ଦେଲାବାଲା ଭଗବାନ ଜାଣନ୍ତି।'

କ୍ରମଶଃ ନିଜ କଥାର ରସ ବଢ଼ାଇ ରାଘସାର ସ୍ୱର ଉଚ୍ଚକୁ ଉଠିଲା। ତାର ମଧ୍ୟ ସେସବୁ ଦିନ ମନେ ପଡ଼ିଗଲା। ସେ ସବୁ ଘଟଣା ବଡ଼ ଦୁଃଖରେ ଭରା ଓ ଯେ କୌଣସି ହୃଦୟକୁ ଦୋହଲାଇ ଦେବା ନିମନ୍ତେ ଯଥେଷ୍ଟ। ସେ ନିଜେ ମଧ୍ୟ ତହିଁରେ ହଜିଗଲା। ତାର କଥା ଶେଷ ହେଲାବେଳକୁ ବାହାରେ ବସିଥିବା ଗଙ୍ଗୁଆର କାନ୍ଦଣା ଶବ୍ଦ ସଭିଙ୍କୁ ଶୁଣାଗଲା। ଦେଶାଇଜୀ ଝଟ୍‌କରି ବାହାରକୁ ଉଠି ଆସିଲେ। ରାଘସା ମଧ୍ୟ ଓଦା ଆଖିପତାକୁ ପୋଛୁ ପୋଛୁ ବାହାରି ଆସିଲା। ଦେଶାଇଜୀ ଆସିବାରୁ ଏ ଯାଏଁ ନିଜର କାନ୍ଦକୁ ଚାପିବାକୁ ଚେଷ୍ଟା କରୁଥିବା ଗଙ୍ଗୁଆ, ମୁଣ୍ଡ ଉପର ଓଢ଼ଣାକୁ ଚିବୁକଯାଏଁ ଟାଣି ଭୋଭୋ କରି କାନ୍ଦିଉଠିଲା। ଏ ଦୃଶ୍ୟ ଦେଖି ରାଘସା ତରଳିଗଲା। ତା' ଆଖିରେ ଲୁହ ଉଚ୍ଛୁଳି ଉଠିଲା। ତାର ପୁରୁଷ ସ୍ୱଭାବର କଠୋରତା ମଧ୍ୟରେ ଅନାୟାସରେ ଦୁର୍ବଳତା ଦେଖାଦେଲା। ଦି'ତିନିଥର ସେ ସକେଇ ହେଲା। ଏଇ ଦୁଇ ତିନି ମିନିଟର କନ୍ଦାକଟା ଭିତରେ ରାଘସାର ବ୍ୟାବହାରିକ ବୁଦ୍ଧି ପୁଣି ପୂରା ସଜାଗ ହୋଇଗଲା। 'କି ସୁନ୍ଦର ସୁଯୋଗ' ଭାବି ସେ ପୁଣି ନିଜର ଅଭିନୟ ଆରମ୍ଭ କଲା। ଧପ୍ କରି ଆଣ୍ଠୁମାଡ଼ି ମାଟି ଉପରେ ବସି ପଡ଼ିଲା, ମାଟି ଉପରେ ଚାଦର (ଉତ୍ତରୀୟ) ବିଛାଇ ଦେଇ କହିଲା, 'ଗଙ୍ଗୁଆ', ମୋର ଯାହା ଭୁଲ୍ ସବୁ ମାଫ୍ କରିଦେ। ଯାହା ହୋଇଯାଇଛି ସବୁ ଭୁଲିଯା।

ଥରେ ମୋତେ ସାନଭାଇ ବୋଲି ଡ଼ାକ !'

ପୁରୁଣା କଥା ଭିତରେ ହଜିଯାଇଥିବା ଗଙ୍ଗୱା ଭାଇର କଥାଶୁଣି କେତେକାଂଶରେ ତରଳି ଯାଇଥିଲା । କିନ୍ତୁ ରାଘସାର ଏଇ ନୂଆଚାଲ୍ ଦ୍ୱାରା ସେ ବାସ୍ତବତାକୁ ଫେରିଆସିଲା । ନିଜ ଭାଇର ଏ ପ୍ରକାର ଲୀଳାସହ ସେ ପରିଚିତ । ଫଳରେ ତାର ବିବେକ ଫେରିଆସିଲା ଓ ସେ ନିଜ ଭାବନାକୁ ଚାପିନେଲା । ଦଣ୍ଡକ ଭିତରେ ସେ ନିଜର କୋହ, ନାରୀ ସୁଲଭ ବାହୁନା ସବୁ ଭୁଲିଯାଇ ଚଟ୍‌କରି ଉଠିପଡ଼ିଲା ଓ କିଛି ନକହି ସଦମ୍ଭ ଦୁଆର ଟପି ନିଜ ଘର ଆଡ଼େ ଚାଲିଲା ।

ମୁଖ୍ୟ ବିଷୟ ନେଇ ଦେଶାଇଜୀ ପୁଣି ଗଙ୍ଗୱାସହ କଥା ହେବେ, ଏଇ ଆଶ୍ୱାସନା ପାଇସାରି ରାଘସା ସେଠାରୁ ଖସିଲା । ସେଦିନ ଦେଶାଇଜୀଙ୍କର ନୀରବ ଉପସ୍ଥିତିରୁହିଁ ସେ ଅଧାସଫଳତା ପାଇଯାଇଥାଏ । ସେ ଅନୁଭବ କଲା ଯେ କଥାବାର୍ତ୍ତାରେ ଚତୁର ହେଲେହେଁ ଦେଶାଇଜୀଙ୍କ ମଧ୍ୟସ୍ଥତା ବିନା ସେ ଜିଣିପାରିବ ନାହିଁ । ପ୍ରଥମଥର ଏକା ଯାଇ ବୋକାଙ୍କ ପରି ହାରି ଫେରିନଥିଲା କି ?

ଗଙ୍ଗୱା ଏବିଷୟରେ କୌଣସି କଥା କିଟ୍ଟୀ ଆଗରେ ଚର୍ଚ୍ଚାକଲାନାହିଁ । ମାତ୍ର ଯାହା କିଛି ଘଟିଥିଲା ସବୁ କିଟ୍ଟୀ ଜାଣିପାରିଲା । ଦପ୍ତର ବନ୍ଦ ହେବା ବେଳକୁ ରାଘସା ଟାଙ୍ଗାଧରି ଯାଇ ମଝିବାଟରେ କିଟ୍ଟୀକୁ ଭେଟିଲା । ତାକୁ ମୁଖ୍ୟ କଥାଟକ କହିଦେଇ ଏକଥା ବୁଝାଇ ଦେଲା ଯେ ଯଦି ଦେଶାଇଜୀ ଓ ଗଙ୍ଗୱା ତାକୁ ପଚାରନ୍ତି ତେବେ ସେ କହିଦବ ଯେ ରାଘସାର ଝିଅ ସହିତ ଯଦି ବିବାହ ନହୁଏ ତେବେ ସେ ବିବାହ କରିବ ନାହିଁ । ତାହେଲେ ଏ ବିବାହ ଅସମ୍ଭବ ହୋଇ ପଡ଼ିବ ।

ପରଦିନ ବଡ଼ିସକାଳୁ ଗଙ୍ଗୱାକୁ ଡ଼ାକରା ଆସିଲା । ଗତ କାଲିର ଦାର୍ଶନିକ ବାତାବରଣକୁ ଲଘୁ କରିବା ପାଇଁ ଦେଶାଇଜୀ ଗଙ୍ଗୱାକୁ ଯାହାଯାହା କହିବା କଥା ସିଧାସଳଖ କହିଲେ । 'ଗଙ୍ଗୱା, ଏସବୁ କଥାରେ ଆମପରି ଲୋକକୁ ମଝିରେ ପୂରାଇବାଟା ତୋର ଉଚିତ ହେଉନାହିଁ । ଆମ ଆଗରେ ଏତେକଥା ହୋଇଗଲା ପରେ ଆମେ ତୋତେ କଥାଟିଏ କହିବୁଁ । ତୋତେ ଯଦି ଭଲ ଲାଗିବ ତେବେ ଭାବି ଦେଖିବୁ । ତୋ ନିଜଭାଇ ସହିତ ତୋର କାହିଁକି କଳି ହେଲା, କେମିତି କଳି ହେଲା ଓ ତାହା କେତେଦୂର ଗଲା– ଏ ସବୁଥିରେ ଆମର କିଛି ଦରକାର ନାହିଁ । ଯେମିତି କୃଷ୍ଣର ଭଲ ହେବ ଓ ତୁ ସୁଖରେ ଜୀବନ ବିତାଇବୁ, ଆମପରି ମଧ୍ୟସ୍ଥି ହୋଇଥିବା ଲୋକର କେବଳ ସେତିକି ଦେଖାଶୁଣା କରିବା କଥା । ତୋର ଯଦି କଥାଟା ଠିକ୍ ମନେ ହୁଏ ଓ ତୁ ଏହାକୁ ନମାନୁ ତାହେଲେ ସୁଦ୍ଧା ମୋର କିଛି ଦୁଃଖ ନାହିଁ..... । ତୁମ ରାଘସାର ପୁଅ ନାହିଁ । କଥାଟା କଣ ସତ ?' ଗଙ୍ଗୱା ମୁଣ୍ଡ ହଲାଇ ହଁ ଭରିଲା । ଦେଶାଇଜୀ ପୁଣି କହିଲେ, 'ତା' ହେଲେ ମନେ ହେଉଛି କିଟ୍ଟୀକୁ ଝିଅଦେଇ ସେ ତାକୁ ପୋଷ୍ୟ କରିବାକୁ ଚାହେଁ । ଏମିତିରେ 'ଦ୍ୱାମୁଷ୍ୟାୟଣ' ଦତ୍ତକ ନିଆଯାଇପାରେ । ସେ କହୁଥିଲା ବର୍ଷରେ ସାତଆଠଶହ ଟଙ୍କା

ଆସିଲାଭଳି ଜମିଜମା ତାର ଅଛି। ପଚରା ଉଚୁରା କରି ଆମେ ଏକଥାର ସନ୍ଧାନ ନେବା।– ସେ ସବୁ ପର କଥା।

'ଦ୍ୱିତୀୟ କଥା ହେଲା ରାଘଷା କିପ୍ରକାର ଲୋକ ତାହା ମୋ ପାଇଁ ମୁଖ୍ୟକଥା ନୁହଁ, ତା ଝିଅ କେମିତି ସେଇ ହେଉଛି ମୁଖ୍ୟ କଥା। ସେ ବିଷୟରେ ମଧ୍ୟ ଖୋଜଖବର ନେବା। କିନ୍ତୁ କଥାହେଲା, ପିଲାଏଁ ବଡ଼ ହୋଇଗଲାପରେ, ସେମାନେ ଆମର ଇଚ୍ଛା ଅନୁସାରେ ଚଳିବେ ବୋଲି ଆମେ ଯଦି ଭାବୁଁ, ତାହେଲେ ତାହା ହୋଇପାରିବ ନାହିଁ। ଆଜିକାଲିର ପିଲାଙ୍କ ଉପରେ ଆମର ଏତେଟା ଅଧିକାର ନାହିଁ। ଶୁଣୁଛି କୃଷ୍ଣ ସେ ଝିଅକୁ ବାହାହେବା ପାଇଁ ହଟ ଲଗାଇଛି। ତୋତେ କିଛି କହିଛି କି?'

'ଛି ଛି ଛି, ଏସବୁ ସେଇ ରଘୁର ଗୁଲିଗପ।'

'ଯାହା ହେଉନା କାହିଁକି, କୃଷ୍ଣକୁ ଡ଼ାକି ମୁଁ ଅସଲ କଥାଟା କଣ ବୁଝିବି। କିନ୍ତୁ ତାହା ଦରକାରୀ ମନେହେଉନାହିଁ।' ଏହା କହି ଦେଶାଇଜୀ କିଟ୍ଟୀ ଲେଖିଥିବା ଚିଠିଟିକୁ ଚଷମା ଖୋଳ ଭିତରୁ ବାହାରକରି ପଢ଼ିଶୁଣାଇଲେ। ଗଙ୍ଗୁଆ ଲୁହଉଛୁଳା ଆଖିରେ ଅସହାୟ ଭାବରେ ଚାହିଁ ଚୁପ୍‌ଚାପ ବସିରହିଲା। ଏ ଚିଠି ପାଇଁ ମୋ ପୁଅକୁ ମାଫ୍ କରିଦିଅ– ଏଇ କଥା ଦେଶାଇଜୀଙ୍କୁ କହିବା ପାଇଁ ସେ ତୁଣ୍ଡ ଖୋଲିଲା, କିନ୍ତୁ କହିବାକୁ ଇଚ୍ଛା ହେଲାନାହିଁ।

ଦେଶାଇଜୀ ପୁଣି କଥା ଆରମ୍ଭ କଲେ।

'ଯାହା ହେଉ, ଯଦି ରାଘଷା କଥା ଠିକ୍ ହୁଏ, ତେବେ ଏକଥା ଉପରେ ଆମର ବିଶେଷ ସ୍ୱାଧୀନତା ରହିଲା ନାହିଁ। ସାଧାରଣ ଭାବରେ ଝିଅ ଯଦି ଭଲ, କାମିକା ଓ ଗୃହିଣୀ, ତେବେ ମୋ ବିଚାରରେ ବିନା ପ୍ରତିବାଦରେ ହିଁ ଭରିଦେବାଟା, ତୋ ପକ୍ଷରେ ଠିକ୍ ହେବ। ନହେଲେ କାଲି ଯଦି କୃଷ୍ଣ କହିଦିଏ ଯେ ସେ ତୋ'କଥା ବା ମୋ' କଥା ଶୁଣିବ ନାହିଁ, ନିଜର ଇଚ୍ଛା ଅନୁସାରେ ଚଳିବ,-- ତା' ହେଲେ କଥାଟା ତୋ ପକ୍ଷରେ ମୁସ୍କିଲ ହୋଇଉଠିବ ନାହିଁକି? କେବଳ ଏତିକି ନୁହଁ; ଏବେ କୃଷ୍ଣ କିଛି ତେଲ ମାଠିଦେଇ, ଗାଧୋଇଦେଇ ଝୁଲାରେ ଶୋଆଇ ପକାଇବା ପିଲା ନୁହଁ।— ଏକଥା ଭାବିରଖ, ମୁଁ ଯେତେ ଯାହା ହେଲେ ପର ନୁହଁ ଆଉ କଣ? ଦୁଃଖ ସହିବା ଲୋକ ତୁ। ସେଥିପାଇଁ ଭଲକରି ଭାବ।

'ଫେର ବ୍ୟାବହାରିକ କଥାକୁ ଧର....। ଅନ୍ତେ ବହୁତେ ବରମଣି ମଧ୍ୟ ସେ ଦେବନାହିଁ ନାଁ କଣ? ତା' ଉପରେ ପୁଣି ପୋଷ୍ୟ କରିବ କହୁଛି।'

'ଯାହା ହେଉ ଗୋପର୍ଣ୍ଣା, ତୁମ କଥା ମୋ ମନକୁ ପାଉଛି ଯେ, କିନ୍ତୁ ସେ ରାଘୁ କଥାରେ ବିଶ୍ୱାସ ଆସୁନାହିଁ।

'ତୋର କେଉଁକଥାରେ ବିଶ୍ୱାସ ନାହିଁ କହ? ତା' ପାଇଁ ବାଟ ବାହାର କରିବା। ମୁଁ ଯାହାଯାହା କଥା କହିଲି ସେ ସବୁଥିରେ ତୁ ଏକମତ କି ନାହିଁ କହିଲୁ?'

'ଆଜି କହୁଛି ତାକୁ ପୋଷ୍ୟ କରିନେବ। କାଲି ଯଦି ଆଉ କାହାକୁ ନେଇ ନିଏ ତେବେ? ସେ କିଛି କଥା ରଖେ ନାଁ କଣ? ସିଏ ପରପାଇଁ ଦୁର୍ଯୋଗ ଡ଼ାକିଆଣିଲାବାଲା।'

'ଡ଼ାକିଆଣିପାରିବ?...ହଉ ଡ଼ାକୁ! ଆମେ କିଛି ଖଡୁ ପିନ୍ଧି ବସିନାହୁଁ! ବାହାଘର କଥା ଠିକ୍‌ଠାକ୍ ହେଲାବେଳେ ଦତ୍ତାତ୍ରେୟ ମନ୍ଦିରରେ ପାଞ୍ଚଜଣଙ୍କ ଆଗରେ କଥା କରାଇନେବି। ଯଦି ନିଜକଥା ସେ ରକ୍ଷା ନକରେ ତେବେ ଆମ ଗାଁରେ ତାକୁ ଠିକ୍‌କରିଦେବା ଲୋକ ମଧ୍ୟ ଅଛନ୍ତି। ଖୁଣ୍ଟରେ ବାନ୍ଧି ଚାବୁକ ମରାଇ ନେବି। ନିଜକୁ ସେ କଣ ଭାବିଛି କି?' ଦେଶାଇଜୀ ଉତ୍ତେଜିତ ହୋଇ କହିଲେ।

''ଯାପରେ କଣ କରାଯିବା ଉଚିତ ଗଙ୍ଗୱା ବୁଝି ପାରିଲା ନାହିଁ। ସେ ଅତିଶୟ ଭାଙ୍ଗି ପଡ଼ିଥାଏ। କେତେକ୍ଷଣ ଚୁପ୍‌ଚାପ ରହିଲାପରେ ସଙ୍କୋଚରେ କହିଲା 'ଯାହା କୁହ ଗୋପଣ୍ଣା, ମୋର ଡ଼ର ଯାଉନାହିଁ; ସବୁ କରିନେଲା ପରେ ସେ କିଟ୍ଟୀକୁ ନିଜ ହାତମୁଠାରେ ରଖିବ।'

'କିନ୍ତୁ ତୁ ଏକଥା ଭାବୁନାହୁଁ କାହିଁକି ଗଙ୍ଗୱା, ତୋ'ପୁଅ ଏବେ ପିଲାଛୁଆ ନୁହଁ, ବିବାହ ହେଉ ବା ନହେଉ, ଯଦି କିଟ୍ଟୀ ଏଇ କଥା ସ୍ଥିର କରିବ ଯେ ''ରାଘୱା କହିବା ମୁତାବକ ଚଳିବ'', ତେବେ ଆମେ କଣ ତାକୁ ରୋକିପାରିବା? ତୁ ଟିକିଏ ଭାବିଲୁ। ମୋର ମନ ହେଉଛି କୃଷ୍ଣ ସହଳ ବିବାହ କରିବାକୁ ଚାହେଁ। ଏବେ ତା ଆଗରେ ଗୋଟିଏ ସର୍ତ୍ତ ରଖିବାକୁ ପଡ଼ିବ। ବାହାଘର ପରେ ରାଘୱା ଦତ୍ତକ ନେଲା ବାଦ୍ କୃଷ୍ଣ ରାଘୱା ଘରେ ରହିବନାହିଁ। ମା' ଓ ସ୍ତ୍ରୀ ସହ ନିଜଘରେ ରହିବ। ତାଠାରୁ ଏମିତି କଥା ନେଇନେବା। ସେ ଇଜ୍ଜତ ରଖିବା ପିଲା, ନିଜ ଗୋଡ଼ରେ ଠିଆ ହୋଇଛି। ତୁ ଏ ବିବାହରେ ଯଦି ରାଜି ହୋଇଯାଉ ତେବେ ତୋ'ରି ମାନ ବଂଚିଯିବ, ପ୍ରତିପତ୍ତି ମଧ୍ୟ ରହିବ। ସେ ଖୁସିହବ, ଆଉ କଥା ଭାଙ୍ଗିବ ନାହିଁ। ନହେଲେ ଯେ ଯାହାର କର୍ମ ଭୋଗିବେ। ମୋ' ନିଜତରଫରୁ ସବୁ ସରଳ କରି କହିଦବା ଉଚିତ।'

ପରିଶେଷରେ ଦେଶାଇଜୀଙ୍କ ଚେଷ୍ଟା ସଫଳ ହେଲା।

ଗଙ୍ଗୱା ନିଜର ବାପଘର ଗାଁଭୂଇଁ ଛାଡ଼ିବାର ବହୁବର୍ଷ ହେଲାଣି। ନିଜର ଜନ୍ମଭୂମି.....ସେଇ ମାଟି, ଯେଉଁ କ୍ଷେତରୁ ଉପୁଜିଥିବା ଅନ୍ନ ଖାଇଥିଲା, ସେଇ କ୍ଷେତ, –ସବୁ ମନେପଡ଼ି ତାର ମନ ପୁରିଉଠିଲା। ଏକପ୍ରକାର ଆନ୍ତରିକ ପ୍ରସନ୍ନତା ଆସିଲା। ମନେହେଲା, ଯେଉଁ କଥାକୁ ସନ୍ଦେହ କରୁଥିଲା, ତାର ମୂଳ ଦୁର୍ବଳ ହୋଇ ଯାଇଛି।

ଦେଶାଇଜୀ ଏତିକିରେ ସନ୍ତୁଷ୍ଟ ହେଲେନାହିଁ। ଗଙ୍ଗୱାର ମାନସିକ ଦ୍ୱନ୍ଦ୍ୱ ଦୂର କରିବା ପାଇଁ ସେ ଏକ ପନ୍ଥା ବାହାର କଲେ।

'ତୁ ଭାବୁଛୁ ଏତେ ଦିନର ଶତ୍ରୁତାକୁ ଭୂଲିବୁ କେମିତି। ଯାକୁ ଭୁଲିଯିବା ଦରକାର। ସେଥିରେ ବିଶେଷ କିଛି ବାଧା ନାହିଁ। ବହୂଘରକୁ ଆସିବା ପରେ

ତା' ପ୍ରତି ତୋର ସ୍ନେହଭାବ ରଖିବା ଉଚିତ। ତାହା ତୋର କର୍ତ୍ତବ୍ୟ। ତାର ବାପା ଉପରେ ତୋର ଯେଉଁ ଆକ୍ରୋଶ ସେଇଟା ତା ଉପରେ ଶୁଝାଇବା ଉଚିତ ହେବ ନାହିଁ। ତୁ ଯଦି ସେମିତି କରୁ ତେବେ ମୁଁ ତୋତେ ସମର୍ଥନ କରିବି ନାହିଁ। ଏହା ଆମର ସର୍ତ୍ତ। କିନ୍ତୁ ତୁ ରାଘପା ସହିତ ସେମିତି ବ୍ୟବହାର କରିବୁ ବୋଲି ମୁଁ ସର୍ତ୍ତ ରଖିବି ନାହିଁ। ତୁ ଇଚ୍ଛା ନକଲେ ତା ମୁହଁକୁ ନଚାହାଁ, ତା ଘରକୁ ନଯାଆ, ତାକୁ ଆପଣା ଘରକୁ ନଡ଼ାକ। ଏସବୁ କଥା ବେଳ ଆସିଲେ ଆମେ ସ୍ପଷ୍ଟ କରିଦେବା। ସମୟ ସମୟରେ ପୁଅବୋହୂଙ୍କୁ ତା ଘରକୁ ଯା'ଆସ କରିବାକୁ ଦେବୁ, ତା' ହେଲେ ତୋ'କାମ ହୋଇଗଲା ବୋଲି ଜାଣ!'

କଥା ଶୁଣି ଗଙ୍ଗୱା ସଂପୂର୍ଣ୍ଣ ନିରୁତ୍ତର ହୋଇଗଲା। ଦେଶାଇଜୀଙ୍କର ଏ ଅର୍ଥପୂର୍ଣ୍ଣ ଭାଷଣ ପରେ ଆଗକୁ କହିବା ପାଇଁ ଅଧିକା କଣ ବା ରହିଲା?

ଘରେ ପହଞ୍ଚି ଗଙ୍ଗୱା କିଙ୍ଗୀକୁ ଥଟ୍ଟାରେ କହିଲା, 'ହଁରେ, ଶୁଣୁଛି ତୁ'ପରା ରାଘପାକୁ କହିଛୁ ରତ୍ନା ଛଡ଼ା କାହାକୁ ବାହା ହେବୁ ନାହିଁ– ଏକଥା ସତ?'

କିଙ୍ଗୀ 'ହଁ' ବୋଲି କହି ସଫା ଜବାବ ଦେଲା।

ଗଙ୍ଗୱା ବୁଝିଲା, ଦେଶାଇବାବୁଙ୍କ କୃପାରୁ ସେ କେତେବଡ଼ ବିପଦରୁ ବଞ୍ଚିଗଲା। ସେଦିନ ଠାକୁରଙ୍କ ଆଗରେ ଅଧିକା ଘିଅଦୀପଟିଏ ଜଳାଇ ସେ ପ୍ରାର୍ଥନା କଲା, 'ଭଗବାନ, ଗୋପର୍ଣ୍ଣାକୁ ଦୀର୍ଘାୟୁ କର!'

# 18. ଉଭୟ ପକ୍ଷର ପ୍ରସ୍ତୁତି

ବିବାହର କିଣାକିଣି ପାଇଁ ଚିଠା ତିଆରି କରିବା ସମୟ ପାଖେଇ ଆସିଲା । ଏବେ ଗଙ୍ଗୱା ଏମିତି ବ୍ୟବହାର କରୁଥାଏ, ସତେ ଯେମିତି ଏ କାମ ତା'ଉପରେ ଲଦିଦିଆଯାଇଛି, ତାର ଏହା ସହ କୌଣସି ସମ୍ପର୍କ ନାହିଁ। ଝିଅ ଦେଖିବାକୁ ସେ ରାଜି ହେଲାନାହିଁ। କହିଲା,'ଯାହାର ଦେଖିବାର କଥା ସେତ ଦେଖି ସାରିଛି, ମୁଁ କଣ ଦେଖିବି ?' ବିବାହ ବିଷୟରେ କିଟ୍ଟୀ ସହ କଥା ଇ ହେଲା ନାହିଁ, ମାତ୍ର ଦେଶାଇବାବୁଙ୍କ ସହିତ ଯାହା କଥାହେବା ଦରକାର ସେ କଥା ଭାବିନେଇଥାଏ । ତାର କହିବାର କଥା, ବିବାହର ଦି' ତରଫର ଖର୍ଚ୍ଚ ରାଘପ୍ପା କରିବ, ଆଉ ପାଞ୍ଚଜଣକ ଆଗରେ ସେ କଥା ଦବ। କିଟ୍ଟୀକୁ ମାନିବାକୁ ପଡ଼ିବ ଯେ କୌଣସି କାରଣରୁ ସେ ଶ୍ୱଶୁର ଘରେ ରହିବ ନାହିଁ, ନିଜ ଘରେ ରହିବ। ବରପଣ ସ୍ୱରୂପ ରାଘପ୍ପା ହଜାର ଟଙ୍କା ଦେବ।

କିଟ୍ଟୀ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲା ଯେ ବିବାହ କଥା ଏତେ ସୁରୁଖୁରୁରେ ଛିଡ଼ିଯିବ। ଏହା ପୂର୍ବରୁ ନିଜ ବିଷୟରେ ସେ ଯାହା କିଛି ଭାବୁଥିଲା, ସେ ସବୁ ଥିଲା ଅଲଗା କଥା। ଲୋକାଚାର କଣ ସେ ଜାଣିନଥିଲା, ମଣିଷ ପାଇଁ ଗଢ଼ା ହୋଇଥିବା ସୁଖର ଅନୁଭବ ତାର ନଥିଲା। ନିଜର ବ୍ୟକ୍ତିତ୍ୱର ମହତ୍ତ୍ୱକୁ ନଜାଣି ସେ ମା'ର ଛତ୍ରଛାୟା ତଳେ ବଢ଼ିଥିଲା। ତାକୁ ଯିଏ ଭେଟନ୍ତି, କେହି କେବେ କହନ୍ତି ନାହିଁ ଯେ ତୁ ବୁଦ୍ଧିମାନ। ବରଂ ତା' ବଦଳରେ କହନ୍ତି, ତୋ ମା ଭାରୀ କଷ୍ଟରେ ତୋତେ ବଡ଼ କରିଛି। ଏଇଆ କହିକହି ତାକୁ ମା'ର ଉପକାରର ମହୌଷଧି ଦେଇ ରୋକିଦିଆଯାଇଛି। ସେଥିପାଇଁ ସେ ବାଘପରି ହୋଇଥିଲେ ସୁଦ୍ଧା ଛେଳି ପରି ବଢ଼ ହୋଇଛି। (ହୁସେନକୁ ପଚାରାଗଲେ ସେ କହିବ ଯେ ବାସ୍ତବରେ କିଟ୍ଟୀ ବାଘହିଁ ଅଟେ)। ଏକଥା ସତ ଯେ ମା'ର ଉପକାର ବହୁତ ବେଶୀ। ତା'ବୋଲି କଣ ବୋଝକୁ ଶେଷ ଯାଏଁ ବୋହିବାକୁ ପଡ଼ିବ ? କେଉଁ ମା' ନିଜ ପିଲାକୁ ପାଳୁନାହିଁ ? ଏତେ ସ୍ନେହ ଦେଇଥିବା ମା' ମୋର ବଡ଼ ଇଚ୍ଛାଟି ବିରୁଦ୍ଧରେ ଏମିତି ବାଧା ହୋଇ ଠିଆ ହେଉଛି କାହିଁକି ? ଯଦି ଏତେ ସ୍ନେହ ଅଛି, ତେବେ ଦେଶାଇବାବୁଙ୍କ ପାଖରେ ଯେଉଁ ହଜାରେ ଟଙ୍କା ପଡ଼ିରହିଛି, ସେଥିରୁ ଶହଟିଏ ଟଙ୍କା କାହିଁ କେବେ ମୋ ଲୁଗାପଟା ପାଇଁ ଖର୍ଚ୍ଚ କରୁନାହିଁ ? ଯଦି ସେତକ ହୋଇଥାନ୍ତା ତେବେ ଦଶବର୍ଷ

ସ୍କୁଲ ଜୀବନରେ କେବଳ ଦି'ଟା ଜାମା ଓ ଦି'ଟା ପେଣ୍ଟରେ କାଳ କାଟିବାକୁ ପଡ଼ି ନଥାନ୍ତା। ଖାକି ପେଣ୍ଟ ପିନ୍ଧି ଦପ୍ତରରେ ପିଆଦା ପରି ଲୋକ ଦ୍ୱାରା ଉପହସିତ ହେବାରୁ ନିସ୍ତାର ପାଇ ପାରନ୍ତା। ଚାକିରୀ କଲା ପରେ ସୁଦ୍ଧା ଆଜିଯାଏ ମୋର ଧୋତିର ଅଭାବ; ଏତେ ସ୍ନେହ କରୁଥିବା ମା' କାହିଁକି ଚୁପ୍‌ଚାପ୍ ଯାକୁ ସହିଯାଉଛି। ସେଇ ହଜାର ଟଙ୍କାରୁ ଯଦି ପାଞ୍ଚଟଙ୍କା ମୋ ପାଇଁ ଖର୍ଚ୍ଚ କରିଥାନ୍ତା ତେବେ କଣ ଯୋଡ଼ାଏ ଭଲ ଧୋତି ଆସିପାରିନଥାନ୍ତା ? ଗୋଟିଏ ଦୃଷ୍ଟିରୁ ମୋର ଜୀବନ ନଷ୍ଟ ହେଲାନାହିଁ କି ? ଚାକିରି କଲାପରେ ଏବେ ମୁଁ କଣ ମଣିଷ ହୋଇନାହିଁ ? କଚେରିରେ କେତେ ଧାଁ ଦଉଡ଼ କରି ଦି'ପଇସା ରୋଜଗାର କରି ଆଣୁଛି। ଏକଥାକୁ ଧ୍ୟାନ ଦେଇ ମଧ ତାକୁ କଣ୍ଢେଇଟିଏ ପରି ନଚାଇ ନିଜର ଅହଂକାରକୁ ସଭିଙ୍କୁ ଦେଖାଇ ବୁଲୁଛି।- ଏଇପରି ବହୁ ସ୍ୱଗତୋକ୍ତି ତା'ମନରେ ପୂରି ରହିଥିଲା। ମା', ତୋର ଉପକାର ଅନେକ ବେଶୀ। ତା'ବୋଲି ମୋର କଣ ନିଜର କୌଣସି ବ୍ୟକ୍ତିତ୍ୱ ନାହିଁ? ମୋ ଆଶା ଆକାଂକ୍ଷାର କୌଣସି ମୂଲ୍ୟ ନାହିଁ? ମୁଁ କଣ ଏବେବି ତୋର କୋଳର ପିଲା ?... ଯଦି ତୋର ମୋ ଉପରେ ସତରେ ସ୍ନେହ ଥାନ୍ତା ତେବେ ଏ ବାଧା ସୃଷ୍ଟି କରନ୍ତୁ ନାହିଁ। ମୋ ଅପେକ୍ଷା ତୋ ନିଜର ଦ୍ୱେଷ ଉପରେ ତୋର ଧ୍ୟାନ ଅଧିକ, ମୋ ଜୀବନ ପ୍ରତି ତୋର ଧ୍ୟାନ ନାହିଁ ...। 'ମୁଁ ତୋତେ ପାଳିପୋଷି ବଡ଼ କରିଛି'-ଏକଥା ଡେଙ୍ଗୁରା ପିଟିବାକୁ ଚାହୁଁଛୁ ? ଏଇପରି ସବୁ କଥା ବ୍ୟାକରଣ ଅଶୁଦ୍ଧ ଭାବନାପୂର୍ଣ୍ଣ ନାଟକୀୟ ବାକ୍ୟ ତଥା ଶବ୍ଦ ସମୂହକୁ ଅଭିନୟ ଅଭ୍ୟାସ କଲାପରି ଗୁଣୁଗୁଣୁ କରୁଥାଏ। ହେଲେ ଏ ସବୁ ବ୍ୟକ୍ତ କରିବାର ଅବସର ତା'କୁ ମିଳିଲା ନାହିଁ। ସୁବିଧାରେ ବାହାଘର ଠିକ୍‌ହୋଇଯିବାରୁ ଉପରୋକ୍ତ ସ୍ୱଗତୋକ୍ତି ସବୁ ଧୀରେ ଧୀରେ ସମାପ୍ତ ହେବାକୁ ଲାଗିଲା। ଏତେ ସୁରୁଖୁରୁରେ ସବୁକାମ ହୋଇଯିବାର ଦେଖି ସେ ଯେ କେବଳ ଆନନ୍ଦାଶ୍ଚର୍ଯ୍ୟ ହେଲା ତା'ନୁହଁ, ନିଜ ମାମୁଁର କାର୍ଯ୍ୟଶକ୍ତି ପ୍ରତି ମଧ ତାର ଶ୍ରଦ୍ଧା ଜାତ ହେଲା। ଉମା' କେତେଦିନ ହେଲା ଦେବୀପରି ଦେଖାଯାଉଛି। କିଟ୍ଟୀଠାରୁ ସେ କେବେ କୃତଜ୍ଞତାର ଅପେକ୍ଷା ରଖିନାହିଁ। 'ଯାହା ଆସୁ ପଛକେ ସବୁ ସହିବି' - ଏଇଆ ଭାବି କିଛି କହୁନାହିଁ। ନୀରବ ରହି ନିଜର ଦୈନନ୍ଦିନ କାମରେ ଲାଗିଛି।

ଏସବୁ କାରଣରୁ କିଟ୍ଟୀର ନୂଆ ଚିନ୍ତା ଆରମ୍ଭ ହେଲା। ଆରେ ! ମୋରି ବାହାଘର ! ଘର ପାଇଁ ଗୃହିଣୀଟିଏ ଆଣୁଛି। ସେପରି ନାରୀରତ୍ନକୁ ଏମିତି ଘରକୁ ଆଣିବାଟା ଲଜ୍ଜାଜନକ ନୁହଁକି ? ମୋ' ଦାରିଦ୍ର୍ୟ ଦେଖି ସେ ଯଦି ପରିହାସ କରେ ତେବେ କଣ 'ମୋର ସ୍ୱାମୀ କମାଣିହାର'-- ଏକଥା ସଭିଙ୍କ ଆଗରେ ବଖାଣିକରି ଆସିଥିବା ଝିଅ ଘରେ ଭଙ୍ଗାବାସନ ଦେଖି ଚିଡ଼ିବ ନାହିଁ? ତାର ଲୁଗା ପଟାରେ କେତେ ଖର୍ଚ୍ଚ ହେବ ? ସେ ମା' ମନକୁ ଜାଣିନେବା ଦରକାର, ଏହା ତାକୁ ପହିଲୁ କହିଦେବାକୁ ପଡ଼ିବ। ସେତ ମୂର୍ଖ ନୁହଁ, ଦି'ଚାରି ଦିନରେ ମା'ର ମନ କିଣିନେବ। ପୋଷ୍ୟ ନେବା ଆଶାରେ ବିବାହରେ ସମ୍ମତି ଦେଇଥିବା ମା' ବହୁର

ସୌନ୍ଦର୍ଯ୍ୟଦେଖି ନଜାଣି କେତେ ଖୁସି ହେବ। ଆଜି ଯେମିତି ପାଞ୍ଚଜଣଙ୍କ ଆଗରେ ମୋତେ ଠିଆ କରାଇ 'ଇଏ ମୋର ପୁଅ' ବୋଲି କହି ଗର୍ବର ସହିତ ଦେଖାଉଛି, ବୋହୂକୁ ସେମିତି ଦେଖାଇବ ନାହିଁ ନାଁ କଣ ?

କେବେ କେବେ ଆପଣାର ଅପ୍ରତ୍ୟାଶିତ ଭୟାନକ ରୂପ କିଟ୍ଟୀକୁ ଡରାଏ। ସେ ଭାବେ, ଆଚ୍ଛା, ରତ୍ନାକୁ ବାହାହେବାପାଇଁ ମୁଁ ଯେ ଏତେ ଜିଗର କରୁଛି ଏଇଟା କଣ ଠିକ୍? ଜିଦ୍‌କରି ପାଉଥିବା ଜିନିଷ ଭଲ ନପଡ଼ିଲେ ଉପହସିତ ହେବାକୁ ପଡ଼ିବ ନାହିଁ କି? ଥରେ ଭଲଭାବରେ ବୁଝିବିଚାରି ମୁଁ ଯଦି ଜିଦ୍ ଧରିଥାନ୍ତି ତେବେ କଣ ଭଲ ହୋଇ ନଥାନ୍ତା? ଏମିତିରେ ମୁଁ ତାକୁ 'ନରକ ଚତୁର୍ଦ୍ଦଶୀ' ଦିନ ଭଲକରି ଦେଖିଥିଲି। ତା'ପରେ ତାକୁ ଯେତେବେଳେ ଦେଖେଁ ସେ ଲୁଚିଯାଏ। ଏମିତି ଉତଳା ହୋଇ ଯେଉଁ କାମ କଲି କାଲିକି ତାର ପରିଣାମ କଣ ହେବ କିଏ ଜାଣେ। ଯା ହେଉଛି ହେଉ!'

''ମିଷ୍ଟାନ୍ନମିତରେ ଜନାଃ''– ବିବାହ କରୁଥିବା ଲୋକହିଁ କେବଳ ବିବାହର ସଙ୍କଟ ବୁଝେ, ଇତର ଲୋକଙ୍କରତ କେବଳ ମିଷ୍ଟାନ୍ନରେ ମନ।

ପୋଷ୍ୟ ନେବା କଥାରେ କିଟ୍ଟୀ ମଧ୍ୟ ବଡ଼ ପ୍ରସନ୍ନ ଥାଏ। ଏ ବିଚାର ମାମୁଁଙ୍କ ମନରେ ଥିଲା, ଅଥଚ କାହିଁକି ଏଯାଏଁ ତାର ସଂଧାନ ପାଇ ନଥିଲା। ମାମୁଁ ମାଇଁ ତାକୁ ଏଯାଏଁ ପୁଅପରି ଦେଖିଆସିଛନ୍ତି– ଏହା ଭାବି ସେ ପୁଲକିତ ହେଲା। 'ନରକ ଚତୁର୍ଦ୍ଦଶୀ' ଦିନ ରାଘଷ୍ପାର ''ଏଇଠି ଖାଇକରି ଯା'', ''ଇଏ ତୋର ଘର ନୁହଁ ନାଁ କଣ?'' ବୋଲି କହିବାରେ ଆଗ୍ରହ, ଚଟ୍‌କରି ପଶିଆସି ଚମ୍ପୋଳ୍ଟ ଘିଅଗିନା ଭର୍ତ୍ତିକରିବାର ଉତ୍ସାହ– ଏସବୁ କଥା ଏକ ନୂଆ ଅର୍ଥ ନେଇ ତା' ଆଗରୁ ଉଜ୍ଜ୍ୱଳି ଉଠିଲା।

କିଟ୍ଟୀ ଆଗରେ ଏବେ ଦି'ଟା ବଡ଼ କାମ। ପ୍ରଥମତଃ ବିବାହର ଖର୍ଚ୍ଚ। ଦ୍ୱିତୀୟତଃ ରତ୍ନାକୁ ଅନ୍ତିମ ଉପଦେଶ। ମା'ର ଦି'ତରଫାର ଖର୍ଚ୍ଚ ମାମୁଁ ଉପରେ ଲଦିଦେବା କିଟ୍ଟୀକୁ ଅନୁଚିତ ଲାଗିଲେ ମଧ୍ୟ ସ୍ୱତଃ ଖର୍ଚ୍ଚ ନ କରି ହୋଟେଲରେ ଖାଇବାର ଆଦତ ପଡ଼ିଯାଇଥିବାରୁ କଥାଟା ମୋଟାମୋଟି ଭଲ ଲାଗିଲା। ତା'ଛଡ଼ା ତାର ମନେ ହେଲା, ରାଘଷ୍ପା ତାକୁ ନିଜ ପୁଅ ମନେକରି ଖୁସିରେ ଖର୍ଚ୍ଚ ଉଠାଇବ। ତଥାପି ବାହାଘରର ଖର୍ଚ୍ଚ ପାଇଁ ପାଞ୍ଚସାତଶହ ଟଙ୍କା ଦରକାର ପଡ଼ିବ ନାହିଁ? ଲୁଗାପଟା, ଗହଣା ପତ୍ର, କନ୍ୟା ପାଇଁ ଶାଢ଼ୀ, ବନ୍ଧୁ ବାନ୍ଧବଙ୍କ ଚା' ଜଳଖିଆ, ଚପରାସୀ ପିଆଦାଙ୍କର ବକ୍‌ସିସ୍– ଏମିତି କେତେ ରକମର ଖର୍ଚ୍ଚ। ତାହା କେମିତି ଚଳିବ? ମା' ମୁହଁ ବନ୍ଦକରି ଅଛି। ପ୍ରକୃତରେ ଏବେ ରାଗରୋଷ ଭୁଲି ଏସବୁ ସମସ୍ୟା କଥା ମୁଁ ନିଜେ ତାକୁ କହିବା ଉଚିତ। କିନ୍ତୁ ଯିଏ ମୋତେ ଖାକିପ୍ୟାଣ୍ଟ ପିନ୍ଧାଇ ଦପ୍ତରକୁ ପଠଉଛି ସେ କଣ କେବେ ବଦଳିବ?...ସତ କଥା, ଏ ବାହାଘରରେ ମୋର ଯଦି ଅପମାନ ହୁଏ, ତାର କଣ ଯାଏ? ମୋତେ ଆଗୁଆ ହୋଇ ଏ ବିବାହକୁ ସଫଳ କରାଇ ଦେଖାଇଦେବାକୁ ପଡ଼ିବ। ମା' ବାହାଘରରେ ସମ୍ମତି

ଦେଇଦେଇଚି, ଏଇଆ ଭାବି ଗୋଡ଼ ଉପରେ ଗୋଡ଼ ରଖି ନିରାଳମ୍ବ ହୋଇ ଆଗକୁ ଶୋଚ୍ ବିଚାର ନକରି ବିବାହ ବେଦୀରେ ଯାଇ ଅପମାନିତ ହେବାଟା ମୋର ଉଚିତ ହେବନାହିଁ। ଏସବୁ ଠକାଠକି ଭିତରେ ମୋର ନରହିବା ଉଚିତ। ମା'ର ଜାଣିବା ଦରକାର ଯେ ମୁଁ ଚାଲାକ ଚତୁର ହେଲିଣି।...

ଏଇ ସବୁ ଭାବି ସେ ମା'କୁ ପଚାରିଲା, 'ମା, ବାହାଘରର ଖର୍ଚ୍ଚପତ୍ର କଥା କଣ ଭାବୁଛୁ ?'

ଗଙ୍ଗୱା କହିଲା, 'ତୋ' ମାମୁଁ କରିବ ନାହିଁ? ଝିଅ ଦେଉଚି।' 'କରିବ, ହେଲେ କେତେ କରିବ ? ବର ପାଇଁ ଲୁଗାପଟା, ଖିଆପିଆ ଖର୍ଚ୍ଚ କରିବ। ତା' ବାଦ୍ ଯେଉଁ ଲୁଗାପଟା, ସୁନା...ଏସବୁ ଆମର ଭାବିବା ଦରକାର ନାହିଁ ?'

'ଯିଏ ବାହାହେବ ଏ ସବୁକଥା ତାର ଭାବିବା ଦରକାର।'

'ହଁ, ସେଇଆ କହ। ସଫା କହିଦେଉନୁଁ ତୁ କରିବାକୁ ଚାହୁଁନାହିଁ, ଯାହା କରିବାର ମୁଇଁ କରିବି।'

'ଏଥିରେ ମୋର କହିବାର କଣ ଦରକାର ? ତୋ ନିଜ ଆଖିକୁ ଦିଶୁନାହିଁ ? ମୁଁ କେଉଁଠୁ ଆଣିବି ? ତୁ ରୋଜଗାର କରୁଛୁ, ତୁ କର।'

କିଛିକ୍ଷଣ ଯାଏଁ ସବୁ ଚୁପ୍‌ଚାପ ହୋଇଗଲା। ଶେଷରେ କିଟୀ ଢୋକଗିଳି ସାହସର ସହିତ କହିଲା 'ଶୁଣୁଛି ଦେଶାଇ ପାଖରେ ତୁ ହଜାର ଟଙ୍କା ରଖିଛୁ ?'

'ହଜାର ଟଙ୍କା ଆସିବ କେଉଁଠୁ ? ତୁ ପାଗଳ ହେଲୁ ନାଁ କଣ ? ହଜାର ଟଙ୍କା ଥିଲେ ଏମିତି ଲୁଗା ପିନ୍ଧୁଥାନ୍ତି ....?' ଗଙ୍ଗୱା ନିଜର ଲାଲ ଶାଢ଼ୀରେ ଏଠି ସେଠି ପଡ଼ିଥିବା ତାଳିକୁ ଦେଖାଇଲା।

ସେଦିନ କିଟୀ ଆଖିର ଉହାଡ଼କୁ ଆସିବା ମାତ୍ରେ ଗଙ୍ଗୱା ଦେଶାଇଜୀଙ୍କ ଘରକୁ ଗଲା ଓ ସେମାନଙ୍କ ଭିତରେ ହୋଇ ଥିବା ସବୁକଥା ତାଙ୍କୁ କହିଲା। ତାଙ୍କଠାରୁ କଥା ଦିଆଇନେଲା ଯେ ଯଦି କିଟୀ ତାକୁ ପଚାରେ ତେବେ ସେ ସଫା କହିଦେବେ ଯେ 'ମୋ ଠାରେ ତୋ ମା' କିଛି ଟଙ୍କା ରଖି ନାହିଁ।'

ନିଜର ଭାବୀପତ୍ନୀକୁ ଦେଖିବା ବାହାନାରେ କିଟୀ ପାଞ୍ଚ ଛଅଥର ମାମୁଁ ଘରକୁ ଗଲାଣି। ସବୁଥର ଗଲାମାତ୍ରେହିଁ ଚା' ଜଳଖିଆ ମିଳିଯାଏ, କିନ୍ତୁ ନିରୋଳାରେ ରତ୍ନାକୁ ଭେଟି ହୁଏନାହିଁ। ପଲକଟିଏ ପାଇଁ ଅବଶ୍ୟ ତାର ଦେଖା ମିଳେ। ଏବେ ରତ୍ନା କଛାମାରି ଶାଢ଼ୀ ପିନ୍ଧା ଆରମ୍ଭ କରିଛି। ଥରେ ମହବୁବଜାନ ଗନ୍ଧର୍ବ ରୀତିରେ କଛାମାରି ଧୋତିପିନ୍ଧା ଶିଖାଇଥିଲା। କିନ୍ତୁ ଅଭ୍ୟାସ ନଥିବାରୁ ରତ୍ନା ଠିକ୍ ଭାବରେ ସେମିତି ଶାଢ଼ୀ ପିନ୍ଧି ପାରୁନଥିଲା। ଶାଢ଼ୀ ପିନ୍ଧି ଏମିତି ଛନ୍ଦିଛାନ୍ଦି ହୋଇ ରତ୍ନା ଚାଲୁଥିବାର ଦେଖି କିଟୀର ସନ୍ଦେହ ହେଲା, ବୋଧହୁଏ ସେ ଛୋଟୀ। ତାର ଛାତି ଧଡ଼୍ କରି ଉଠିଲା। କିନ୍ତୁ ସବୁ କଥା ବୁଝିପାରିଲା ପରେ ତାର ସନ୍ଦେହ ଦୂର ହୋଇଗଲା। ଥରେ ମନେହେଲା ରତ୍ନା ଟେରୀ, ପୁଣି ଥରେ ମନେହେଲା ରତ୍ନା ପାଟିରେ କଥା ଲାଗେ। ତାର ରୂପ ସମ୍ପର୍କରେ ମଧ୍ୟ ବେଳେବେଳେ କିଟୀର

ସନ୍ଦେହ ହୁଏ। ବିବାହ ସ୍ଥିର ହୋଇ ଯାଇଥିବାର ଆନନ୍ଦରେ ରତ୍ନା ଉଉଲ ଡାଉଲ ହୋଇଉଠିଥାଏ, ସେ ଗୌରୀ ପରି ସୁନ୍ଦରୀ ଦିଶୁଥାଏ। ତଥାପି କିଟ୍ଟୀର ମନରେ ସନ୍ଦେହ ହେଉଥାଏ, ରତ୍ନାର ଦେହର ରଙ୍ଗ ଅସଲି ନାଁ ନକଲି? ଏହା ଯଦି ମହବୁବଜାନ୍‌ର ଶିକ୍ଷାର ଫଳ ହୋଇଥାଏ ତେବେ? ଅବଶେଷରେ ଆପଣାର ସନ୍ଦେହ ଉପରେ ରାଗିଯାଇ 'ଯାହେଉଛି ହେଉ' କହି ନିଜ ମନକୁ ସାନ୍ତ୍ୱନା ଦିଏ।

ଶେଷରେ ଥରେ ନିରୋଳାରେ ରତ୍ନାକୁ ଭେଟିବାର ସୁଯୋଗ ମିଳିଲା। ରସିକ ରାଘଷା କିଟ୍ଟୀର ଚକ୍କର କାଟିବାର ଉଦ୍ଦେଶ୍ୟ ଅନୁମାନ କରି ଇଙ୍ଗିତରେ ସ୍ତ୍ରୀକୁ କହିଲା। ଏସବୁ କଥାରେ ଚମ୍ପକ୍କାର ଭାରୀ ଡର। ଦିନେ ଦୂରରୁ କିଟ୍ଟୀ ଆସୁଥିବାର ଦେଖି ଚମ୍ପକ୍କା ରତ୍ନାକୁ କହିଲା, ବୋଧହୁଏ ତୋର ସ୍ୱାମୀ ତୋତେ କଣ କହିବ କହିବ ହେଉଛି। ମୁଁ ବାରିପଟେ ଥିବି। ତୁ ଡର ନାହିଁ। ବେଶୀ କଥା କହିବୁ ନାହିଁ। ବେଶୀ କହିବା ମଧ ଭଲ ନୁହଁ।' ଆଉ ଯାହାଯାହା କାନରେ କହିବା କଥା କହିଦେଇ ଚମ୍ପକ୍କା ବାରିପଟକୁ ଚାଲିଗଲା। ରତ୍ନା ଖବରକାଗଜ ଧରି ଆଗଣା ପାଖଘରେ ଯାଇ ବସିଲା।

ଖବରକାଗଜରେ ମଗ୍ନ ପତ୍ନୀକୁ ଏମିତିଭାବରେ ଏକାନ୍ତରେ ବସିଥିବାର ଦେଖି କିଟ୍ଟୀ ଆଶା ଓ ଭୟରେ ଝାଳନାଳ ହୋଇଉଠିଲା। କୌଣସି ରସାଳ କଥା ମନେ ନପଡ଼ିବାରୁ ପଚାରିଲା, 'ବାପା ଘରେ ନାହାନ୍ତି?'

କିଟ୍ଟୀକୁ ଯେମିତି ଏଇମାତ୍ର ଦେଖୁଛି, ସେମିତି ଭାବ କରି ରତ୍ନା ଧଡ଼ପଡ଼ ହୋଇ ଠିଆ ହୋଇପଡ଼ି କହିଲା 'ନାଁ।'

'ମା' କାହାନ୍ତି?'

'ବାରିପଟେ ନିମପତ୍ର ତୋଳୁଛି।'

ଏକୁଟିଆ ଥିବାରୁ ଦୁହେଁ ଅଧୀର ହୋଇ ପଡ଼ିଲେ। ଫଳରେ କିଛିକ୍ଷଣ ଯାଏଁ ନୀରବତା ବ୍ୟାପିଗଲା।

'ମୋ ମା'କୁ ତୁମେ ଦେଖିଛ?'

'ନାଇଁ ତ।'

'ତୁମ ବାପାମା' ଯାହାବି କହନ୍ତୁ ପଛକେ, ମୋ ମା' ପରି ଏଡ଼େ ଉଦାର ମଣିଷ ଦୁନିଆରେ ମିଳିବେ ନାହିଁ।

'ନିଜ ମା' ସଭିଙ୍କୁ ସେମିତି ଲାଗେ।'

'ନାଇଁ ନାଇଁ, ମୋର ମା' ଦେବୀ। ଏ ବିବାହରେ ସମ୍ମତି ଦେଇଛି, ଏହାହିଁ କେଡ଼େ ବଡ଼ କଥା, ଏହା ଭାବି ପାରୁଛ ତ?'

'ନାଁ ତ।'

'ଆମ ଘରକୁ ଆସିବାପରେ ମା'କୁ ସୁଖରେ ରଖିବ। ତା'ର ସେବା ଯଦି ତମେ କରିବ, ତେବେ ମୁଁ ସୁଖୀ ହେବି।''

'ତୁମ ସେବା ତେବେ କିଏ କରିବ?'

'ତା'ର କରିବ, ମୋର ମଧ କରିବ।' କିନ୍ତୁ ମୁଖ୍ୟତଃ ତା'ରି ସେବା କରିବ। ତାକୁ ଖୁସିରେ ରଖିଲେ ମୁଁ ମଧ ଖୁସି ହେବି।'

'ମୋ ଦ୍ୱାରା ଯେତିକି ହେବ କରିବି।

'ତୁମେ ସେବା କରିବ, ଏକଥା ମୋତେ ସାନ୍ତ୍ୱନା ଦେବାପାଇଁ କହୁଛ ?'

'ତାଙ୍କୁ ବି ଏକଥା କହିଦେବେ, ବହୂକୁ ଗାଳିଦେଇ କନ୍ଦାଇବେ ନାହିଁ।'

କିଟ୍ଟୀ ଅପ୍ରତିଭ ହୋଇପଡ଼ିଲା। ଟିକିଏ ଚିଡ଼ିଉଠି ପାଟିକରି କହିଲ, 'ହଁ ତାଙ୍କ ସେବା କରିବି, ଏତକ କହିଦେଲେ ତମର କଣ କ୍ଷତି ହୁଅନ୍ତା ?

'ହଁ ସେବା କରିବି।' ଏତକ କହି ରତ୍ନା କଇଁକଇଁ ହେଲା। ଆଖିରୁ ଲୁହ ଝରି ଗାଲ ଉପରକୁ ଗଡ଼ି ଆସିଲା। ସେ ପଣତରେ ଲୁହ ପୋଛିବାକୁ ଲାଗିଲା।

'ନାଁହିଁ, ତୁମକୁ ଦୁଃଖ ଦେବାପାଇଁ ମୁଁ ଏକଥା କହୁନାହିଁ। ତମରି ଭଲ ପାଇଁ ...।'

'କାହିଁକି ?....''ନିଜ ଶାଶୁର ସେବା କରିବୁ ନାହିଁ'' –ଏଇ କଥା ଶିଖାଇ କରି ମୋର ବାପା ମା' ପଠାଇବେ ନାଁ କଣ ?' –ଏହା କହୁକହୁ ରତ୍ନା ପୁଣି କଇଁ କଇଁ ହୋଇ କାନ୍ଦିଲା।

'କିଟ୍ଟୀ ଏକ ସମାଧାନ ଖୋଜି ପାଇଲା। ସେ ଭାବିଲା, ରତ୍ନା ସେବା କରିବାକୁ ପ୍ରସ୍ତୁତ। ମୁଁ ସଂଶୟରେ ପଡ଼ି ଏପରି ପ୍ରଶ୍ନ ପଚାରି ତା'ର ନିଷ୍କପଟ ମନକୁ ଅପମାନିତ କରିଛି। ସେଇ ପ୍ରସନ୍ନତାର ଜୁଆରରେ ସେ ରତ୍ନାର ଲୁହ ପୋଛି ଦେବା ପାଇଁ ଆଗକୁ ହାତ ବଢ଼ାଇଲା।

ମା' ଫୁସ୍‌ଫୁସ୍ କରି କାନରେ କହିଥିବା କଥା ରତ୍ନାର ମନେପଡ଼ିଗଲା। ସେ ପଛକୁ ହଟି ଭିରତକୁ ଚାଲିଗଲା। କିଟ୍ଟୀର ଆଙ୍ଗୁଠିରେ ତା'ର ଉଷୁମ ଲୁହ ଲାଗି ରହିଥାଏ। ସେ ତାକୁ ଓଠରେ ଲଗାଇ ନେଲା।

କିଟ୍ଟୀ ଭବିଷ୍ୟତର ପ୍ରସ୍ତୁତିରେ ଲାଗି ପଡ଼ିଲା। ସେ ସ୍ଥିର କଲା ଯେ ମା' ନିରୁତ୍ସାହ ପ୍ରକାଶ କଲେ ସୁଦ୍ଧା ବାହାଘରର ଧୁମଧାମରେ କିଛି ଅଭାବ ରହିବା ଉଚିତ ହେବନାହିଁ। ମାସଟିଏ ଆଗେ ଜଣେ ବେପାରି ସହିତ ପରିଚୟ ହୋଇଛି। ସେ ଦଲାଲୀ କାମ କରେ। ତା'ର ଏକ କାମରେ କିଟ୍ଟୀ ହାତକୁ କୋଡ଼ିଏ ଟଙ୍କା ଆସିଥିଲା। କିଟ୍ଟୀ ସିଧା ତା' ଦୋକାନକୁ ଗଲା। ସେ ଆଦର କରି କିଟ୍ଟୀକୁ ସ୍ୱାଗତ କଲା। ଅଧେ ଧ୍ୟାନ କାମରେ, ଅଧେ ଧ୍ୟାନ କିଟ୍ଟୀର କଥାରେ ରଖି ସେ ଗଦିକୁ ଆଉଜି ବସିପଡ଼ିଲା। କିଟ୍ଟୀ କଥା ପକାଇଲା। ହଜାରେ ଟଙ୍କା କରଜ ମାଗିଲା। ଭାବିଲା ହଜାରେ ମାଗିଲେ ଅନ୍ତତଃ ଚାରି ପାଞ୍ଚ ଶହ ମିଳିପାରେ। ମହାଜନ ତା'ର ହାତ ଧରି ପକାଇଲା। ଆଜ୍ଞା ହଜୁର, ଗୁଡ଼ କାରବାରର ଲାଇସେନ୍‌ସ ଆପଣ ନିଜେ ଦେଇଛନ୍ତି। ପଇସା ଥିଲା ସବୁ ସେଇଥିରେ ଢାଳିଛି। ମାସଟିଏ ସବୁର କରନ୍ତୁ, କିଛି ନହେଲେ ଦି'ଚାରିଶହ କାଢ଼ିଦେଇ ପାରିବି।' –ଏହା କହି ବ୍ୟବସାୟଗତ ସମସ୍ୟାକଥା ବଖାଣି ବସିଲା। କିଟ୍ଟୀ ଅପମାନ ବୋଧ କଲା। ଏଣେ ମହାଜନ ଅନ୍ୟାନ୍ୟ ଆଦର ଅଭ୍ୟର୍ଥନାରେ କମ୍ କଲାନାହିଁ। ପାଉଁରୁଟି, ମାଖନ,

ତା' ସବୁକିଛି ହେଲା, ଫେରିଲାବେଳକୁ ମହାଜନ ପଚାରିଲା, ଆମକୁ ବାହାଘରରେ ଡାକିବେ କି ନାହିଁ? କିଙ୍ଗୀ ଉତ୍ତର ଦେଲା, ଆପଣ ନଥାଇ ଆମର ବାହାଘର କେଉଁଠି ହୋଇପାରିବ?' 'ଡାକିବେ ଯଦି ତେବେ କିଛି ଭେଟି ଦେଇ ଆସିବି, ନହେଲେ ଦପ୍ତରରେ ସାକ୍ଷାତ ହେବ' – କହି ମହାଜନ ହସି ଉଠିଲା।

କିଙ୍ଗୀ ସରମରେ ମରିଗଲା।

ଆଉରି ଦି'ଜାଗା ଥିଲା। କିନ୍ତୁ ସେମାନେ ମଧ୍ୟ ଯଦି ଏଇ ମହାଜନ ପରି କହନ୍ତି, ତେବେ କଣ ହେବ – ଏଇଆ ଭାବି ସେ ସେଠାକୁ ଯିବା କଥା ସ୍ଥଗିତ ରଖିଲା। ପଇସା ଚିନ୍ତା ମନରେ ବୋଝପରି ହୋଇ ରହିଛି। ଦିନେ ଚିନ୍ତାରେ ମ୍ରିୟମାଣ ହୋଇ ଦେଶାଇବାବୁଙ୍କ ପାଖକୁ ଯାଇ ତାଙ୍କ ଆଗରେ ନିଜର ସମସ୍ୟା କଥା ଖୋଲି କହିଲା।

ଦେଶାଇଜୀ କହିଲେ 'ଆରେ ହଁ, ଟଙ୍କାର ବନ୍ଦୋବସ୍ତ କଣ କଲ? ସେଇ କଥା ପଚାରିବା ଲାଗି ମୁଁ ତୁମକୁ ଡକାଇବା କଥା ଭାବୁଥିଲି। ଡାକି ନଥିଲି ଏଇଥିପାଇଁ ଯେ ଭାବିଲି ଆଗେ କିଣାକିଣିର ଚିଠା ତିଆରି ସରୁ।

ମୁଖ୍ୟ କଥା ଖୋଲି ନକହିଲେ ଚାରା ନାହିଁ ଦେଖି କିଙ୍ଗୀ କହିଲା, 'ଗୋପର୍ଣ୍ଣା, ମା' ଏବେ ଅନ୍ତତଃ ଆଗର ରାଗ ଅହଂକାର ଭୁଲିଯିବା ଉଚିତ ନୁହଁକି? ବାହାଘରରେ ଖର୍ଚ୍ଚ ପତ୍ର ନାହିଁ ନାଁ କଣ? ସେ ବିଷୟରେ କିଛି କଥା ହେବା ଦରକାର ନାହିଁ?'

'ସେ ଯଦି ନପଚାରୁଛି, ତୁମେ ପଚାରିବା ଦରକାର। କାହିଁକି, ମା'କୁ ପଚାରିଦେବାକୁ ତୁମକୁ ଲାଜଲାଗୁଛି ନାଁ କଣ?'

'ପଚାରିଥିଲି। ସେ କହୁଛି, ତା' ପାଖରେ ପଇସାଟିଏ ସୁଦ୍ଧା ନାହିଁ। ଏବେ ଏମିତି ପରିସ୍ଥିତିରେ ସେ ଏପରି କହିବା ଫଳରେ ମୋ ମନରେ ସଂଶୟ ଆସୁଛି। ସଭିଏଁ କହୁଛନ୍ତି, ମୋର ବାପା ଥିଲାବେଳେ ଅନେକ ଧନ ସମ୍ପତ୍ତି ଥିଲା। ସେସବୁ କଣ ଚାଲିଗଲା? କିଛି କଣ ବର୍ତ୍ତିଲା ନାହିଁ? ଅନ୍ତତଃ ହଜାର ଅଧେ ଟଙ୍କା.....।'

ମୁହଁର ଭାବକୁ ଆଦୌ ନ ବଦଳାଇ ଦେଶାଇଜୀ କହିଲେ, ମା'କୁ ପଚାର ଯଦି ଥାଇପାରେ। ଆଉ ତୁମେ ଯଦି କହିବ ତା'ହେଲେ ମୁଁ ଦି' ଚାରିଶହ ଟଙ୍କା ଦଉଛି, ବରପଣି ମିଳିଲା ବାଦ୍ ମୋତେ ଫେରାଇ ଦେବ।'

'ଆପଣମାନଙ୍କ ପରି ହିତାକାଂକ୍ଷୀ ହିଁ ମୋର ଭରସା। ସେ ବିଷୟରେ ମୋର ଆସ୍ଥା ଅଛି। କିନ୍ତୁ ଘରେ ଏଇ ଗୋଟିଏ ମାତ୍ର ବିବାହ। ସେଥିରେ ମା' ଯଦି ଖର୍ଚ୍ଚ ନକରେ, ତେବେ ମୋ' ମନରେ ଦୁଃଖ ହେବନାହିଁ? ସେମିତି ଦେଖିବାକୁ ଗଲେ, ମା' ଅଧିକ ଆଗ୍ରହ ଦେଖାଇବା କଥା। ଅଥଚ ସେଇ କହୁଛି, 'ମୋ'ଠି ପଇସାଟିଏ ସୁଦ୍ଧା ନାହିଁ।' ଏତେ ଥିଲା, ଆଉ ଆଜି ହଜାର ଟଙ୍କା ବି ବର୍ତ୍ତିଲା ନାହିଁ? ଇଏ ମୋ'ରି ଫଟାକପାଳ ଛଡ଼ା ଆଉ ବା କଣ ହୋଇପାରେ!'

'କିଛି ବର୍ତ୍ତିନାହିଁ ନାଁ କଣ? ମା'କୁ ପଚାର। ପଚାରିବାରେ ସଙ୍କୋଚ କଣ? ତୁମେ ସାହେବ, ହେଲେ କଚେରୀରେ ସାନେବ...।'

'ମା ଆପଣଙ୍କ ପାଖରେ କିଛି ଟଙ୍କା ପଇସା ରଖିଛି କି?' —ଏ ପ୍ରଶ୍ନ କିଟ୍ଟୀର ଜିଭ ଅଗଯାଏ ଆସିଯାଇଥିଲେ ସୁଦ୍ଧା ସେ ପଚାରିବାକୁ ସାହସ କରି ପାରିଲା ନାହିଁ। ଦେଶାଇଜୀଙ୍କ ଦ୍ୱାରା ହିଁ ଏ ବିବାହ ସମ୍ଭବ ହେବାକୁ ଯାଉଛି, ତାଙ୍କ ସହ ଏମିତି ମୁହଁଟାଣ କରି କଥାହେବାଟା ଠିକ୍ ହବନାହିଁ।

କିଟ୍ଟୀ ଯିବାକୁ ବାହାରିଲା। ଦେଶାଇବାବୁ ତକିଆ ଉପରକୁ ଅଳ୍ପ ଆଉଜି ବସି କହିଲେ, ସେମିତି ଦେଖିବାକୁ ଗଲେ ଝିଅ ତୁମେ ପସନ୍ଦ କରିଛ। ଖର୍ଚ୍ଚ ତୁମେ କର।'' —ଏକଥା ମୁଁ କହି ପାରନ୍ତି। କିନ୍ତୁ ଏପର୍ଯ୍ୟନ୍ତ ମୋ ଭିତରେ ଏଇ ଅଭିମାନ ଅଛି ଯେ ପୁଅ ଆମର, ଭବିଷ୍ୟତରେ ମଧ୍ୟ ଆମରି ହୋଇ ରହିବ। ତୁମେ ସେମିତି ଚଳିବ। ଏହା କହି ସେ ବାକ୍ୟ ସମ୍ପୂର୍ଣ୍ଣ କଲେ।

ଦେଶାଇଜୀଙ୍କଠାରେ ଏତେଦୂର କ୍ରୂରତା ଥାଇପାରେ କିଟ୍ଟୀକୁ ଜଣା ନଥିଲା। ପଇସା ପାଖରେ ସାରା ସଂସାର ଯେମିତି ଏକ। 'ହାୟରେ, ମୋ'ରି ଘରର ପଇସା ମୋତେ ପରକୁ ମାଗିବାକୁ ପଡୁଛି।' ଏହା ଭାବି ସେ ବ୍ୟଥିତ ହୋଇ ବାହାରି ଆସିଲା।

ଚିଠା* ତିଆରି ହେବା ସମୟରେ କନ୍ୟାଦେଖା ପ୍ରଥାଟି ଦେଶାଇଜୀଙ୍କ ଘରେ ସମ୍ପନ୍ନ ହେଲା। ସାଇର ପାଞ୍ଚଜଣ ଭଦ୍ରଲୋକ ଆସିଲେ। ଝିଅ ଦେଖିବ ନାହିଁ ବୋଲି ଜିଦ୍ କରି ଗଙ୍ଗୱା ବାହାରେ ବସି ରହିଲା। କିନ୍ତୁ ରତ୍ନା ଆସି ପ୍ରଣାମ କରିବାରୁ ଚୋରା ଆଖିରେ ଦେଖିନେଇ ମୁହଁ ଫେରାଇ ନେଲା। ସେତିକିରେ ଗୌରୀପରି ସୁନ୍ଦରୀ ରତ୍ନାର ରୂପଛବି ତା'ର ହୃଦୟରେ ଆଙ୍କି ହୋଇଗଲା। ଟିକିଏ ସନ୍ତୋଷ ଆସିଲା ଯେ ଦେଖିବାକୁ ସୁନ୍ଦରୀ। ଯାହା ହେଉ ପଛକେ ଭଲ ଦେଖାଯାଉଛି।

ଦେଶାଇବାବୁଙ୍କର ସମସ୍ତ ସର୍ତ୍ତକୁ ରାଘପ୍ପା ହସହସ ମୁହଁରେ ମାନି ନେଲା। ଦେଶାଇଜୀ ଦତ୍ତକ ନେବାକଥା ଉଠାଇବା ମାତ୍ରେ ସେ କୁଳଦେବତା ଭେଙ୍କଟେଶଙ୍କର ଶପଥ ନେଲା। କିଟ୍ଟୀମଧ୍ୟ ସଭିଙ୍କ ଆଗରେ କଥା ଦେଲା ଯେ ଦତ୍ତକ ନେବା ପରେ ସେ ଅଲଗା ଗାର୍ହସ୍ଥି ନକରି ମା' ସହିତ ରହିବ। ସାଇ ଲୋକଙ୍କ ଆଗରେ ଘରର ଗୁମର ସବିସ୍ତାର ଚର୍ଚ୍ଚା ହେବା ହେତୁ ଓ ତାକୁ ଅବିଶ୍ୱାସ କରି ତା'ଠାରୁ କଥା କରାଇନେଉଥିବା ହେତୁ, କିଟ୍ଟୀ ଅପମାନିତ ବୋଧକଲା। ତଥାପି ସେ ଖୁସିହେଲା, ଯା' ହେଉ ସବୁ କାମ ଭଲରେ ଛିଣ୍ଡିଗଲା।

କ୍ରମେ ଦିନ ଗଡ଼ିବାକୁ ଲାଗିବାରୁ ଟଙ୍କା ଚିନ୍ତା ବଢ଼ିବାକୁ ଲାଗିଲା। ଚଞ୍ଚଳ ସ୍ୱଭାବ, ଅସ୍ଥିର ପ୍ରକୃତି, ଏବେ ବି ପିଲାଳିଆପଣ ଛାଡ଼ି ନଥିବା, ସବୁଥିକୁ ଡରୁଥିବା ଏଇ ସାହେବକୁ ଏତେଟଙ୍କା ଦେବାପାଇଁ କୌଣସି ପାର୍ଟି ପ୍ରସ୍ତୁତ ନଥିଲେ। ସେଥିପାଇଁ ସେମାନେ କିଛିନାଁକିଛି ବାହାନା କରନ୍ତି। ତା' ଛଡ଼ା ସେମାନଙ୍କ ମଧ୍ୟରେ ଏଇ ବିଶ୍ୱାସ ଥାଏ ଯେ ଯଦି କିଟ୍ଟୀ ଖରାପ ଭାବେ ତେବେ ତାକୁ ପାଉଁରୁଟି, ମାଖନ

* ବରକନ୍ୟା ଉଭୟପକ୍ଷର ଲୋକ ଏକତ୍ର ବସି ବିବାହର ତାଲିକା ପ୍ରସ୍ତୁତ କରିବା ଦକ୍ଷିଣ ଭାରତର ପ୍ରଚଳିତ ପରମ୍ପରା।

ଓ କୃଷ୍ଣ ଦୋକାନର ଦୋଷା ଖୁଆଇ ମନାଇନେଇ ହେବ। ଏହା ସେମାନଙ୍କର ଅନୁଭବ – ସିଦ୍ଧ କଥା। ଏଇପରି କିଟ୍ଟୀକୁ ଦପ୍ତରର ମାମୁଲି ପଇସା ବାହାରେ ଅଧିକା ପଇସାଟିଏ ମିଳିଲା ନାହିଁ।

ବିବାହ ସପ୍ତାହେ ଦି'ସପ୍ତାହ ଥାଏ। ଦିନେ କଚେରୀରେ କିଟ୍ଟୀ ଟେବୁଲ ଉପରେ କହୁଣୀଭରା ଦେଇ ଗାଲରେ ହାତରଖି ବସିଛି, ଜର୍ଜ ଚା' ପିଇବାକୁ ଡାକିଲା। ଚାରିଟା ବାଜିବା ପୂର୍ବରୁ କେବେ ଚା' ନପିଇବା ଲୋକ ଜର୍ଜ ଆଜି ନିଜେ ନିଜେ ତାକୁ ଅସମୟରେ ଚା' ପିଇବା ପାଇଁ ଡାକୁଛି କାହିଁକି ଭାବି କିଟ୍ଟୀ ଆଶ୍ଚର୍ଯ୍ୟ ହେଲା। କ୍ୟାଣ୍ଟିନ ଆଡ଼କୁ ଗଲାବେଳେ ବାଟରେ କିଟ୍ଟୀ କାନ୍ଧରେ ହାତ ପକାଇ ଜର୍ଜ ସବୁ ପଚାରିଲା।

ବହୁଦିନରୁ କିଟ୍ଟୀ ଆଖିକୁ ଲୁହ ଆସିନଥିଲା। ସେ ଦୁଃଖ ପାଇଛି, ଦୁଃଖ ସହି ଆସିଛି, ଗୋଇଠା ଖାଇଛି, ଗୋଡ଼ଧରିଆସିଛି – କିନ୍ତୁ ଏତେ ବର୍ଷ ଭିତରେ ତା' ଆଖିକୁ କେବେ ଲୁହ ଆସିନଥିଲା। ଜଣେ ଇଂରେଜ କବି କହିଛନ୍ତି 'କାନ୍ଦିବା ପାଇଁ ମଧ୍ୟ ଭଗବାନଙ୍କର ଦୟା ଆବଶ୍ୟକ।''

ସେଇଦିନ ଜର୍ଜ ତାକୁ ସାଙ୍ଗରେ ନେଇଯାଇ ପାଞ୍ଚଶହ ଟଙ୍କା କରଜ ଅଣାଇ ଦେଲା।

# 19. ମଙ୍ଗଳ ସୁର ମଧ୍ୟରେ ବେସୁରା ରାଗିଣୀ

ବାହାଘରିଆ ଘରେ ମହବୁବଜାନର ଅନେକ ରକମର ଅସୁବିଧା। ତାକୁ ଆଦର କରିବା ଲୋକ କେବଳ ତା'ର ''ଯଜମାନ''*। କେବେ କେମିତି ଭାରୀ ଶାଢ଼ୀର ବୋଝ ବୋହି ମଛର ଭାବରେ ଏଘର ସେ ଘର ହେଉଥିବା ଚମ୍ପା ଆସି ପଚ଼ରାଉଚୁରା କରେ। ତା'ର ଅସକ୍ତ ଦେହ ବାହାଘରର ଧାଁ-ଦଉଡ଼ରେ ଅଧିକ ଥକିପଡ଼ିଛି। ତେଣୁ ସେ ସାନସାନ କଥାରେ ଚିଡ଼ିଉଠୁଛି। ମହବୁବ ଆଗରେ ସେ ଯେତେବେଳେ କାହାରିକୁ କିଛି ତିଆରି କହେ, ସେତେବେଳେ ମହବୁବର ମନେହୁଏ ସେ ଯେପରି ତାକୁଇ ଶୁଣାଇକରି କହୁଛି। ବାହାଘରରେ ତାକୁ ଶାନ୍ତି ମିଳିବନାହିଁ, ସେ ରହିବା ଦ୍ୱାରା କାହାରି ଲାଭ ମଧ୍ୟ ହେବ ନାହିଁ। ଏମିତି ଭାବି ସେ ରାଘସ୍ୱାକୁ କହିଲା ଯେ ସେ ହାତଗଣ୍ଠି ପଡ଼ିଲା ବେଳକୁ ଆସିବ। ମାତ୍ର ରାଘସ୍ୱା କ'ଣ ମାନିବା ଲୋକ? ସେ ଜିଦ୍ କରି ରାଗି, ମାନ କରି, ପାନଗୁଆ ନ ଛୁଇଁ ତାଠୁ କଥା ନିଆଇ ନେଲା ଯେ ଅତିକମ୍‌ରେ ବାହାଘରର ଚାରିଦିନ ଆଗରୁ ତାକୁ ଆସିବାକୁ ପଡ଼ିବ। ମହବୁବ ଜାଣିଥାଏ ତା' ପାଇଁ ବାହାଘରିଆ ଘରେ ସଭିଙ୍କର ଅସୁବିଧା ହେବ। କିନ୍ତୁ ନିତିଦିନିଆଁ କଷ୍ଟ ତା'ର ଅନୁମାନଠୁ ଅଧିକ ହୋଇପଡ଼ିଲା। ନିତି ଛୁଆଁଛୁଇଁ ମାମଲା, ନିଜର ଖାଇବା ପତ୍ର ନିଜକୁ ଉଠାଇବାକୁ ପଡୁଛି। ଖାଇବାଜାଗା ଗୋବରରେ ଲିପିବାକୁ ହୁଏ। ସୁବକଥାରେ ଘରର ଝିଅମାନଙ୍କ ହାତକୁ ଘଣ୍ଟାଟିଏ ଚାହିଁରହିବାକୁ ପଡ଼େ। ଏଇସବୁ କାରଣରୁ ସେ ବିରକ୍ତ ହୋଇ ଉଠିଥାଏ। ଛୁଆଁଛୁଇଁ ବାରଣ ମାନୁଥିବା ସ୍ତ୍ରୀଲୋକମାନେ ତାକୁ ଘୃଣ୍ୟ ଦୃଷ୍ଟିରେ ଦେଖନ୍ତି। ସାମିଆନା ତଳେ ବସିଥିବା ମଉନମୁହାଁ ଝିଅମାନେ ପାନଗୁଆ ମାଗି ''ଯଜମାନର'' ନାଁ ଧରି ତାକୁ ପରିହାସ କରନ୍ତି। ସାରାଦିନରେ କୋଡ଼ିଏ ଥର ଚା' ପିଇବା ମହବୁବର ଅଭ୍ୟାସ। କିନ୍ତୁ ଏ ଗହଳି ଭିତରେ ଦିନକୁ ଦି'ତିନିଥର ଚା' ମିଳିବା ମଧ୍ୟ କଷ୍ଟକର। 'ଯଜମାନ' ଆସିଲାମାତ୍ରେ ତାକୁ ଅବଶ୍ୟ କପେ ଚା' ମିଳିଯାଏ। କିନ୍ତୁ ଅନ୍ୟ ସମୟରେ ନିଜ ପାଇଁ ଚା' ମାଗି ହୁଏ ନାହିଁ। ତେଣୁ ଚା' ର ତୋଡ଼କୁ ଧୂଆଁପତ୍ର ଦେଇ ସମ୍ଭାଳିବାକୁ ପଡୁଛି। ତା' ଛଡ଼ା ସକାଳଠୁ ସଞ୍ଜ ଯାଏଁ ତା'ର କିଛି କାମ ନାହିଁ।

---

* ରାଘସ୍ୱା, ମହବୁବ୍‌ଜାନର ରକ୍ଷକ।

ବିବାହରେ ତା'ର କରଣୀୟକାମ ଗୋଟିଏ ଦିନରେ ଶେଷ ହୋଇଗଲା । ..... ତାହା ହେଉଛି ବିବାହ ମଣ୍ଡପ ତିଆରି । ସେ ନିଜେ ଆଗରେ ଠିଆହୋଇ ମଣ୍ଡପ ସଜେଇଥାଏ । ଛଅ ସାତ ବର୍ଷ ପୂର୍ବେ ସେ 'ଶେଷଶାୟୀ' ନାଟକ କମ୍ପାନୀର କାମ କରୁଥିଲା । ଏଇ ସମୟରେ ସେ କମ୍ପାନୀ ଧାରବାଡ଼ ଆସିଥାଏ । ସେ କଥା ଶୁଣିବାକୁ ପାଇବା ମାତ୍ରେ ସେ ସେଇ ଦିନ ଟାଙ୍ଗା ଧରି ସେଠାରେ ପହଞ୍ଚିଲା । କମ୍ପାନୀ ମାଲିକ ରାମେଶ୍ୱର ଭଟ୍ଟ ସହିତ ସାକ୍ଷାତ କରି ଆଗ୍ରହ ପୂର୍ବକ କମ୍ପାନୀର କେତେଖଣ୍ଡ ପରଦା ମାଗି ଆଣି ତାହା ସାହାଯ୍ୟରେ ମଣ୍ଡପକୁ ନାଟକର ରଙ୍ଗମଞ୍ଚପରି ସଜାଇଦେଲା । ରଙ୍ଗୀନ କାଗଜର ଝାଲର ମଧ୍ୟ ସେଠାରୁ ନେଇ ଆସିଥାଏ । ଚିନ୍ନାରେଡ୍ଡି ନାମକ ଅଭିନେତାକୁ ଡାକି ଆଣିଥାଏ । ତାକୁ ଭଲ କରି ଚା' ଜଳଖିଆ ଖୁଆଇ, ରଙ୍ଗୀନ ଲୁଗା ଉପରେ ତୁଳାରେ 'ସ୍ୱାଗତମ୍' ଲେଖାଇନେଇ ବିବାହ ମଣ୍ଡପର ଦ୍ୱାରରେ ଥିବା ଦୁଇଖମ୍ବ ମଝିରେ ବନ୍ଧାଇଦେଲା । ନିଜେ ଠିଆହୋଇ କାଗଜର ଫୁଲଗୁଚ୍ଛ, ତୋଡ଼ା ଓ ଝାଲର ଦେଇ ତୋରଣ ସଜାଇଲା, ନାଟକର ମଞ୍ଚସଜ୍ଜା ସହ ବହୁଦିନରୁ ପରିଚିତ ଥିବା ହେତୁ ତାକୁ ବିବାହ ମଣ୍ଡପ ସଜାଇ ଆସୁନଥିଲା; ଫଳରେ ବିବାହ ମଣ୍ଡପକୁ ସେ ରଙ୍ଗାଳୟ ସମାନ ଅଳଂକୃତ କରିନେଲା । 'ଯଜମାନ' ତା'ର ଇଚ୍ଛାର କୌଣସି ବିରୋଧ କଲାନାହିଁ । ବିବାହ ଆଗଦିନ ଲୋକେ ବାଟରେ ଗଲାବେଳେ ଭିତରକୁ ଆସି ମଣ୍ଡପକୁ ଦେଖି ଯାଉଥାନ୍ତି । ମଣ୍ଡପ ସଜ୍ଜା ଦେଖି ସଭିଏଁ ମହବୁବର ପ୍ରଶଂସା କରୁଥାନ୍ତି । ଦିନେ ଦି' ଦିନ ଭିତରେ ବିବାହ ପାଇଁ ଆସୁଥିବା ଅତିଥିଙ୍କ ସଂଖ୍ୟା ବଢ଼ିଯିବାରୁ ଖିଆପିଆବେଳେ ଛଆଁଛୁଇଁର ଜଞ୍ଜାଳରେ ସେ ଦିକ୍‌ଦାର ହୋଇପଡ଼ିଲା । ମଣ୍ଡପକଥା ପାସୋରିଗଲା । ଆଉ ତା'ର ମହତ୍ତ୍ୱ ମଧ୍ୟ ଊଣାହୋଇଗଲା ।

ଏହା ବାହାରେ ମହବୁବର ଉପଯୋଗୀ କାମ ଥିଲା କନ୍ୟାକୁ ସଜାଇବା । ରତ୍ନାକୁ ସେ ବିଭିନ୍ନ ସମୟରେ ବିଭିନ୍ନ ଢଙ୍ଗରେ ଶାଢ଼ୀ ପିନ୍ଧାଏ, ବାଳ ବାନ୍ଧିଦିଏ, ଅନେକ ପ୍ରକାରର ଟିପା ଲଗାଇ ଦିଏ –ଏମିତିଭାବରେ ଆପଣାର କଳା କୌଶଳ ଦେଖାଏ । କଥାଟା ଘରର ବୁଢ଼ୀମାନଙ୍କ ମନକୁ ପାଉ ନଥାଏ । ଏଣେ ମହବୁବ ବିନା ରତ୍ନାର ଅଳଙ୍କରଣ ହୋଇପାରୁନଥାଏ । ତାକୁ ଯିଏ ଯେତେରକମର ତିଆରୁ ପଛକେ ସେ ମହବୁବ ପାଖକୁ ଯାଇ ତାରିଠାରୁ ଜରିଶାଢ଼ୀ ପିନ୍ଧିକରି ଆସିବ । ସେଥିପାଇଁ ଅଗଣାର ବାଁ ପାଖରେ ଥିବା ଘରଟି ଛାଡ଼ି କୁଆଡ଼େ ନଯିବା ପାଇଁ ରତ୍ନା ମହବୁବକୁ କଡ଼ା ଆଜ୍ଞା ଦେଇ ରଖିଛି । ରତ୍ନା ଆସିଲେ ମହବୁବର ମନେହୁଏ ଯେପରି ସେ ମଧ୍ୟ ବାହାଘରରେ କିଛି କାମ କରୁଛି । ସେ ଚାଲିଗଲେ ତାକୁ ସବୁ ଶୂନଶାନ୍ ଲାଗେ । ପାନଗୁଆ ଭଲଲାଗେ ନାହିଁ । ଯେତେବେଳେ ଆପଣାର ରୁପାଡ଼ବାରୁ ଚୂନ ବାହାର କରି ସେ ଧୂଆଁପତ୍ରର 'ଖୈନୀ'' ତିଆରି କରେ ଓ ପାନରୁ ଶିରା କାଢ଼େ ପାଖଆଖର ଦଶ କୋଡ଼ିଏ ପିଲା ତାକୁ ଘେରିଯାନ୍ତି । ସେମାନଙ୍କର ମା' ମାନେ ଘୃଣାରେ ସେମାନଙ୍କୁ ପିଟି ସେଠାରୁ ଟାଣିନେଇଯାନ୍ତି ।

ଆଉରି ବଡ଼ ସମସ୍ୟାଟିଏ ଥିଲା । ତାହା ହେଲା ଶୋଇବା ଜାଗାର ସମସ୍ୟା ।

ପ୍ରଥମଦିନ ସଭିଏଁ ଥକାମରା ହୋଇ ଯେଉଁଠି ଜାଗା ମିଳିଲା ସେଇଠି ପଡ଼ିଗଲେ। ଶୋଇବା ଜାଗା ବିଷୟରେ ପଚାରିବାକୁ ମହବୁବକୁ ସଂକୋଚ ଲାଗିଲା। ଶେଷରେ ସେ ଦେଖିଲା ଯେ ପଛପଟର ଏକ ଖାଲିକୋଣରେ ଶୋଇଲା ପରି ଜାଗାଟିକିଏ ଅଛି। ସେଇଠି ସେ ନିଜର ଚାଦର ବିଛାଇ ଦେଇ ସବୁଜରଙ୍ଗର ଶାଲ ଘୋଡ଼ାଇ ହୋଇ ଶୋଇପଡ଼ିଲା। ଭୋରରୁ ଉଠି ରାଘପ୍ପା ସେ ଶାଲକୁ ଦେଖି ତାକୁ ଚିହ୍ନି ପାରିଲା। ସେ ରାଗରେ ଅଗ୍ନିଶର୍ମା ହୋଇ ସ୍ତ୍ରୀ ଉପରେ ଗର୍ଜିବାକୁ ଲାଗିଲା। ଗୋଟିଏ ଦୃଷ୍ଟିରୁ ବାଡ଼ିପଟ ଅଗଣା ସୁବିଧାଜନକ ଥିଲା। ହେଲେ ରାଘପ୍ପାର କଠୋର ଆଜ୍ଞା ହେତୁ ତାକୁ ସବୁ ସ୍ତ୍ରୀଲୋକ ଶୋଉଥିବା ବଡ଼ ମେଲାଘରେ ଗୋଟିଏ କୋଣରେ ଶୋଇବାକୁ ପଡ଼ିଲା। ସେଠାରେ ସଭିଙ୍କର ବ୍ୟଙ୍ଗବାଣ, ତୋଡ଼ ଓ ଅନାଦର ସହିବାକୁ ପଡ଼ିଲା।

କେବଳ ଗୋଟିଏ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ପାଇଁ ସେ ଏସବୁ ସହିଗଲା। ବାହାଘର ପରେ ଚଉଠି ରାଘପ୍ପା ଘରେ ହିଁ ହେବାର ଥାଏ। କିଙ୍ଗୀର ଭଡ଼ାଘର ବହୁତ ଛୋଟ ଥିବାରୁ ଦେଶାଇଜୀ ନିଜଘରେ ବ୍ୟବସ୍ଥା କରିବାକୁ ଚାହୁଁଥିଲେ, ମାତ୍ର ରାଘପ୍ପା ଜିଦ୍ କରିବାରୁ ତା'ର କଥା ରଖିବାକୁ ପଡ଼ିଲା ଓ ତାରି ଘରେ ବ୍ୟବସ୍ଥା କରିବାର ସ୍ଥିରହେଲା। ସେ ଦିନ (ବରକନ୍ୟାଙ୍କର) ପଲଙ୍କକୁ ଫୁଲରେ ସଜାଇବାକୁ ମହବୁବର ଆନ୍ତରିକ ଇଚ୍ଛା ଥାଏ। ସେଇ ଦିନଟି ଲାଗି ତା'ର ମନ ଆତୁର ହୋଇ ଉଠିଥାଏ। ବାସର ଗୃହକୁ ସଜାଇବା ଲାଗି ନିଜହାତରେ ବିଶେଷ ଧରଣର ଧୂପବତୀ ତିଆରି କରି ଆପଣାର ଛୋଟିଆ ବାକ୍ସଟିରେ ବଡ଼ ଯତ୍ନରେ ସାଇତିକରି ଆଣିଥାଏ। ସେଇ ଦିନଟି ଲାଗି ସେ ସବୁକଷ୍ଟ ସହି ଚୁପ୍‌କରି ରହିଥାଏ। ସପ୍ତପଦୀ ହେବା ପାଇଁ ଆଉରି ଘଣ୍ଟାଏ ବାକି। ଏଗାର ପ୍ରକାରର ଫୁଲରେ ଏକ ଅର୍ଦ୍ଧଚନ୍ଦ୍ରାକାରର ମାଳା ତିଆରି କରି ମହବୁବ ରତ୍ନାର ଖୋଷାକୁ ସଜାଇଦେଲା। ଅନ୍ୟସବୁ ବେଶପଟା କରିଦେଲା। ତାକୁ ଟିକିଏ ଚଲାଇ କରି ଦେଖିଲା ଓ ପରବର୍ତ୍ତୀ କର୍ମାନୁଷ୍ଠାନ ପାଇଁ ପଠାଇ ଦେଲା। ତା'ପରେ ନିଜର ରୁପାର ଚୂନଦାନୀ ବାହାର କଲା। ଚାରିପଟର ଗୋଳମାଳ ପ୍ରତି ତା'ର ଧ୍ୟାନ ନଥାଏ। ବାହାରେ ଶାହାନାଇବାଲା 'ରାଗତୋଡ଼ି' ବଜାଉଥାଏ। ଧାରୱାଡ଼ର ସବୁଠାରୁ ସେରା ସାହାନାଇବାଲାକୁ ରାଘପ୍ପା ଡକାଇ ଥାଏ। ରାଗାଳାପ ଭାରି ସୁନ୍ଦର ଭାବରେ ଆରମ୍ଭ ହୋଇଥାଏ। ବାହାର ପାଚେରି ଦିଗରେ ଆଡ଼ ଆଖିରେ ଚାହିଁ ପାନରେ ଚୂନ ଲଗାଉ ଲଗାଉ ମହବୁବଜାନ ବଡ଼ ମଗ୍ନ ହୋଇ ଶାହାନାଇ ଶୁଣୁଥିଲା। ମନ୍ଦ ସ୍ୱରର କୋମଳ ଆଳାପଧ୍ୱନି ନଦୀର ଲହରି ପରି ଧୀରେ ଧୀରେ ଚାରିଆଡ଼େ ଖେଳେଇ ହୋଇଯାଉଥାଏ। .....ଆରେ.....ଏ ବେସୁରା ସ୍ୱର ଫେର କଣ? ମହବୁବଜାନ ଆଶ୍ଚର୍ଯ୍ୟ ଚକିତ ହୋଇ ବିନାଗୁଆର ପାନ କଳରେ ଡାକିଲା। ରାଗ ବେସୁରା ହୋଇ ନାହିଁ ତ? ବେଦୀ ପାଖରୁ କଣ ସବୁ ପାଟିତୁଣ୍ଡ ଶୁଭୁଛି। କିଏ ରାଗରେ ଯାଇ ଶାହାନାଇ ବନ୍ଦ କରିବାକୁ କହିଲା। ଶାହାନାଇ ବନ୍ଦ ହୋଇ ଯିବାରୁ ସ୍ପଷ୍ଟ ଶୁଣାଗଲା।

ମହବୁବଜାନ ଅଳସଠାଣିରେ ଚୂନତ୍ରବାକୁ ଟ୍ରଙ୍କରେ ରଖି ଗଳାରେ ଓହଳି ଥିବା ଚାବିଦେଇ ତାଲା ବନ୍ଦକଲା ଓ ଧୂଆଁପତ୍ର ନଖାଇ ବାକ୍ସ ଉପରେ କହୁଣୀଭରା ଦେଇ ଉଠି ମୁଣ୍ଡଉପରକୁ ଖଣ୍ଡିଓଢ଼ଣା ଟାଣି ''ଆଲ୍ଲା'' ବୋଲି କହି ହାକୁଟି ମାରୁ ମାରୁ ବାହାରକୁ ଆସିଲା।

ଲୋକେ ଭିଡ଼କରି ବେଦୀର ଗୋଟିଏ ପାଖରେ ଠିଆ ହୋଇଥାଆନ୍ତି। ସଭିଏଁ ଠିଆ ହୋଇଥିବାରୁ ମହବୁବଜାନକୁ କିଛି ଦେଖାଗଲା ନାହିଁ। ପାଖରେ ଠିଆହୋଇଥିବା ଝିଅମାନଙ୍କୁ କଣ ହୋଇଛି ବୋଲି ପଚାରିବାରୁ ସେମାନଙ୍କ ଭିତରୁ ଜଣେ ତାକୁ ''ସ୍‌ସ୍‌...'' କହି ଓଠ ଉପରେ ଆଙ୍ଗୁଠି ରଖିଲା। ଅନ୍ୟମାନେ କିଛି ଜାଣି ନଥାନ୍ତି। ଏତିକିବେଳେ ଭିଡ଼ ମଝିରେ ବାଟ କରିନେଇ ତମତମ ହୋଇ ମୁଖରା ବିଧବାଟିଏ ବାହାରି ଆସି ମଣ୍ଡପର ଦୁଆରଆଡ଼କୁ ଯିବାକୁ ଲାଗିଲା। ମହବୁବ ତାକୁ ଚିହ୍ନି ପାରିଲା। ଗତକାଲି କିଏ ଜଣେ ତାକୁ 'ଗଙ୍ଗୱା' ବୋଲି ଡାକିବାର ସେ ଶୁଣିଥିଲ; ତହିଁରୁ ହିଁ ସେ ବୁଝିପାରିଥିଲା ଯେ ଇଏ ବରର ମା'। ଏଇ ଭଲଲୋକଟି ଚମ୍ପନାଁରେ ତର୍ପଣ କରିଦେଇଛି। ଏବେ ତାରି ପଛେ ପଛେ 'ଯଜମାନ' ଲୋକଙ୍କୁ ଠେଲି ଦୌଡ଼ କରି ଆସି ତାକୁ ରୋକି ନେଇ ତା' ପାଦତଳେ ପଗଡ଼ି ରଖିଦେଲା। ବର ଦୌଡ଼ିଆସି 'ମା ଯାଆ ନାହିଁ' କହି ଅନୁନୟ କରିବାକୁ ଲାଗିଲା। ଏସବୁଥିରୁ ମହବୁବ କିଛି ବୁଝି ପାରିଲା ନାହିଁ। ପଛରୁ ଜଣେ ଜରିଦାର ପଗଡ଼ି ପିନ୍ଧା ଲୋକ ଆସି ସେଠାରେ ଠିଆହେଲେ, ଗଙ୍ଗୱା ସେଇ ଲୋକଙ୍କ ଆଡ଼କୁ ମୁହଁକରି ହାତ ହଲାଇ ବଡ଼ ପାଟିରେ କଣ କହିବାକୁ ଲାଗିଲା। ଲୋକଙ୍କ ଶୋରଗୋଳ ଭିତରେ ତା'ର ଆୱାଜ ଶୁଭୁଥିଲେ ସୁଦ୍ଧା ସ୍ପଷ୍ଟ ବୁଝା ପଡୁନଥିଲା। କିଛିକ୍ଷଣ ପରେ ତା'ର ରାଗ ଓ ପାଟି ଶାନ୍ତ ହୋଇଗଲା। ସେ ଘରବାହାରେ ଚଉତରା ଉପରେ ଯାଇ ବସିଲା। ତା'ର ଚାରିକଡ଼େ ଫୁସ୍‌ଫାସ୍ କଥାଭାଷା ହେଉଥିବା ସ୍ତ୍ରୀଲୋକମାନେ ଜମାହୋଇଗଲେ। କାହା ଆଡ଼କୁ ଧ୍ୟାନ ନ ଦେଇ ସେ ବସିରହିଲା। 'ଯଜମାନ' ସେଇ ପଗଡ଼ିଧାରୀଙ୍କୁ ସାଙ୍ଗରେ ଧରି ପାଖଘର ଭିତରକୁ ଚାଲିଗଲେ।

ଲୋକ ଭିଡ଼ ଭିତରୁ ଦାନ୍ତୁରା ଭଟ୍ଟ ବାହାରି ଏପଟେ ଆସିଲା। ମହବୁବ ସହ ତା'ର ମୁହଁ ଚିହ୍ନା ଥିଲା। କାଲି ତା' ପାଖକୁ ଆସି ଧୂଆଁପତ୍ର'ଖୈନି' ମାଗିକରି ନେଇ ଥଟ୍ଟା କରି ଯାଇଥିଲା। ତାକୁ ଅଟକାଇ ମହବୁବଜାନ ପଚାରିଲା, 'କଣ ହୋଇଛି ?'

'ହବ କଣ ?.... ତୋ 'ଯଜମାନ'ର କାରସାଦୀ।

'କାହିଁକି କଣ ହେଲା ? ଧୂଆଁପତ୍ର ଦେଉଛି...କୁହ।'

'କଣ ହେବ ସଭିଏଁ ଜାଣନ୍ତି। ହଜାରେ ଟଙ୍କା ବରପଣ ଦେବ ବୋଲି ତୋ 'ଘରବାଲା' କଥା ଦେଇଥିଲା। ଏବେ ହାତଗଣ୍ଠି ପଡ଼ିବାକୁ ଘଣ୍ଟାଟିଏ ଅଛି କହୁଛି ଏଇନେ ପାଞ୍ଚଶହ ଟଙ୍କା ନେଇଥାଅ, ବାକି ଆଗମାସରେ ଦେଇଦେବି। ଆଗ ମାସରେ ଆଉ ଦେଲାଣି ! ଇଏ 'ରାଘସ୍ପାଭରାରୀ'ର କଥା !'

ବୁଢ଼ା ବ୍ରାହ୍ମଣଙ୍କୁ ଧୂଆଁପତ୍ର ଦେଇ ମହବୁବ ଅନ୍ୟାନ୍ୟ ଅନେକ କଥା ଜାଣି ନେଲା। ବିବାହରେ ଅଧିକ ଖର୍ଚ୍ଚ ହୋଇଯିବାରୁ ବରପଣ ପାଇଁ ରଖିଥିବା ପଇସାରୁ 'ଯଜମାନ' ଖର୍ଚ୍ଚ କରିପକାଇଛି। ଆଉ ଆଉ ଜାଗାରୁ ମିଳିବା ଟଙ୍କା ମିଳିନାହିଁ। ଏବେ ବାକ୍ସରେ ସାତ-ଆଠଶହ ଟଙ୍କା ପଡ଼ିଛି। ଅନ୍ୟାନ୍ୟ ଖର୍ଚ୍ଚପାଇଁ ଟଙ୍କା ରଖି ବାକି ପାଞ୍ଚଶହ ଟଙ୍କା ଏବେ ସମୁଧୁଣୀ ଓ ଦେଶାଈବାବୁଙ୍କୁ ନେଇ ନେବା ପାଇଁ ଅନୁରୋଧ କରୁଛି। ତା'ର କହିବା କଥା ହେଲା, ପୋଷ୍ୟ ନେବ ବୋଲି ଶପଥ କରିଛି, ତେଣୁ ସବୁ ସମ୍ପତ୍ତି ଆପଣମାନଙ୍କର। ମାସଟିଏ ସବୁର କରିଗଲେ କ'ଣ କ୍ଷତି ହେବ। ମାତ୍ର ମୂଳରୁ ମନ ଫଟାଫଟି ଥିବାରୁ ଓ ଏଯାଏଁ ଚୁପ୍‌ଚାପ୍‌ରହି ହାତଗଣ୍ଠି ପଡ଼ିବାର ଘଣ୍ଟାକ ଆଗରୁ ଏକଥା କହୁଥିବାରୁ ସେ ପକ୍ଷର ଲୋକଙ୍କ ମନରେ ଆଉରି ସନ୍ଦେହ ହେଉଛି। ତେଣୁ ଗଙ୍ଗୱା ଛୁଇଁଏ ସୁଦ୍ଧା ଘୁଞ୍ଚିବାକୁ ପ୍ରସ୍ତୁତ ନୁହଁ। ଜିଗର କରୁଛି ଏବେ ହଜାରେ ଟଙ୍କା ଗଣିଦେଲେ ଯାଇଁ ହାତଗଣ୍ଠି ପଡ଼ିବ, ନ ହେଲେ ନାହିଁ। ମୂର୍ଖ କିଟ୍ଟୀ ମା'କୁ ବୁଝାଇବାକୁ ବସିଲାରୁ ଗଙ୍ଗୱା ରାଗିଯାଇ କହିଲା, 'ମୋତେ ବାଦ୍ ଦେଇ ତୁ ବାହା ହୋଇ ଯା'।' ବେଦୀଛାଡ଼ି ଏକା ଏକା ଚାଲିଯିବାପାଇଁ ଉଠିପଡ଼ିଲା। ଏ ବିଷୟରେ କଥା ହେବେବୋଲି ଦେଶାଈଜୀ ଭରସା ଦେବାରୁ, ଯାଇ ବାହାରେ ବସିଛି। 'ଯଜମାନ' ଘର ଭିତରେ ଦେଶାଈବାବୁଙ୍କ ସହ କଥା ହେଉଛି। କେମିତି ଅବିବେକ। ....'ରାଘପ୍ପା ଭରାରୀ' ....ବାହାଘରରେ ବିଘ୍ନ....ଆପମାନର କଥା ...ଇତ୍ୟାଦି ଇତ୍ୟାଦି।

ନିଜର ସବୁ ପୁଞ୍ଜି ଭଣଜାର ତେଜରାତି ଦୋକାନରେ ଖଟାଇ ଦେଲା ପରେ ମହବୁବ ଆପଦ ବିପଦ ପାଇଁ ପ୍ରାୟ ଶହେଟଙ୍କା ଏବଂ ନିଜର ଖର୍ଚ୍ଚ ପାଇଁ ପ୍ରାୟ ପଚିଶ ଟଙ୍କା ସାଙ୍ଗରେ ଆଣି ଆସିଥାଏ।

ଘର ଆଗରେ ଦେଶାଈଜୀଙ୍କୁ ବସାଇ ରାଘପ୍ପା କହିଚାଲିଥାଏ।

'ରାୟ ସାହେବ, ଗଙ୍ଗୱା କ'ଣ ମୋର ପର? କିଟ୍ଟୀ କଣ ମୋର ପର? ଭଉଣୀକୁ ଭଣ୍ଡିଦେବାକଥା ମୁଁ ଭୁଲରେ ସୁଦ୍ଧା ଭାବୁନାହିଁ। ଆପଣ ଜାଣନ୍ତି, ବାହାଘର କଥା। ଆମ ଦାନ୍ତବାଲା ହନୁମନ୍ତ ଭଟ୍ଟ କାଲି କହୁଥିଲା ରାଘପ୍ପା, ତୁମ ଘର ବାହାଘର ଧୁମ୍‌ଧାମ୍ ଦେଖି 'ଜମଖଣ୍ଡି' ମହାରାଜାଙ୍କ ବାହାଘର କଥା ମନେପଡ଼ିଯାଇଛି। —କଣ କରିବି? ହାତଖୋଲା ଖର୍ଚ୍ଚ ହୋଇଗଲା। କାଲିରାତିରେ ବାକ୍ସରେ ହାତଦେଇ ଗଣିଲା ବେଳକୁ ମାତ୍ର ଆଠଶହ ଦଶଟଙ୍କା ବଳିଛି। 'ଚୋରି ହୋଇ ଯାଇ ନାହିଁ ତ' ଭାବି ହିସାବ ଦେଖେଁ ତ ବିଲକୁଲ ଠିକ୍। ପଇସାଟିଏ କମ୍ ବେଶୀ ହେଉନାହିଁ। ବହୁ ବଡ଼ବଡ଼ ଲୋକଙ୍କ ମୁହଁ ମୋର ଜଣାଶୁଣା। ଶୁଭକାର୍ଯ୍ୟ ଭାବି ଖୋଲାହାତରେ ଖର୍ଚ୍ଚ କରିପକାଇଲି, ଖର୍ଚ୍ଚ ବେଶୀ ହୋଇଗଲା। କାଲି ରାତିରେ ଆପଣଙ୍କ ପାଖକୁ ଯିବି ଭାବୁଥିଲି; ଦଶଟା ବାଜିଯାଇଥିଲା; ଆପଣଙ୍କ ନିଦ ଭଙ୍ଗେଇବି ନାହିଁ ଭାବି ଚୁପ୍ ରହିଲି। ସକାଳେ ଆସିବା ମାତ୍ରେ ଆପଣଙ୍କ ଆଗରେ ସବୁ ସତକଥା କହିଦେଇଛି, କିଛି ଲୁଚାନାହିଁ।'

'ରାଘସ୍ତା, ଆପଣଙ୍କ କଥା ଠିକ୍। କିନ୍ତୁ ଯେତେବେଳେ ଗଙ୍ଗୱା ଓ ଆପଣଙ୍କ ଭିତରେ ଅପଡ଼, ସେତେବେଳେ ବାହାଘରରେ ଏତେ ଧୁମ୍‌ଧାମ୍ ନକରି ନିଜର କଥା ରକ୍ଷା ପାଇଁ ଅଧିକ ଧ୍ୟାନ ଦେବା ଉଚିତ ଥିଲା। ଏଥିରେ ମୁଁ ଗଙ୍ଗୱାର କୌଣସି ଦୋଷ ଦେଖୁନାହିଁ।'

'ରାୟ ସାହେବ, ନିପଣ୍ଣାକୁ ବିନ୍ଦଗୋ୦୦ ପଠାଇଛି। ହନୁମନ୍ତ ଛକରେ ରାୟସ୍ତା ଶେଠୀ ପାଖକୁ ରାମକୁ ପଠାଇଛି। ଏବେ ନଅଟା ବେଳର ଲଗ୍ନ ଯଦି ଗଡ଼ିଯାଏ ଯାଉ। ଏଗାରଟା ପନ୍ଦର ବେଳକୁ ଆଉରି ଭଲ ଲଗ୍ନଟିଏ ଅଛି। ଏଇ ଦି' ଘଣ୍ଟା ଭିତରେ ମୁଁ ଟଙ୍କା ଯୋଗାଡ଼ କରିବା ପାଇଁ ଜୀବନପଣ ଚେଷ୍ଟା କରିବି। ·ତେବେବି ଯଦିନହୁଏ, ରାୟସାହେବ, ତେବେ ଏଗାରଟା ; ପନ୍ଦରର ମୁହୂର୍ତ୍ତକୁ ରୋକିବେ ନାହିଁ। ମୋତେ ଆଉଥରେ ବିଶ୍ୱାସ କରନ୍ତୁ। ମୁଁ ଆପଣଙ୍କ ଗୋଡ଼ ତଳେ ପଡୁଛି। ଦବାନବା କଥା ଏବେବି ବାକି ଅଛି, ଝିଅ ବିଦା ଅଛି; କନ୍ୟାବାଲାର ତ୍ରୁଟି ସବୁବେଳେ ବରପକ୍ଷର ହାତରେ। ଏଇନେ ପାଞ୍ଚଜଣ ଭଦ୍ରଲୋକଙ୍କ ଆଗରେ ମୋର ମାନ ରଖନ୍ତୁ। ଏ ପରିସ୍ଥିତିରୁ ଯେକୌଣସି ପ୍ରକାରେ ମୋତେ କୂଳରେ ଲଗାନ୍ତୁ। ...ଶୁଭକାମରେ ଆପଣଙ୍କ ପରି ଗୁରୁଜନ ଆଗୁଆ ହୋଇ ଆମର ମାନ ରକ୍ଷା ନକଲେ ହେବ କେମିତି ?'

ଦେଶାଈଜୀଙ୍କ ମନରେ ରାଘସ୍ତା ପ୍ରତି ବିଶେଷ ଅବିଶ୍ୱାସ ଜନ୍ମିଥିଲା। ଥରେ ଭାବିଲେ କହିବେ ଯେ 'ମୁଁ ଦେଇ ଦେଇଛି; —ମାତ୍ର ମନରେ ସନ୍ଦେହ ହେଲା। ତାଛଡ଼ା କିଟ୍ଟୀକୁ ଦେବା ଏକ କଥା, ରାଘସ୍ତାକୁ ଦେବା ଆଉ ଏକ କଥା। ଏମିତି ମଧ୍ୟ ହୋଇପାରେ ରାଘସ୍ତା ଟଙ୍କା ରଖି ଅଭିନୟ କରୁଛି।

ଏଣେ ରାଘସ୍ତା ଯାହାସବୁ କହିଗଲା, ତହିଁରୁ ଅଧା ମିଛ। ଅଳ୍ପ ସତ। ତା' ପାଖରେ ମାତ୍ର ଆଠଶହ ଦଶଟଙ୍କା ବଳିଥାଏ ଏହା ସତ; ଏକଥା ମଧ୍ୟ ସତ ଯେ ସେ ଗୋଟିଏ ଦି'ଟା ଜାଗାରେ ଭରସାରଖି ହାତ ଟିକିଏ ଢିଲା କରିଦେଇଥିଲା, ଖର୍ଚ୍ଚ ବେଶୀ ହୋଇଯାଇଛି ଏହା ତାକୁ ପନ୍ଦର ଦିନ ଆଗରୁ ମାଲୁମ ଥାଏ। ହନୁମନ୍ତ ଗୌଡ଼ର ମାମଲାରେ ସେ କାହିଁ କେବେ ମଧ୍ୟସ୍ଥତା କରିଥିଲା; ତହିଁରୁ କିଛି ପଇସା ମିଳିବାର ଥିଲା। ତାରି ଉପରେ ଭରସା ରଖିଥିଲା। ମାତ୍ର ଜଣା ପଡ଼ିଲା ଯେ ସେଠାରୁ କିଛି ହାତକୁ ଆସିବା ପରି ଲାଗୁନାହିଁ। ବାହାଘର ଆଉ ତିନିଚାରି ଦିନ ଥାଏ। ଦେଶାଈବାବୁଙ୍କ ପାଖରେ ଗଙ୍ଗୱା ଟଙ୍କା ରଖିଥିବା କଥା ସେ କିଟ୍ଟୀଠାରୁ ଜାଣିପାରିଥାଏ। ଏହା ଶୁଣିଲାପରେ ତା'ର ମନକୁ ଆସିଲା ଯେ ସମୟବେଳକୁ କହିଦେବି ପଇସା ନାହିଁ। ସମ୍ଭବ ହେଲେ ସଙ୍ଗେ ସଙ୍ଗେ ପାଞ୍ଚଶହଟଙ୍କା କମ୍ କରାଇନେବି। କିଟ୍ଟୀ ପିଲାଟି ଭଲ, କିନ୍ତୁ ସଭିଏଁ ନିଶ୍ଚୟ ମାନିବେ ଯେ ସେ ହଜାର ଟଙ୍କାର 'ଲାୟକ' ନୁହଁ। ଗଙ୍ଗୱା ଯଦି ଜିଗର କରେ ତେବେ ଦେଇ ଦେବି କହି ତାକୁଇ ତଳକୁ ଖସାଇଦେବି। ସଭିଏଁ ତାକୁ ଭର୍ତ୍ସନା କରିବେ। ଯଦି ହୁଏ ଦେଶାଇ ବାବୁଙ୍କୁ ମଝିରେ ରଖି ତୁରନ୍ତ ପାଞ୍ଚଦଶ ଦିନ ଭିତରେ ଫେରାଇ

ଦେବି କହି ତାଙ୍କଠାରୁ ପାଞ୍ଚଶହଟଙ୍କା କରଜ ନେଇ ଯିବି। ଦେଶାଇ ଯଦି କିଟୀକୁ ତା'ର ହଜାର ଟଙ୍କା ଫେରାଇବାରେ ଟାଳମଟାଳ କରନ୍ତି, ତେବେ ଏଇ ପାଞ୍ଚଶହଟଙ୍କା ସେତେବେଳେ ତାଙ୍କୁ ବାଗକୁ ଆଣିବାରେ ସାହାଯ୍ୟ କରିବ।

ବାହାଘରର ଧୁମଧାମରେ ମସଗୁଲ ଲୋକଙ୍କର ଭିତିରି କଥାରେ ସଂଶୟ ଜାତ ହେବାର ସମ୍ଭାବନା ନଥାଏ। ମାତ୍ର ଗଙ୍ଗୁଆ ମନରେ ଅକାରଣ ସଂଶୟ ଜାତ ହେଉଥାଏ। ହାତଗଣ୍ଠି ପଡ଼ିବାର ଆଗଦିନ ଦେଶାଇଜୀଙ୍କ ଆଗରେ ଏକଥା ସେ ଉଠାଇଥିଲା।

'ଗୋପଣ୍ଣା, ବରପଣି ବିଷୟରେ ସେ ଯଦି କିଛି ବେଶୀ କମ୍ କରେ ମୁଁ ଚୁପ୍ ରହିବା ଲୋକ ନୁହଁ। ଏକଥା ମନେରଖିଥିବ।'

'ଗଙ୍ଗୁଆ, ବିବାହ ଆୟୋଜନର ରଙ୍ଗଢ଼ଙ୍ଗ ଦେଖି ମନେହେଉଛି ହଜାରେ ଟଙ୍କା ଦେବାରେ ସେ କୌଣସି ହେରଫେର କରିବ ନାହିଁ।'

'ତାର ବିଭବ ମୋଠୁ ଲୁଚିଛି ନା କଣ ଗୋପଣ୍ଣା? ସବୁ ଅଛି। କରୁଛି ମଧ୍ୟ। ଚାହିଁଲେ ନିଜର ରକ୍ଷିତା ଉପରେ ମଧ୍ୟ ପଇସା ଢାଳି ଦେଇପାରେ। ହେଲେ ଆମ ସହ ମର୍ଯ୍ୟାଦା ରଖି ଚଳିବ– ଏକଥା ଉପରେ ମୋର ଭରସା ନାହିଁ। ମୋତେ ଅପମାନ କରିବା ପାଇଁ ସେ ସବୁବେଳେ ଓର ଉଣ୍ଡି ବୁଲୁଛି। ପୋଷ୍ୟ ନେବା କଥାରେ ଗଙ୍ଗୁଆ ନରମି ଯାଇଥିଲା; ରାଘପ୍ପା ସେଇକଥା କହି ଡେଙ୍ଗୁରା ପିଟି ବୁଲୁଛି। ମୁଁ ଅପମାନ ସହିବା ପାଇଁ ପ୍ରସ୍ତୁତ ନୁହଁ। କୌଣସି କଥାରେ ଯଦି ବେଶୀ କମ୍ ହୁଏ ତେବେ ମୁଁ ସଫା କହିଦେବି, 'କିଟୀ, ତୁ ଯଦି ସତରେ ମୋ ପୁଅ ହୋଇଥିବୁ ତେବେ ବେଦୀଛାଡ଼ି ମୋ ସାଙ୍ଗରେ ଚାଲ।' ସେଥିରେ ଯଦି ସେ ନଆସେ, ତେବେ ମୁଁ ଚାଲିଆସିବି। ମୋତେ ବାଦ୍ ଦେଇ ବାହାଘର ହେବ ଯଦି ହେଉ।'

ଗଙ୍ଗୁଆ କହିଥିବା ପରି ସବୁକଥା ହେଲା। ଏଇ କଥାବାର୍ତ୍ତା ହେତୁ ହିଁ ଦେଶାଇଜୀ ନିଜେ କରଜ ଦେବାକଥା ଉଠାଇଲେ ନାହିଁ। ରାଘପ୍ପାର' କଥା ଉପରେ ସେ ଦି'ପଦ କଥା କହିଲେ।

'ରାଘପ୍ପା, ଏ ମାମଲାରେ ମୋର ଦାୟିତ୍ୱ ଏଇଠି ଶେଷହୋଇଗଲା।'

ରାଘପ୍ପା ଦେଖିଲା, କଥା ହାତଛଡ଼ା ହୋଇଯାଉଛି। ତେଣୁ ଇଙ୍ଗିତରେ କରଜ ନେବା କଥା ଉଠାଇଲା। 'ରାୟସାହେବ, ଆପଣ ସମଝଦାର। ଏକଥା କହନ୍ତୁ ନାହିଁ। ଦିହେଁ ମିଳି ବାଟ ବାହାର କରିବା। ଦୁଇଟି ଜାଗାକୁ ପଇସା ପାଇଁ ଲୋକ ପଠାଇ ଦେଇଛି। ମୋର ଅନୁରୋଧ ଏ ମଙ୍ଗଳ କାମରେ ଯେପରି ବିଘ୍ନ ନଘଟୁ। ମୁଁ ସବୁବେଳେ ଆପଣଙ୍କ ଅଧୀନରେ ଅଛି। ଅପାଣଙ୍କ ଛଡ଼ା ମୋର ବା ଆଉ ଅଛି କିଏ? କିଛି ବାଟ ବାହାର କରନ୍ତୁ।' ଏଇ ସ୍ପଷ୍ଟ ଇଙ୍ଗିତ ହେତୁ ଦେଶାଇଜୀ ଅଧିକ କଠୋର ହୋଇ ଉଠିଲେ। ଶୁଣି ନଶୁଣିଲା ପରି ନୀରବ ହୋଇ ବସିରହିଲେ। ଆଉ କିଛି ଚାରା ନ ଦେଖି ରାଘପ୍ପା ଭଉଣୀକୁ ଅଗଣାରେ ବସିବାକୁ ବାଧ୍ୟ କଲା। ସେ ଏଗାରଟା ପନ୍ଦରର ମୁହୂର୍ତ୍ତ ଯାଏଁ ଅପେକ୍ଷା କରିବାକୁ ରାଜିହେଲା।

ନିମନ୍ତ୍ରିତ ଲୋକେ ସମୟ ମୁତାବକ ଆସିବାକୁ ଲାଗିଲେ। ମା'ର ଜିଦ୍ ଦେଖି କିଙ୍ଗୀ ଅପମାନିତ ବୋଧକଲା। ଖସି କରି ଯାଇ ଜର୍ଜ ସହ ଏକ ଚା' ଦୋକାନରେ ବସି ରହିଲା। ନିମନ୍ତ୍ରିତମାନଙ୍କୁ ବସାଇ ସେମାନଙ୍କ ପାଇଁ ଚା' ବନ୍ଦୋବସ୍ତ କରିବା ଲାଗି ରାଘପ୍ପା ଖନ୍ଦାଶାଳ ଆଡ଼େ ଚାଲିଗଲା। ସେଠାରେ କାନ୍ଦୁଥିବା ଚମ୍ପକ୍କ ରାଘପ୍ପାକୁ ଲୁହରେ ଭସାଇଦେଲା। ବାହାରୁ ଭିତରକୁ ଆସିଲାବେଳେ ନିମନ୍ତ୍ରିତମାନଙ୍କ ମଧ୍ୟରେ ହେଉଥିବା କଥାବାର୍ତ୍ତା ଶୁଣି ରାଘପ୍ପା କ୍ଷୁଣ୍ଣ ହୋଇପଡ଼ିଥିଲା। ତହିଁରେ ପୁଣି ଜୟପ୍ପା ଶେଠୀ ପାଖକୁ ପଠାଇଥିବା ରାମ ସାଇକେଲ ଦୌଡ଼ାଇ ଆସି ବଡ଼ି ପାଟିରେ ଶେଠୀ କହିଥିବା କଥାସବୁ ଦୋହରାଇ ଗଲା, 'ହୁଟ କରି କେମିତି ସେ ପାଞ୍ଚଶହଟଙ୍କା କରଜ ମାଗି ପଠାଇଲେ ? ଏଇ ପଅରି ଦିନ ତିନିଶହ ଟଙ୍କା ନେଇଗଲେ, ପିଲାଖେଳ ନାଁ କଣ ? ତା'ପରେ ପୁଣି କହିଲା, ଶେଠୀ ଆପଣଙ୍କୁ ଡାକି ପଠାଇଛନ୍ତି।

ରାଘପ୍ପାର ମନେହେଲା ନିଜ ଜାଲରେ ସେ ନିଜେ ଛନ୍ଦି ହୋଇ ଯାଉଛି। ହନୁମନ୍ତ ଗୌଡ଼ ପାଖକୁ ପଠାଯାଇଥିବା ତିପଣ୍ଣାକୁ ଯଦି ବସ୍ ମିଳିଯାଏ ତେବେ ତା'ର ଆସିବାକୁ ଆଉରି ଘଣ୍ଟାଟିଏ ଲାଗିଯିବ। ଏହା ସତ ଯେ ଜୟପ୍ପା ଶେଠୀ ତାକୁ ଗାଳିଦେବା ପାଇଁ ଡାକିଛି। ଦେଶାଇଜୀ ଜାଲରେ ପଡ଼ିଲେ ନାହିଁ। ଏ ହଟ୍ଟ ଗୋଳରୁ ସେ ଯଦି ଦଶମିନିଟ ପାଇଁ ବାହାରକୁ ବାହାରି ଯାଇ ପାରନ୍ତା, ତେବେ ମୁଣ୍ଡରେ କୌଣସି ଉପାୟ ଆସିପାରନ୍ତା। ଏହା ଭାବି ରାଘପ୍ପା ଜୟପ୍ପା ଶେଠୀ ପାଖକୁ ଯିବବୋଲି ମନସ୍ଥ କରି କୋଟ୍ ଓ ପଗଡ଼ି ପିନ୍ଧିବାକୁ ଲାଗିଲା।

ସେ ମଣ୍ଡପ ଦ୍ୱାରରୁ ବାହାରକୁ ବାହାରିଲା ବେଳକୁ ଆଗପଟରୁ ଏକ ଟାଙ୍ଗା ସଜୋରରେ ଆସି ଦାଣ୍ଡରେ ଅଟକିଗଲା। ତହିଁରେ ମହବୁବଜାନ ବସିଥାଏ। ଆପଣାର ମୋଟା ଦେହକୁ ସଂଭାଳି ନେଇ 'ଆଲ୍ଲା' କହି ସେ ଟାଙ୍ଗାରୁ ଓହ୍ଲାଇ ପଡ଼ିଲା। ମୁଣ୍ଡ ଉଠାଇ ଚାହିଁବା ବେଳକୁ ଆଗରେ ରାଘପ୍ପା। ଉତ୍ସୁକ ହୋଇ ସେ ପଚାରିଲା 'ଆପଣ କୁଆଡ଼େ ଯାଉଛନ୍ତି ?'

ଆପଣାର ଅପମାନ କଥା ମହବୁବ ଆଗରେ ବ୍ୟକ୍ତ କରିବାକୁ ରାଘପ୍ପାର ଇଚ୍ଛା ହେଲା ନାହିଁ। ସେ ଟାଙ୍ଗାରୁ ଓହ୍ଲାଉଥିବାରୁ ରାଘପ୍ପା ଆଶ୍ୱସ୍ତ ହେଲା, ଯାହେଉ କଳିତକରାଳ ବେଳେ ମହବୁବଜାନ ଉପସ୍ଥିତ ନଥିଲା। କଥା ବୁଲାଇବା ପାଇଁ ପଚାରିଲା 'କୁଆଡ଼େ ଯାଇଥିଲ ?'

ମହବୁବ କହିଲା, 'ଟିକିଏ ଭିତରକୁ ଆସନ୍ତୁ।' ତା'ପରେ ଉତ୍ତରକୁ ଅପେକ୍ଷା ନକରି ସହଳ ଭିତରକୁ ପଶିଗଲା। 'କାମସାରି କରି ଆସୁଛି' ବୋଲି ରାଘପ୍ପା କହିବାକୁ ଯାଉଥିଲା, କିନ୍ତୁ ସେତେବେଳେକୁ ମହବୁବ ଭିତରକୁ ଚାଲିଯାଇ ଥିବାରୁ ସେ ତା' ପଛେପଛେ ଭିରତକୁ ଗଲା।

ସିଧା ଘର ଭିତରକୁ ଯାଇ ମହବୁବ ନିଜର ଛୋଟ ବାକ୍ସଟି ଖୋଲି ତହିଁରୁ ଦଶଟଙ୍କାର ଦଶଟି ନୋଟ ବାହାର କଲା; ବ୍ଲାଉଜ ଭିତରୁ କାଗଜର ପ୍ୟାକେଟଟିଏ ବାହାର କରି ତା' ଭିତରକୁ ଉଙ୍କିମାରି ଦେଖିଲା ଏବଂ ତହିଁରେ ସେଇ ଦଶଟଙ୍କାର

ନୋଟ ବିଡ଼ାଟି ରଖି ରାଘସ୍ବାକୁ ଅପେକ୍ଷା କରିବାକୁ ଲାଗିଲା। ରାଘସ୍ବା ଭିତରକୁ ଆସିବା ମାତ୍ରେ କହିଲା, 'ଟିକିଏ ଅପାଙ୍କୁ ଡାକନ୍ତୁ ଦେଖି।'

ବିବ୍ରତ ହୋଇ ରାଘସ୍ବା ପାଖରେ ଠିଆହୋଇଥିବା ପିଲାକୁ ନିର୍ଦ୍ଦେଶ ଦେଲା 'ଯା, ଡାକି ଆଣରେ।' ତାପରେ ଶଙ୍କିତ ହୋଇ ମହବୁବକୁ ପଚାରିଲା, 'କ'ଣ ମହବୁବ, କ'ଣ କରି ଆସିଛ ?'

ମହବୁବ ଏ କଥାର କୌଣସି ଜବାବ ନଦେଇ ଚମ୍ପାଙ୍କାର ଆସିବା ବାଟକୁ ଚାହିଁ ରହିଲା। ଭାବୁଥାଏ ଅଳ୍ପ ଦିନ ତଳେ ଥରେ ଚମ୍ପାଙ୍କା ଇଙ୍ଗିତରେ ଯେଉଁକଥା କହିଥିଲା, ଆଜି ତାହା ପୂରଣକରି ଋଣମୁକ୍ତ ହେବାର ଦିନ ଆସିଛି।

ଚମ୍ପାଙ୍କା ଭିତରକୁ ଆସିବା ମାତ୍ରେଇ ମହବୁବ ତା' ହାତରେ ପ୍ୟାକେଟଟି ଧରାଇ ଦେଇ କହିଲା, 'ଅପା, ୟାକୁ ସମ୍ଭାଳ।' ଲଫାପା ଖୋଲି ଦେଖି ଚମ୍ପାଙ୍କା ଧପ୍‌କରି ଭୂଇଁରେ ବସିପଡ଼ିଲା। ତହିଁରେ ଚାରିଖଣ୍ଡ ଶହେଟଙ୍କିଆ ଓ ଦଶଖଣ୍ଡ ଦଶଟଙ୍କିଆ ନୋଟ ଥାଏ।

ରାଘସ୍ବା ଆଡ଼କୁ ବୁଲିପଡ଼ି ମହବୁବ ତା' ହାତରେ ଅତି ଯତ୍ନରେ ସାଇତିରଖିଥିବା ଧୂପବତୀ ପ୍ୟାକେଟଟି ଧରାଇଦେଲା। ତା'ର ଆଖିରେ ଲୁହ ଭରି ଯାଇଥାଏ।

ଭାରୀ ଗଳାରେ ରାଘସ୍ବା ପଚାରିଲା, 'ମହବୁବ ସତ କହ, କଣ କରି ଆସିଛ ?'

ଚତୁରା ମହବୁବ କହିଲା, 'କାହିଁକି ?....ମୁଁ ଉପହାର ଦେଉଛି, ଉପହାର ନେବାକୁ ମନା କରିବ ?'

ନଅଟା ବାଜିବାକୁ ଦଶମିନିଟ ମାତ୍ର ଅଛି । ଅଧିକ ପଚ଼ରାଉଚୁରା କରିବାକୁ ରାଘସ୍ବା ହାତରେ ବେଳ ନାହିଁ। ମୂକଯନ୍ତ୍ରଣାରେ ତା'ର ମନ ଭାରୀ ହୋଇଉଠିଲା। ଲୋଭୀ ଚମ୍ପାଙ୍କାର ମୁହଁରୁ କୃତଜ୍ଞତାର ଶବ୍ଦ ବାହାରୁଥାଏ। କିନ୍ତୁ ସେଇ ଗମ୍ଭୀର ବାତାବରଣରେ କଥା କହିବା ଅପେକ୍ଷା ନୀରବତା ହିଁ ଅଧିକ ଶୋଭନୀୟ ଥିଲା।

'ନ'ଟା ବେଳକୁ ହାତଗଣ୍ଠି ପଡ଼ିବ' – କଥାଟା ରାଘସ୍ବା ବଡ଼ ପାଟିରେ ଘୋଷଣା କଲା। ତହିଁରେ ସାରା ସଭା କୋଳାହଳ ମୁଖର ହୋଇଉଠିଲା। ଦେଶାଇବାବୁଙ୍କ ଆଗରେ ହଜାରେ ଟଙ୍କା ଗଣିଦିଆଗଲା। ଚା' ଦୋକାନରୁ କିଙ୍ଗୀ ଡକାହୋଇ ଆସିଲା। ଚା' ପାଇଁ ବସା ହୋଇଥିବା ପାଣି ସେମିତି ରୋଷେଇ ଘରେ ବସି ରହିଲା। ବେଦୀରୁ ମନ୍ତ୍ରଧ୍ୱନି ଶୁଣାଗଲା। ସଭିଏଁ ବେଦୀ ଚାରିପଟେ ଘେରିଗଲେ। ଏଇ ଗୋଳମାଳ ମଧ୍ୟରେ ମହବୁବ କାହିଁକି ଯେ ଧୂପ ବତୀତକ ଦେଲା, ସେକଥା ପଚାରିବାକୁ ରାଘସ୍ବା ସୁଯୋଗ ପାଇଲା ନାହିଁ।

ଏଇ ଗୋଳମାଳ ମଧ୍ୟରେ ମହବୁବ ବେଦୀଠାରୁ ଦୂରରେ ରହିଗଲା। ତା'ର ଭାରି ଇଚ୍ଛା ଥିଲା, ବରବଧୂ ଉପରେ ଆଶୀର୍ବାଦ ଅକ୍ଷତ ପକାଇବ। ତା'ର ଦୃଢ଼ବିଶ୍ୱାସ ସେ ଦୁହିଁଙ୍କ ଉପରେ ଆଶୀର୍ବାଦ ଚାଉଳ ପଡ଼ିଲେ ତା'ର ବଧାଇ ଜଣାଇବାଟା ସଂପୂର୍ଣ୍ଣ ହେବ। କିନ୍ତୁ ଏଇ ଭିଡ଼ ଭିତରେ ପଶିକରି ଯିବା ତା'ର ସୁପ୍ତି ଦେହକୁ ସୁହାଇଲା ନାହିଁ। ତାଛଡ଼ା ଛୁଆଁଛୁଇଁର ଡର ମଧ୍ୟ ଅଛି। ଶେଷରେ ସ୍ଥିର କଲା

ଭିଡ଼ ଭାଙ୍ଗିଗଲା ପରେ ପାଖକୁ ଯାଇ ସେ ଅକ୍ଷତ ପକାଇବ। ଏତିକିବେଳେ ବ୍ରାହ୍ମଣ ଶେଷ ମନ୍ତ୍ର 'ସୁ ମୁହୂର୍ତ୍ତ ସମାଧାନ' କଥାଟି ଉଚ୍ଚାରଣ କଲା। ଏହା ଶୁଣି ସଭିଏଁ ବରବଧୂ ଉପରକୁ ଅକ୍ଷତ ଫିଙ୍ଗିଲେ। ସଭିଏଁ ଫିଙ୍ଗିବାରୁ, ମନ୍ତ୍ର ଉଚ୍ଚାରିତ ହେବାରୁ, ପୁଣି ବାଦ୍ୟ ବାଜିବାରୁ ସେ ନିଜର ଭାରସାମ୍ୟରକ୍ଷା କରି ନପାରି ସବୁ ଶକ୍ତି ଠୁଳ କରି ବରବଧୂ ଉପରକୁ ହାତରେ ଧରିଥିବା ଅକ୍ଷତକୁ ଫିଙ୍ଗିଦେଲା। ସେ କ୍ଷତ ଯାଇ ପାଖରେ ଠିଆହୋଇଥିବା ଦୁଷ୍ଟ ଝିଅମାନଙ୍କ ମୁଣ୍ଡରେ ପଡ଼ିଲା। ପ୍ରଥମରୁ ଦୁଃଖିତା ଥିବା ମହବୁବ ଆଉରି ଦୁଃଖିତା ହୋଇପଡ଼ିଲା। ଚାଲିଯିବା ପୂର୍ବରୁ 'ଯଜମାନ'କୁ ଏତକ କହିଯିବାକୁ ତା'ର ଇଚ୍ଛା ହେଲା ଯେ ସେଇ ଧୂପ ଚତୁର୍ଥୀ ଦିନ ବରବଧୂର ବିଛଣା ପାଖରେ ଯେପରି ଜଳାଇ ଦିଆଯାଏ। କିନ୍ତୁ 'ଯଜମାନ' ଭିଡ଼ ଭିତରେ ହଜିଯାଇଛି। ଟାଙ୍ଗାବାଲା ଅନେକ ବେଳରୁ ଅପେକ୍ଷା କରିଛି। ଅକ୍ଷତ ପଡ଼ିବା ମାତ୍ରେଇ ସେ ଦୁଆର ଭିତରକୁ ମୁହଁ ଗଳାଇ ଏପଟ ସେପଟ ଅନିଷା କଲା। ତାରିଦ୍ୱାରା ମହବୁବ ନିଜର ବାକ୍ସ ଓ ବିଛଣା ଉଠାଇନେଇ ଚାଲିଗଲା; ହଟ୍ଟଗୋଳ ଭିତରେ ଏକଥା କେହି ଜାଣିଲେ ନାହିଁ।

ସେ ଯିବାର ଅଧଘଣ୍ଟା ପରେ ଜଳଖିଆ ଖାଇବା ପାଇଁ ଡାକିବାକୁ ଆସି ଚମ୍ପକ୍କା ସାରାଟା ଘର ତାକୁ ଖୋଜିଲା।

ସେଇ ଦିନ ସଞ୍ଜରେ ବିବାହ ସାହାନାଇକୁ ବଳି ଆଉରି ଯୋରେ ବାଜୁଥିବା ଏକ ବ୍ୟାଣ୍ଡ ସେଇ ଘର ଆଗଦେଇ ବାହାରିଗଲା। ବାହାର ଚଉପାଢ଼ୀ ଉପରେ ଏକଦାନ୍ତିଆ ହନୁମନ୍ତ ଭଟ୍ଟ ବସି ଗପମାରୁଥାଏ। ତା' ହାତରେ ହେଣ୍ଡବିଲ୍‌ଟିଏ ପଡ଼ିଲା। ତାକୁ ପଢ଼ିଲାମାତ୍ରେ ସେ ହତଚକିତ ହୋଇ ଭିରତକୁ ଯାଇ ରାଘପ୍ପା ହାତରେ ତାହା ଧରାଇଦେଲା। ଟିକିଏ ଉଦାସୀନଭାବରେ ରାଘପ୍ପା ତା'ର ପ୍ରଥମ ଅଂଶ ପଢ଼ିଲା ପରେ ଅନ୍ତିମ ଭାଗ ପଢ଼ୁ ନପଢ଼ୁଣୁ ତାକୁ ଝାଳ କଣ୍ଟିଗଲା।

''ଶ୍ରୀକୁଳ ଦେବତା ପ୍ରସୀଦତୁ।' ଶ୍ରୀ ଶେଷଶାୟୀ ନାଟକ କମ୍ପାନୀ ହୁବଠିଠୀ କ୍ୟାମ୍ପ ଧାରୱାଡ଼ କମ୍ପାନୀ ଆପଣଙ୍କ ସେବାରେ ଶ୍ରୀ ବସେବଶ୍ୱରଙ୍କ ମେଳାରେ ନିମ୍ନଲିଖିତ ନାଟକ ପ୍ରସ୍ତୁତ କରୁଅଛି।

ଆଜିଠାରୁ ତିନିଦିନ ପର୍ଯ୍ୟନ୍ତ 'ଭେଙ୍କଟେଶ ପାରିଜାତ'

ତା'ପର ତିନିଦିନ ପର୍ଯ୍ୟନ୍ତ 'ଗୁଲେବ କାଓଲୀ'

,, ,, 'ରୁକ୍ମିଣୀ ହରଣ'

,, ,, 'ଗାନ୍ଧୀ ଟୋପି ସିଙ୍ଗଲ ଚା'

,, ,, 'ସାଥିରେ ରହିବି' ନାଟକ

(ବି.ସୂ.: ଏଥିରେ ପରିବର୍ତ୍ତନ ହେବାର ସମ୍ଭାବନା ଅଛି। ପରବର୍ତ୍ତୀ କାର୍ଯ୍ୟକ୍ରମ ପୁଣି ଘୋଷଣା କରାଯିବ। (୩)

ଏମେଳା ପାଇଁ ବିଶେଷଭାବରେ ହୁବଠିଠୀର ପ୍ରସିଦ୍ଧ ଗାୟିକା ମହବୁବଜାନ ମିରଜକର ଏସବୁ ନାଟକରେ ନାୟିକା ଭୂମିକାରେ ଅଭିନୟ କରିବେ। ଛଅବର୍ଷ

ପରେ ଧାରୱାଡ଼ର ରସିକ ଜନତା ଆଗରେ ନିଜର ମଧୁର ଗୀତ ସେ ଉପସ୍ଥାପନ କରିବେ। କଳାପ୍ରେମୀମାନେ ଏ ସୁବର୍ଣ୍ଣ ସୁଯୋଗ ହରାନ୍ତୁ ନାହିଁ।

ସ୍ଥାନ - ବସବେଶ୍ୱର ମନ୍ଦିରର ପଶ୍ଚାତଭାଗରେ କମ୍ପାନୀର ତମ୍ବୁ ମଧ୍ୟସ୍ଥ ରଙ୍ଗମଞ୍ଚ।

ପରମେଶ୍ୱର ଭଟ୍ଟ। ଅଧିକାରୀ-ଶେଷଶାୟୀ ନାଟକ କମ୍ପାନୀ।

ରାଘପ୍ପାକୁ ଝାଳ ବୋହିଗଲା। ଏକଥା ସେ ଆଶା କରି ନଥିଲା।

ଏବେ ମହବୁବର ବୟସ ହେଲାଣି। ଦେହ ପୃଥୁଳ ହେଲାଣି। ଧଇଁ ପେଲେ। ନାଟକର ପରିଶ୍ରମ ସହିବା ଶକ୍ତି ତାଠାରେ ନାହିଁ। ରାଘପ୍ପା ତାକୁ ନାଟକରେ ଭାଗ ନେବା ପାଇଁ ବାରଣ କରିବାର କାରଣ କେବଳ ଗୋଟିଏ ନୁହଁ। ଛଅ ବର୍ଷ ପୂର୍ବେ ମହବୁବ ଏଇ କମ୍ପାନୀରେ କାମ କରୁଥିଲା। ସେତେବେଳେ ଏଇ ସମୟରେ ହୁବ୍‌ଠୀର ପଶୁ ମେଳାରେ ପାଖାପାଖି ଦଶ ଏଗାର ଦିନ ଏକାଦିକ୍ରମେ, ଶୁଆ ନାହିଁ, ବିଶ୍ରାମ ନାହିଁ, ନାଟକରେ ନାଚି ଗାଇ ଦିନେ ନାଟକ ସରିଲା ପରେ ବାନ୍ତିକରି ମୁଣ୍ଡ ବୁଲାଇ ପଡ଼ିଗଲା। ସେଇଥିପାଇଁ ଟାଇଫଏଡ଼ ହୋଇ ମାସେ ବିଛଣାରେ ପଡ଼ିରହିଲା। ମାଲିକ ପରମେଶ୍ୱର ଭଟ୍ଟର ଗୋଟିଏ ଗୁଣ ହେଲା, ସେ ବଡ଼ ମେଳାପୀ ମଣିଷ। ବହୁତ ଖୁଆଇ ପିଆଇ ପାରେ। ସେପରି ଭଲ କଳାକାର ତା' ହାତରେ ପଡ଼ିଲେ ସେ କେବଳ ଜୋର୍ କରି ଖୁଆଏ ନାହିଁ, ପିଆଏ ମଧ୍ୟ। ନାଟକ ସରିଲେ ସଭିଙ୍କୁ ଏକାଠି ବସାଇ ଘଣ୍ଟେଅଧେ ଗପମାରେ ଆଉ ପିଆଏ। ଏହା ସେ ନିଜ ଅଭ୍ୟାସବଶରୁ କରେ। ଯେଉଁ କାରଣରୁ କରୁ ନାଁ କାହିଁକି କଳାକାରକୁ ହାତରେ ରଖିବା ପାଇଁ ଅଥବା ଅନିଦ୍ରା ସତ୍ତ୍ୱେ ପରଦିନ ନାଟକରେ ଭାଗନେବା ପାଇଁ ଉତ୍ସାହିତ କରିବା ପାଇଁ ହେଉ, ସେ ଏ କାମଟି ଉପରେ ଗୁରୁତ୍ୱ ଦେଉ ଥିଲା। ମହବୁବର ଟିକିଏ ପିଇବା ଦରକାର ପଡୁଥିଲା। ଦିନେ ଦିନେ ଆଗ୍ରହରେ ବହୁତ ପିଇ ଦିଏ। ସେଥିପାଇଁ ତାକୁ ଅଣନିଃଶ୍ୱାସୀ ଲାଗେ ତ ଧଇଁ ପେଲେ। ଏକଥା ଜାଣିପାରି ରାଘପ୍ପା ନିଜର ରସିକତାକୁ ପଛକୁ ପକାଇ ମହବୁବକୁ ନାଟକରେ ଭାଗ ନେବାକୁ ନାହିଁ କରିଦେଲା। ଏମିତି ଛଅବର୍ଷ ବିତିଗଲାଣି। ଏବେ ମହବୁବ ଆଗ ଅପେକ୍ଷା ସ୍ଥୂଳକାୟ ହୋଇପଡ଼ିଛି। ଆଗର ପରିଶ୍ରମ ଏବେ ତାଦ୍ୱାରା ଅସାଧ୍ୟ। ଏବେ ଆଗ ଅପେକ୍ଷା ବେଶୀ ଧଇଁ ପେଲୁଛି। ଏମିତି ରାଘପ୍ପା ପାଇଁ ପାଞ୍ଚଶହ ଟଙ୍କା ଯୋଗାଡ଼ କରିବାକୁଯାଇ ତାକୁ ଜୀବନ ପଣ କରିବାକୁ ପଡ଼ିଲା।

ଯେଉଁ କାମ ଯେଉଁଠି ପଡ଼ିଥିଲା, ସେଇଠି ପକାଇ ରଖି ରାଘପ୍ପା ତୁରନ୍ତ ଟାଙ୍ଗା କରି ଗ୍ରାଣ୍ଡ ହୋଟେଲକୁ ଯାଇ କମ୍ପାନୀର ମାଲିକ ପରମେଶ୍ୱର ଭଟ୍ଟ ସହିତ ସାକ୍ଷାତ କଲା। ମହବୁବକୁ ଆଗରେ ବସାଇ ପରମେଶ୍ୱର ଭଟ୍ଟ ପଦ୍ମାବତୀର ପାର୍ଟ ଶୁଣୁଥାଏ। ଏଇ ନାଟକଟିରେ ବହୁବାର ଅଭିନୟ କରିଥିବା ମହବୁବ ଦୀର୍ଘ ଛଅବର୍ଷର ଅନଭ୍ୟାସ ହେତୁ ପାର୍ଟ ଟିକିଏ ଏପଟ ସେପଟ କରି ପକାଉଥାଏ। ଏକା ଶବ୍ଦରୁ ଆରମ୍ଭ ହେଉଥିବା ଦୁଇଟି ସମ୍ଭାଷଣ ସ୍ଥଳରେ ସେ ବେଳେବେଳେ ଗୋଟିକୁ ଅପରଟିର ସ୍ଥାନରେ କହିପକାଉଥାଏ। ଅନୁପ୍ରାସଯୁକ୍ତ ବାକ୍ୟର ଉଚ୍ଚାରଣରେ ଗଲ୍‌ତି କରିପକାଉଥାଏ।

ପ୍ରମ୍ପଟିଂର ସହାୟତାରେ ଯାକୁ ସୁଧାରି ନେଇ ହେବ। ପାର୍ଟ ମନେରଖିବାରେ ମହବୁବ ନୂଆ ନୁହେଁ, କିନ୍ତୁ ସେ ଅର୍ଥ ବୁଝିପାରୁ ନଥାଏ। ତେଣୁ ଗୋଟିଏ ଶବ୍ଦ ସ୍ଥାନରେ ଆଉ ଗୋଟିଏ ଶବ୍ଦ ପ୍ରୟୋଗ କରି ବସୁଥାଏ। ଏସବୁ ବୁଝିପାରୁଥିବା ପରମେଶ୍ୱର ଭଞ୍ଜ ଏକ ଅନୁଭବୀ ରୂପରେ ଏଣୁ ତେଣୁ ସୂଚନା ଦେଇ ତା'ର ମୃଦୁସ୍ୱରକୁ ଶୁଣୁଥାଏ। ଅନୁଭବୀ କଳାକାର ବଡ଼ ପାଟିରେ ପାର୍ଟ କରିବା ଅନାବଶ୍ୟକ। ଏଇ ତିନିଚାରି ଘଣ୍ଟାରେ ହିଁ ସେ ଅନେକ ସୁଧାରି ନେଲାଣି। ବଙ୍କା ସିନ୍ଥା କାଟି ଫୁଲପକା ଶାଢ଼ୀ ପିନ୍ଧିଥିବା ମହବୁବର ମୁହଁରେ ରଙ୍ଗମଞ୍ଚର ପଦ୍ମାବତୀର ଭାବ ଫୁଟିଉଠିଥାଏ।

ରାଘସ୍ୱା ସିଧାସଳଖ ଘରେ ପଶିଗଲା। ପରମେଶ୍ୱର ଭଞ୍ଜ ରାଘସ୍ୱାକୁ ଭାରି ଆଦରକରେ, ଭାରି ଡରେ। ଏମିତିରେ ସେ ମହବୁବଠାରୁ କାଗଜରେ ସଇ କରାଇ ନେଇଛି। ତଥାପି ଏଇନେ ଯଦି ରାଘସ୍ୱା ମହବୁବକୁ ଘରକୁ ଚାଲ ବୋଲି କହି ଦବ, ତେବେ କାହାଣୀ ଏଇଠି ଖତମ ହୋଇଯିବ। ମଉକା ଆସିଲେ କୋର୍ଟ କଚେରୀ ଯାଏଁ ଚାଲିଯିବାକୁ ସେ ଜାଣେ। ଚାହିଁଲେ ବାଧା ଦେଇପାରେ, ସେଥିପାଇଁ ଭଞ୍ଜ ତାକୁ ସ୍ୱାଗତ କରି ଆସନ ଗ୍ରହଣ କରିବାକୁ କହିଲା। ରାଘସ୍ୱା ଠିଆ ହୋଇ ରହି ରାଗରେ ଗର୍ଜିଉଠି କହିଲା, 'ଏ ଭଞ୍ଜ୍, ତମ ସହ ଗପ କରିବାକୁ ଆସିନାହିଁ। ମହବୁବ ଏବେ ତୁମ ହାତକୁ ଆସିଛି। ତାକୁ ଯଦି ପିଆଇବୁ ତେବେ ଦିନ ଦି'ଟାରେ ତୋତେ ସହରରୁ ବାହାର କରାଇଦେବି, ତୋ ତମ୍ବୁକୁ ଫୁଙ୍କି ଉଡ଼ାଇଦେବି, ବୁଝି ଖବରଦାର।'

ଗତଥର ମହବୁବ ବେମାର ପଡ଼ିବାରୁ ରାଘସ୍ୱା ଯୋଗାଡ଼ଯନ୍ତ୍ର କରି ଭଞ୍ଜର ଲାଇସେନ୍ସ ରଦ୍ଦକରି ଦେଇଥିଲା। ଏଥର ମହବୁବକୁ ବାହାର କରିନେଇ ନାଟକର ସତ୍ୟାନାଶ କରୁନାହିଁ, ଏହାହିଁ ଯଥେଷ୍ଟ ମନେକରି ଭଞ୍ଜ ଖୁସିହେଲା। ସେ ଉଠିପଡ଼ି କହିଲା, 'ଆରେ ରଘୁଭାଇ, ଆପଣ ଇଏ କି କଥା କହୁଛନ୍ତି। ମହବୁବଜାନ ଆପଣଙ୍କର ଜିନିଷ। ଆପଣ ଯେପରି ଆଜ୍ଞା କରିବେ ସେପରି କରିବି। ଯଦି ସେ ପିଇବାକୁ ମାଗେ ତାହେଲେ ସୁଦ୍ଧା ଦେବିନାହିଁ ନାଁ କଣ? ଆପଣଙ୍କର ଯେପରି ଇଚ୍ଛା ସେଇପରି ଆଜ୍ଞା ଦେଇଯାଆନ୍ତୁ।'

'ସେ ଯେତିକି ମାଗିବ ସେତିକି ଦେବୁ। ପାଖରେ ବସାଇ ବଳେଇ କରି ପିଆଇଛୁ ବୋଲି ଯଦି ଜାଣିବାକୁ ପାଏ ତେବେ ତୋତେ ଏମିତି ପାନେ ଦେବି ଯେ ମନେରଖିଥିବୁ।'

ଏତିକି କହି ବୁଲିପଡ଼ି ବାହାରି ଆସିଲା। ମହବୁବ ସହିତ କଥା କହିବାକୁ ବା ତା' ଆଖିରେ ଆଖିରଖିବାକୁ ତା'ର ହିମ୍ମତ ହେଲା ନାହିଁ।

ମହବୁବ ଥିବା ହେତୁ ବାହାଘରିଆ ଘର ପୂରିଲା ପୂରିଲା ଲାଗୁଥିଲା। ସେ ଯିବା ପରେ ଘରର ଉଜ୍ଜ୍ୱଳତା ମ୍ଳାନହୋଇଗଲା। ରସିକ ଭଞ୍ଜ ଓ ନକଲିଆ ଟୋକାଙ୍କ ପାଇଁ ଥଟ୍ଟା ପରିହାସ କରିବାକୁ କେହି ରହିଲେ ନାହିଁ। ମାଇପୀ ମହଲ ଯାହା ଉପରେ ତାନ ଛିଣ୍ଡାଉଥିଲେ ସେଇ ଲୋକଟି ଆଖିରୁ ଉହାଡ଼ ହୋଇଗଲା। ଛୁଆଁଛୁଇଁ

ବାରଣ ମାନୁଥିବା ବିଧବାମାନେ କହିବାକୁ ଲାଗିଲେ, 'ସେ ଥିଲାବେଳେ ସାରା ମଣ୍ଡପଟି ପୂରିଲା ପୂରିଲା ଲାଗୁଥିଲା। ଏବେ ଖାଁ ଖାଁ ଲାଗୁଛି। ବିଚାରୀ!' କନ୍ୟା ଲୁଗା ପାଲଟିଲାବେଳେ ତାକୁ ମନେପକାଉଛି। ଝିଅମାନେ କୁହାକୁହି ହେଉଛନ୍ତି ଯେ ସେ ଭାରି ମେଳାପୀ ଥିଲା; ଶୁଣି ଚମ୍ପକ୍କା ନିଜକୁ ଅପମାନିତ ବୋଧକରୁଛି। ରାଘସ୍ୱାର ଉତ୍ସାହ ଯେପରି ଲିଭିଯାଇଛି। ତା' ମନରେ ଦୁଃଖ, କଣ ଭାବିଥିଲା, ଆଉ କଣ ହୋଇଗଲା। ମହବୁବ ଥିଲା ତା'ର ପ୍ରେମ ଓ ଅଭିମାନର କେନ୍ଦ୍ରସ୍ଥଳ। ସେ ଗଲାପରେ ରାଘସ୍ୱାର ଜୀବନୀଶକ୍ତି ମନ୍ଦୀଭୂତ ହୋଇପଡ଼ିଲା। ରାତିରେ ଭଲ ନିଦ ଆସୁନାହିଁ। ବିବାହ ମଣ୍ଡପର ଉଜ୍ଜ୍ୱଳତା ହଜିଯାଇଛି।

# 20. କିଚ୍ଚୀର ଗୃହସ୍ଥାଶ୍ରମ

ବୋହୂ ଘରକୁ ଆସିଲା । ଘର ପୂରିଉଠିଲା । ଗଙ୍ଗୱା ବୋହୂକୁ ସସ୍ନେହେ ସ୍ୱାଗତ କଲା । ଯେତେଦୂର ସମ୍ଭବ ନିଜର ଉତ୍ସାହହୀନତାକୁ ଅପ୍ରକଟ କରି ରଖିଲା । ଦେଶାଇବାବୁଙ୍କ କହିବା ମୁତାବକ ଚଳିବାକୁ ଚେଷ୍ଟାକଲା । ପ୍ରଥମେ ପ୍ରଥମେ ବୋହୂର ତ୍ରୁଟି ଆଖିରେ ପଡ଼ିଲେ ମନକୁ ମନ ଧନ୍ଦିହେଉଥିଲା ଯେ ମୋ ମନରେ ରାଘପ୍ପା ପ୍ରତି ବୈରତା ଥିବାରୁ ହିଁ ମୁଁ ଆଜ ବୋହୂଠାରେ ଦୋଷ ଦେଖୁନାହିଁ ତ ? କିନ୍ତୁ କ୍ରମେ ଦିନ ବିତିବାକୁ ଲାଗିବାରୁ ପରିସ୍ଥିତିର ପରିବର୍ତ୍ତନ ହେତୁ ଗଙ୍ଗୱାକୁ ନିଜଚିନ୍ତା ଛାଡ଼ିବାକୁ ପଡ଼ିଲା । ପ୍ରଥମେ ତାକୁ ଟିକିଏ ଦୁଃଖ ଲାଗିଲା ....ତିନିଚାରିବର୍ଷ ହେଲା କିଚ୍ଚୀ ତା'ଆଡ଼କୁ ନଜର ଦିଏନାହିଁ। ଘରକୁ ଆସିଲେ ବେଶୀ କଥାବାର୍ତ୍ତା କରେ ନାହିଁ। ବୋହୂ ଆସିଲା ପରେ ତା'ର ମୁହଁ ଖୋଲିଗଲା । ସ୍ତ୍ରୀ ସହ ଏକପ୍ରାଣ ହୋଇ ଅନେକ କଥାଭାଷା ହୁଏ, କିନ୍ତୁ ମା'କୁ ଉପେକ୍ଷା କରେ । ଗଙ୍ଗୱା ପାଇଁ ଏହା ଏକ ନୂତନ ଅନୁଭୂତି। ମାସ ଦି'ଟାରେ ହିଁ ପୁଅ ଉପରେ ବୋହୂର ପ୍ରଭାବ ସ୍ପଷ୍ଟ ବୁଝାଗଲା । ଗଙ୍ଗୱା ଜାଣିଥାଏ ଯେ ବୋହୂ ଯୋଗୁଁ ହିଁ ପୁଅ ଘରେ କଥାବାର୍ତ୍ତା କରିବା ଆରମ୍ଭ କରିଛି। ଏଇ ନୂତନ ଅନୁଭୂତି ସହ ବୁଝାମଣା କରିବା ଗଙ୍ଗୱା ପକ୍ଷରେ କଷ୍ଟକର ହୋଇଉଠିଲା । ଜୀବନ ଶୂନ୍ୟବୋଧ ହେଲା, ଯେପରି ସେ କ'ଣ ହରାଇ ବସିଛି। ମନରେ ଅନେକ ଖରାପ ଚିନ୍ତା ଦେଖାଦେଲା; ସବୁଠାରେ ଭୟାନକ ଶୂନ୍ୟତାବୋଧ। ବୋହୂସହ ବୁଝାମଣା କରିବା ପାଇଁ ସେ ଏକ ଉପାୟ ଚିନ୍ତା କଲା । ଦି' ଚାରିଦିନ ସେ ତାକୁ ସାଙ୍ଗରେ ନେଇ ପୁରୁଣା ଚିହ୍ନା ପରିଚିତଙ୍କ ଘରେ ବୁଲାଇଆଣିଲା । କିନ୍ତୁ ସେଥିରେ ପୁଣି ଦିନ କେଇଟାରେ ଦୋଷ ଦେଖା ଦେଲା । ବାପା ବିଷୟରେ କିଛି ପଚାରିଲା ମାତ୍ରେ ରତ୍ନା ତା'ର ଭିନ୍ନ ଅର୍ଥ ବାହାର କରି ସ୍ପଷ୍ଟଭାବରେ ନିଜର ବିରକ୍ତି ପ୍ରକାଶ କରେ । କେତେଥର ଦାଣ୍ଡଦୁଆର ପାରିହେଲା ବେଳକୁ ପଛରୁ 'ବୋହୂ ଭାରୀ ତେଜି', 'ଭାରୀ-ଜବରଦସ୍ତ ବୋହୂ'- ଇତ୍ୟାଦି ପଡ଼ୋଶୀମାନଙ୍କର ଟିପ୍‌ପଣୀ ଶୁଣିଲାପରେ ରତ୍ନା ଆଉରି ତେଢ଼ିଉଠିଲା । ଏପରି ଅନେକ ସାନବଡ଼ ଅନୁଭବ ଗଙ୍ଗୱାର ମନର ଶୂନ୍ୟତାକୁ ବଢ଼ାଇବାକୁ ଲାଗିଲା । ସାନଘର, ଅନେକ ଅସୁବିଧା । ଗୋଟିଏ ଘର, ଆରଟି ରୋଷେଇଘର । ଘୁମପରି ସେଇ ରୋଷେଇ ଘରେ ସେ ଏବେ ତିନିଖଣ୍ଡ କାଠପଟା ଯୋଡ଼ି ନିଜର ବିଛଣା

ପାରିଦିଏ। ଦିନ କ୍ରମେ ବିତିବାକୁ ଲାଗିଲାରୁ କିଙ୍ଗୀର ଶୋଇବା ଘର ପାଖରେ ଶୋଇବାଟା ତାକୁ ଅସହ୍ୟ ବୋଧ ହେବାକୁ ଲାଗିଲା।

ଘରେ ଟିକିନିଖି କଥାରେ କଳି ସୃଷ୍ଟିହେଉଛି। ମା' ମୁହଁରୁ ଗଙ୍ଗୱା ସଂପର୍କରେ ଅତିରଞ୍ଜିତ ବର୍ଣ୍ଣନା ଶୁଣି ତହିଁରୁ ତା' ସଂପର୍କରେ ଭୟାନକ କଳ୍ପନା ସବୁ ରଦ୍ମା ଆଗରୁ କରିସାରିଥିଲା। ତା' ମନରେ ଗଙ୍ଗୱାର ଏକ ବିକଟାଳ ରୂପ ବସାବାନ୍ଧି ଥିଲା। ସେଥିପାଇଁ ଗଙ୍ଗୱା ସଂପର୍କରେ ରଦ୍ମା ମନରେ ଅଧେ ଭୟ ଅଧେ ଦ୍ୱେଷ ପୂରି ରହିଥାଏ। ପାଞ୍ଚଶହ ଟଙ୍କା ପାଇଁ ବାହାଘରରେ ବିଘ୍ନ ସୃଷ୍ଟି କରିଥିବା କୁରୂପା ବୁଢ଼ୀ ସଂପର୍କରେ ଏଇ ନବଯୁବତୀ ମନରେ ଆଉ ବା କେଉଁ କଳ୍ପନା ସୃଷ୍ଟି ହେବା ସମ୍ଭବ? ପହିଲେ ପହିଲେ ଗଙ୍ଗୱା ତା'ରି ହିତପାଇଁ ଦେଉଥିବା ଉପଦେଶକୁ ଓଲଟା ଅର୍ଥ କରି ସେ ମନକୁ ମନ ଜଳିଯାଉଥିଲା, ମାତ୍ର ଆଗରେ ପାଟି ଫିଟାଉ ନଥିଲା। କାହିଁକି ନାଁ ବିଦାବିଦି ବେଳେ ମା' ଲୁହଛଳଛଳ ଆଖିରେ ଆକଟ କରି କହିଥିଲା, 'ସେ ଯାହା କହୁନା କାହିଁକି ତୁ ଜବାବ ଦେବୁନାହିଁ।' ମା'ର ଏ ଶିକ୍ଷାକୁ ଭୁଲିବା ପାଇଁ ଅତିକମ୍‌ରେ ମାସେ ଦେଢ଼ ମାସ ତ ଦରକାର! ପ୍ରଥମେ ପ୍ରଥମେ ଗଙ୍ଗୱା ଭଲ କଥା କହିଲେ ମଧ୍ୟ ସେ ଭାବୁଥିଲା ଏଥିରେ କିଛି ଗଞ୍ଜଣା ରହିଗଲା। ଅନେକ ଥର ସେ ଗଙ୍ଗୱା କଥାରେ ଭିତରି ଅର୍ଥ ଅଛି ଭାବି ମନେ ମନେ ଜଳିଉଠିଛି। କେବେ ପୁଣି ଯଦି ଗଙ୍ଗୱାର କଥାରେ କିଛି ବ୍ୟଙ୍ଗ ଥିବାର ଧରି ନପାରେ ତେବେ ଭାବେ ଯେ ସେ କଥାର ମରମ ବୁଝିପାରି ନାହିଁ, ଏହା ଭାବି ତା'ର ଭୟ ବଢ଼ିଯାଏ। ଗଙ୍ଗୱା ସହିତ ସେ ଯେତେବେଳେ କଥା କହେ ସେତେବେଳେ ନିଜକୁ ରକ୍ଷା କଲା ପରି କଥା ହୁଏ।

'ରଦ୍ମା, ନୂଆଶାଢ଼ୀ ପିନ୍ଧି ବାସିପାଇଟି କର ନାହିଁ।'

'ଛିଣ୍ଡା ଲୁଗା ପିନ୍ଧି ବାହାରେ ବାସନ ମାଜିବି? ଠିକ୍ ଅଛି, କାଲିଠୁ କରିବି।

'ରଦ୍ମା, ଏପଟେ ଲୁଣ ରଖିବୁ ନାହିଁ।'

'ଆପଣ ଯେଉଁଠି କହିବେ ସେଇଠି ରଖିବି। ମଝିକୁ ଘୁଞ୍ଚାଇ ଦିଏଁ?'

'ରଦ୍ମା, ରନ୍ଧାଘରେ ମୁଣ୍ଡ କୁଣ୍ଡା ନାହିଁ, ଖାଇବା ଜିନିଷରେ ବାଳ ପଡ଼ିଯିବ।'

'ବାହାରେ ସିଏ ବସିଛନ୍ତି, ଯଦି ସେଇଠି ମୁଣ୍ଡ କୁଣ୍ଡାଇବାକୁ କହିବେ, ତେବେ କୁଣ୍ଡେଇବି।'

ଏଇପରି କଥାବାର୍ତ୍ତାରେ ଅପ୍ରୀତିକର ବ୍ୟଙ୍ଗ ଓ ସଂଦେହ ଧୀରେ ଧୀରେ ବଢ଼ିବାରୁ ଶାଶୁବୋହୂ ଭିତରେ ଦୂରତା ବଢ଼ିବାକୁ ଲାଗିଲା। ପହିଲେ ପହିଲେ ଗଙ୍ଗୱା ତାକୁ ବତେଇ ଦେଇଥିଲା ଯେ ରଦ୍ମା ତାକୁ ମା' ବୋଲି ଡାକି ପାରେ; କିନ୍ତୁ ଗଲା ପରେ ସୁଦ୍ଧା ତାକୁ ମା ବା ବୋଉ କହି ସମ୍ବୋଧନ କରିନାହିଁ। ନାହିଁ। ଡାକିବା ଦରକାର ପଡ଼ିଲେ ସେ ପାଖକୁ ଯାଇ 'ଭେଣ୍ଡି କାଟିବି ନାଁ ଆଉ କିଛି କାଟିବି?' 'ଚୁଲିରେ କୁହୁଳା ଦେଇ ଦେବି?' -ଇତ୍ୟାଦି ଏପରି ବଡ଼ପାଟିରେ ପଚାରେ ଯେପରି କାନ୍ଥ ସହ କଥା କହୁଛି।

ଏମିତି ଗୁପ୍ତଭାବରେ ଯେଉଁ ବିଷର ନଦୀ ବୋହିଚାଲିଥିଲା, କ୍ରମେ ତାହା ଅନିଚ୍ଛା ସତ୍ତ୍ୱେ ଏପରି ଭାବରେ ପ୍ରକଟିତ ହେଲା ଯେ କାହାରି ବାଧା ତାକୁ ରୋକି ପାରିଲା ନାହିଁ।

ଦିନେ ଭଲରେ ଭଲରେ ଗଙ୍ଗୱ୍ୱା କହିଲା। 'କିଟ୍ଟୀ, ବଜାରକୁ ଛଚିନ୍ଦ୍ରା ଆସିଲାଣି, ଦିନେ ଆଣିବୁ-ତ, ତରକାରି କରିବା।'

ଏକଥା ଶୁଣିବାମାତ୍ରେ ସ୍ୱାମୀସ୍ତ୍ରୀ ଦୁହେଁ ଦୁହିଁଙ୍କ ମୁହଁ ଚାହାଁ ଚୁହିଁ ହେଲେ।

ଗତରାତିରେ ରତ୍ନା ସ୍ୱାମୀ କାନରେ ଏଇକଥା କହିଥିଲା। କହିଥିଲା ତା' ବାପଘରେ ଛଚିନ୍ଦ୍ରା ତରକାରି ହୁଏ, ସେ ରାନ୍ଧିଜାଣେ। ଭାରି ସୁଆଦିଆ ଲାଗେ। ସବୁ ସବିସ୍ତାର କହିଥିଲା।

ଗଙ୍ଗୱ୍ୱା କଥାରେ କିଟ୍ଟୀ କୌଣସି ଜବାବ ଦେଲାନାହିଁ। ଝରକା ନଥିବାରୁ ରୋଷେଇ ଘରେ ଗୁଳୁଗୁଳି ସତ୍ତ୍ୱେ ଦୁଆରଠାରୁ ବେଶ୍ ଦୂରରେ ଚୁଲି ପାଖକୁ ଗଙ୍ଗୱ୍ୱା ଶୁଏ। ଏତେ ଦୂରରେ ଶୋଇଥିଲେ ସୁଦ୍ଧା ସେଦିନ ପୁଅବହୂଙ୍କର ଚୁପ୍‌ଚାପ୍ କଥା ତା'କାନରେ ପଡ଼ିଲା,'ଧୀରେ କୁହ କବାଟ ସନ୍ଧିରେ ଶୁଣୁଥିବେ।'

ସାରା ରାତି ତାକୁ ନିଦ ହେଲାନାହିଁ। ପରଦିନ ରୋଷେଇ ଘରେ ଭାରି ଗରମ ହେଉଛି ବୋଲି ଯୁକ୍ତିକରି ସେ ନିଜର ବିଛଣା ଗଣ୍ଡିଲି କାଶୀମା, ଘରେ ରଖି ଆସିଲା। 'ରାତି ସାରା ପାଇଁ ସେ ଘର ଛାଡ଼ିଦେଲେ। ଏବେ ନଜାଣି ଦିନବେଳେ କି ଫିସାଦୀ ଲଗାଇବେ।' ଏଥିରେ ଗଙ୍ଗୱ୍ୱା ଦୁଃଖିତ ହେଲା। ଦେଶାଇଜୀଙ୍କ ଉପଦେଶ ମନେପକାଇ ଚୁପ୍ ରହିବାକୁ ଲାଗିଲା। ମନକୁ ବୁଝାଇଲା, ନଖରୁ ମାଂସ କେବେ ଅଲଗା ହେଲାଣି।

ମା'ର ସାତ୍ତ୍ୱିକ ଗୁଣ ସହ ବାପାର ଗୋଟିଏ ଯୋଡ଼ିଏ ପ୍ରବୃତ୍ତି ରତ୍ନାଠାରେ ଥିଲା। ତା'ର ସାଧାରଣ ଚାଲିଚଳନରେ ଏ ଗୁଣ ପ୍ରକଟ ନହେଲେହେଁ ଆବଶ୍ୟକ ସ୍ଥଳେ ସେ ସେଇ ଗୁପ୍ତାସ୍ତ୍ରକୁ ବାହାରକୁ ବାହାର କରେ। ସେଦିନ ରାତିର କଥାଟା ସେ ଚାଲାଖି କରି କହିଥିଲା। ତା'ର ଲକ୍ଷ୍ୟ ସ୍ୱାମୀ ସିନା ବୁଝିପାରିଲା ନାହିଁ, କିନ୍ତୁ ତାହା ଠିକଣା ଜାଗାରେ ହିଁ ବାଜିଲା। ତେଣୁ ରତ୍ନା ମନକୁ ମନ ଖୁସି ହେଲା। ଶାଶୁର ମୁକାବିଲା କଲାପରି ଯୋଗ୍ୟ ଦୁଷ୍ଟବୁଦ୍ଧି ଭଗବାନ ତାକୁ ଦେଇଛନ୍ତି, ଏହା ଭାବି ସେ ଗର୍ବବୋଧ କଲା। ଗଙ୍ଗୱ୍ୱା ଢ଼େର୍ ଘରେ ଅନେକ ବୋହୂ ଦେଖିଛି, ତେଣୁ ଏଥିରେ ତାକୁ କିଛି ନୂଆ ବୋଧ ହେଲାନାହିଁ। କେବଳ ଦୁଃଖ କଲା ଯେ ରତ୍ନା ମଧ୍ୟ ଆଉ ପାଞ୍ଚ ବହୂଙ୍କ ପରି। ଏ ସମସ୍ୟାକୁ ସେ ନିଜେ ସମାଧାନ କରିବା ଦରକାର। ମୁହଁ ଫିଟାଇ କିଛି ଲାଭ ନାହିଁ।

କାଶୀଘରେ ଶୋଇବାକୁ ଆରମ୍ଭ କରିବା ଦିନରୁ ନୂଆ ଦୁଃଖ ଆରମ୍ଭ ହେଲା। ଭୋର ପାଞ୍ଚଟା ବେଳକୁ ଗଙ୍ଗୱ୍ୱାର ଉଠିବା ଅଭ୍ୟାସ। ଡାକି ଡାକି କବାଟ ଖୋଲିବାକୁ ଅଧଘଣ୍ଟା ଲାଗିଯାଏ। ଏତେ ଜଲଦି ଉଠାଇଦେଲେ କିଟ୍ଟୀ ଗଜର ଗଜର ହୁଏ କବାଟ ବାଡ଼େଇଲେ ସେତିକିବେଳକୁ ଉଠୁଥିବା ପାଖଆଖ ଘରର ସ୍ତ୍ରୀଲୋକମାନେ

ଦେଖନ୍ତି ଓ ହସନ୍ତି। କେବେ ବା ଥଟ୍ଟା କରନ୍ତି। ଏହା ସହିବା ଗଙ୍ଗୱା ପକ୍ଷରେ ଅସହ୍ୟ ହୋଇପଡ଼ିଲା। ସାଦାସିଧା ଲକ୍ଷ୍ମୀବାଈ ସତାବାର କହେ, 'ଗଙ୍ଗୱା, ବୋହୂ ଘରକୁ ଆସିଲେ ଶାଶୁର ଏଇଆ ହୁଏ, ବୁଝିଲୁ ?' ତହିଁରେ ମଧ ଗଙ୍ଗୱାର ଅଭିମାନ ତୁଟିଲା ନାହିଁ। ସତରେ ଯଦି ବୋହୂ ତା'ର କଥାରେ ଥାନ୍ତା ତେବେ ଏ ପରିହାସରେ ସେ ଏଇ ଆଭାବି ଖୁସି ହୁଅନ୍ତା ଯେ ଅସଲ କଥା କିଏ ବା ଜାଣେ। କିନ୍ତୁ ଏବେ ଗଙ୍ଗୱା ଏସବୁ ଶୁଣି ଚିଢ଼େ।

ଶେଷରେ ରାଗି ସବୁକଥା କିଟ୍ଟୀକୁ କହି ଗଙ୍ଗୱା ରୋଷେଇ ଘର କବାଟରେ ବାହାରୁ ତାଲା ଦେଇ ସାଙ୍ଗରେ ଚାବି ନେଇ ଶୋଇବାକୁ ଯିବାକୁ ଲାଗିଲା। କିଛି ଦିନ ଶାନ୍ତିରେ କଟିଲା। ମାତ୍ର ଦିନେ କେଉଁଠି ଚାବି ପଡ଼ିଗଲା। ଖୋଜି ଖୋଜି ଥକିଗଲେ ସୁଦ୍ଧା ମିଳିଲା ନାହିଁ। କାମ ପଡ଼ିରହିଲା। ଶେଷରେ ସେ ମଜବୁତ ତାଲାକୁ ଭାଙ୍ଗିବା ପାଇଁ ଚାରିଘଣ୍ଟା ଲାଗିଲା। ରତ୍ନା ଆଗରେ କିଟ୍ଟୀ ଦିପଦ ଟାଣଟାଣ କଥା ଶୁଣାଇଦେବାରୁ, ମୂଳରୁ ଦୁଃଖୀ ଗଙ୍ଗୱା ଆଖିରୁ ଲୁହ ଝରିପଡ଼ିଲା।

ଭିତରେ ଭିତରେ ବୋହୂ ସହ ଲାଗିଥିବ ମନାନ୍ତର କଳିରେ ପରିଣତ ହୋଇଗଲା। ଯେତେବେଳେ ଠିକ୍ କଥା ପଡ଼େ ରତ୍ନା ଜବାବ ଦେଇ ଦିଏ, ନ ହେଲେ କାନ୍ଦିକାଟି ଘର କୋଣରେ ପଶେ। ଦିପହରେ ବାପଘରକୁ ଯାଏ, ସଂଜରେ ଫେରେ। ଦିନେ ଏକଥା ଗଙ୍ଗୱା କିଟ୍ଟୀକୁ କହିବ ଭାବିଛି, ଦେଖେ ତ ସଞ୍ଜବେଳକୁ କିଟ୍ଟୀ ସ୍ତ୍ରୀ ସହ ଟାଙ୍ଗାରେ ବସି ହସି ହସି ଘରକୁ ଫେରୁଛି। ଏଇପରି ଭାବରେ ରତ୍ନାକୁ ବାପଘରକୁ ଯିବାର ଅଧିକାର ମିଳିଗଲା। ସ୍ୱାମୀର ସହାୟତା ଯୋଗୁଁ ଏଇପରି ପ୍ରତି କଥାରେ ରତ୍ନା ଜିତିବାକୁ ଲାଗିଲା। ପର୍ବପର୍ବାଣି ଦିନରେ ପାଖପଡ଼ୋଶୀଙ୍କୁ ନିମନ୍ତ୍ରଣ କରିବାକୁ ରତ୍ନା ରାଜିହୁଏ ନାହିଁ। ଦିନେ କିଟ୍ଟୀ ଜୋର୍ କରି ତାକୁ ଦେଶାଇଜୀଙ୍କ ଘର ବିଣ୍ଣୁବାଈଙ୍କୁ ପାନ-ହଳଦୀ-ସିନ୍ଦୂର* ଦେବାଲାଗି ଡାକି ଆଣିବାକୁ ପଠାଇଲା। ସେଠାରେ ବିଣ୍ଣୁବାଈ ଲୁଚାଛପା ନକରି ଖୋଲାଖୋଲି କହିଲେ 'ହଁରେ, ତୁ ଶାଶୁ ସାଙ୍ଗରେ ନିଜକୁ ସମାନ କରୁଛୁ ? ଏହା ଭଲ କଥା ନୁହଁ। ସେ ତୋର ଦୁଃଖ ସହିଛି। ତୁ ତାକୁ ମା' ପରି ରଖିବା କଥା'। ଏହା ଶୁଣି ରୋଜଗାରିଆ ସ୍ୱାମୀର ସ୍ତ୍ରୀ ରତ୍ନା ନିଜକୁ ଅପମାନିତ ବୋଧକଲା। ତା'ପରେ ଯେତେବେଳେ ବିଣ୍ଣୁବାଈ ପାନ-ଫୁଲ ପାଇଁ ରତ୍ନାକୁ ଡକାଇଲେ କିଟ୍ଟୀ ଯେତେ କହିଲେ ସୁଦ୍ଧା ରତ୍ନା ତାଙ୍କ ଘରକୁ ଗଲାନାହିଁ। ପାଖ ପଡ଼ୋଶୀ କାହାରି ସହିତ ରତ୍ନା କଥା ହୁଏ ନାହିଁ। କିଟ୍ଟୀ ଯଦି କିଛି କହେ, ତେବେ ସେ ନିଜ ମା' କହିଥିବା କଥା ଦୋହରାଇ ଦିଏ। 'ଏ ଜାଗା ଭଲ ନୁହେଁ, ରୋଜଗାରିଆ ଲୋକ ହୋଇ ଏ ଘରେ ରହୁଥିବାରୁ ସଭିଏଁ ହସୁଛନ୍ତି। ଆମକୁ ଛୋଟ ଭାବୁଛନ୍ତି। ଅନ୍ୟ ଆଡ଼େ ଘର ଦେଖ।'

ଦିନେ ରତ୍ନା ସୀମା ଟପିଗଲା। 'ସ୍ୱାମୀ ସ୍ତ୍ରୀର ମନମେଳ ଦେଖି ଲୋକଙ୍କ ଦେହରେ ନିଆଁ ଲାଗିଯାଉଛି' ବୋଲି କହି ଆଙ୍ଗୁଠି ଫୁଟାଇଲା।

---

* ସଧବାମାନଙ୍କୁ ନିମନ୍ତ୍ରଣ କରି ପାନ-ଗୁଆ-ହଳଦୀ-ସିନ୍ଦୂର ଦେବା ଏକ ସାମାଜିକ ବିଧି।

ସେଦିନ ରାତିରେ ଗଙ୍ଗମ୍ମା ଫଳାହାର କଲା ନାହିଁ। କିଟ୍ଟୀ ସ୍ତ୍ରୀକୁ ବାଡ଼େଇଲା; ରତ୍ନା ରାତିସାରା କାନ୍ଦିବାକୁ ଲାଗିଲା। ସ୍ୱାମୀ ସାନ୍ତ୍ୱନା ଦେବାରୁ କହିଲା, 'ମା' କହିଥିଲେ ମୁଁ ସ୍ୱାମୀକୁ ମନ୍ତ୍ର କରିଛି, ସେଥିପାଇଁ ମୁଁ ଜବାବ ଦେଲି। ଏହା ସତ।' ଏମିତି କଳିମଝିରେ ବିଚାର କରିବା କିଟ୍ଟୀ ପକ୍ଷରେ କଠିନ ହୋଇପଡ଼ିଲା; ଦୁହେଁ ବିରୋଧୀ ପ୍ରବୃତ୍ତିକୁ ନେଇ ଚାଲୁଛନ୍ତି। ଦିହେଁ ନିଜକଥାରୁ ପାଦେ ହଟିବାକୁ ରାଜି ନୁହନ୍ତି। ପୁଅ ଆଗରେ ଫେରାଦ କରି କରି ଗଙ୍ଗମ୍ମାର ତଣ୍ଟି ଶୁଖିଯାଏ। ସବୁ କଥା ଉପରେ ରତ୍ନାର ଦି'ପାଦ ଜବାନ, 'କଥା ହେଉଛି, ମୁଁ ବିଲଗୋଠ୍ ରାଘପ୍ପାର ଝିଅ, ମୋ ଉପରେ ତୁମର ବିଶ୍ୱାସ ଆସିବ କୁଆଡୁ?' ଏତିକି କହି ନିଜର କାନ୍ଦଣା ବଳରେ ଜିଣିଯାଏ। କିଛି ସମାଧାନ କରି ନପାରି କିଟ୍ଟୀ ମୂକ ପାଲଟି ଯାଏ। ଥରେ ସ୍ତ୍ରୀକୁ ମା'ର ଉପକାର ବିଷୟରେ ଏକ ବକ୍ତୃତା ଶୁଣାଇଲା। ଶୁଣି ରତ୍ନା ଉତ୍ତର ଦେଲା, 'ମୋ ବାପା ମା'ଙ୍କର ପୁରୁଣା କଥାକୁ ନେଇ ମୋ ଉପରେ ନିଆଁ ବର୍ଷୁଛନ୍ତି। ନିଜ ମା' ହାତରେ ମୋର ଜୀବନ ନେବା ଲାଗି ମୋତେ ବାହା ହୋଇଛନ୍ତି। ପିଇସୀ ସେଇଆ କରୁନାହାନ୍ତି କାହିଁକି? ତୁମେ ତାଙ୍କରି ପଟିଆହୋଇ ମୋତେ କୂଅ ପୋଖରୀରେ ବୁଡ଼େଇ ମାରିବାକୁ ପଛୋଉତ କାହିଁକି।

ଏ ସବୁ କଳିଗୋଳ ଭିତରେ ଗଙ୍ଗମ୍ମା ଏକ କଠୋର ବ୍ରତ ଧାରଣ କରିଛି। ପ୍ରତିଦିନ ସେଇକଥା ସ୍ମରଣ କରି ନିଜର ମୁଣ୍ଡ ଥଣ୍ଡା ରଖେ। ସେଇ ବ୍ରତର ମହତ୍ତ୍ୱରେ ନିତିଦିନିଆ କଳିଗୋଳ, ମିଛ, ଛଳ-ଚାତୁରୀ, ଦୁଃଖ, ସଙ୍କଟ -ସବୁ କିଛି ତାକୁ ସାଗର ଉପରସ୍ଥ ଲହରୀ ପରି କ୍ଷୁଦ୍ର ମନେହୁଏ। ସେ ବ୍ରତ ହେଲା, 'ଯାହା ହେଉନାଁ କାହିଁକି କିଟ୍ଟୀର ସାଥି ଛାଡ଼ିବ ନାହିଁ। ବୋହୂ ଯେତେ ଦୁଷ୍ଟ ହେଉ ପଛକେ, ଘରୁ କାଢ଼ିଦେବା ପାଇଁ ଯେତେ ଜାଲ ପାତୁ ପଛକେ ଘର ଛାଡ଼ିଯିବ ନାହିଁ। ଘରଛାଡ଼ି ଯଦି କିଟ୍ଟୀଠାରୁ ଅଲଗା ରହିଲା, ତେବେ ଆଉ ରହିଲା କଣ?.....ଥରେ ପିଲାକୁ କୋଳକୁ ନେଲା ପରେ ସେ ଯଦି ଡିଆଁ ଡେଇଁ କରେ ତାକୁ କଣ ମଝିନଈରେ ଭସାଇ ଦେଇ ହୁଏ.....ଆଉ ଏବେ ରାଘପ୍ପାର ପୋଷ୍ୟ ନେବା କଥା ଅଛି। ଏବେ ରାଘପ୍ପା ପୁରୁଣା ଶତ୍ରୁତା ମେଣ୍ଟାଇଦେବାକୁ ଚାହିଁବ। ତା'ର ଯୋଜନାକୁ ସଫଳହେବାର ସୁଯୋଗ ଦେବା ଉଚିତ ହେବ ନାହିଁ। ଯେତେ ଅପମାନ ମିଳୁ, ଯେତେ ଦୁଃଖ ଆସୁ, ଏଇ ଦୁର୍ବଳମନା ପୁଅର ହିତ ମୋରି ଦ୍ୱାରା ହିଁ ହେବ। ତେଣୁ ତା'ର ସାନ୍ନିଧ୍ୟ ଛାଡ଼ିବା ଅନୁଚିତ। ଆଜି ଯଦି ତାକୁ ମୁଁ ଛାଡ଼ି ଦିଏଁ, ତେବେ କାଲି ରାଘପ୍ପା ତାକୁ ହଜମ କରିଦେବ।

# 21. ଦେଶାଇଜୀଙ୍କ ସୁଖଦୁଃଖ

ଦେଶାଇବାବୁଙ୍କର ସବା ବଡ଼ପୁଅ ବି.କମ. ପଢ଼ିବା ପାଇଁ ବମ୍ବେ ଯିବାର ଦି' ବର୍ଷ ବିତିଗଲାଣି। ସବା ସାନପୁଅ ପୁରୁଷୋତ୍ତମ ଏବେବି ସାନପିଲା। ଇଂରାଜୀ ସ୍କୁଲରେ ପଞ୍ଚମ ଶ୍ରେଣୀରେ ପଢ଼େ। ଏ ପୁଅ ତୀକ୍ଷ୍ଣ ବୁଦ୍ଧିସଂପନ୍ନ। ତା'ପାଇଁ ଦେଶାଇବାବୁ ଆଉ ଦି'ବର୍ଷ ଧାରବାଡ଼ରେ ରହିବା ପାଇଁ ମନସ୍ଥ କରିଛନ୍ତି। କିନ୍ତୁ ଗାଁରୁ ଆସିଥିବା ଖବର ପାଇ ଭାବିବାକୁ ଲାଗିଲେ ହୁଏତ ତାଙ୍କୁ ଏ ସିଦ୍ଧାନ୍ତ ବଦଳାଇବାକୁ ପଡ଼ିବ। ଏବେ ସେ ଭାବୁଛନ୍ତି ଯେ ପୁରୁଷୋତ୍ତମକୁ ଅଚ୍ୟୁତ ପାଖକୁ ବମ୍ବେ ପଠାଇ ଦେଇ ସେ ସ୍ୱୟଂ ଗାଁରେ ଯାଇ ଯଦି ରହନ୍ତି ତେବେ କେମିତି ହେବ? ଏମିତି ଚିନ୍ତାରେ ଦିନ ବିତିବାକୁ ଲାଗିଲା। ସହରରେ ରହିବାରେ ଅଭ୍ୟସ୍ତ ହୋଇଯାଇଥିବା ହେତୁ ଏକାବେଳକେ ଛାଡ଼ିଛୁଡ଼ି ଦେଇ ଯିବାଟା ଅସମ୍ଭବ। ....ଗାଁରେ ବସନ୍ତ ବିଷୟରେ ଫଇସଲା କରିବାର ସମୟ ଆସିଛି। ଏବେ ନୂଆ ନୂଆ ଖବର ତା' ବିଷୟରେ ମିଳୁଛି।

ଦଶପନ୍ଦର ଦିନ ଅନ୍ତରରେ ବସନ୍ତ ରାଓ ବିଷୟରେ କିଛି ନାଁ କିଛି ସମ୍ବାଦ ଦେଶାଇଜୀଙ୍କୁ ମିଳୁଛି। ପୁଣି ଏପରି ଅନେକ ଖବର ଅଛି ଯାହା ତାଙ୍କ କାନଯାଏଁ ପହଞ୍ଚୁନାହିଁ, କିନ୍ତୁ ତାକୁ ମଧ୍ୟ ଦେଶାଇଜୀ ବୁଝିପାରୁଛନ୍ତି। ଗାଁରୁ ଖବର ଆଣୁଥିବା ବୁଢ଼ାଚାଷୀଟି ବାପାଙ୍କ ଆଗରେ କହିବା ଯୋଗ୍ୟ କଥାକୁ ବହୁତ ରଖି ଢାଙ୍କି ସଂଯତ ହୋଇ କହେ। ଆପଣାର ମର୍ଯ୍ୟାଦା ଅନୁକୂଳ କଥା ବ୍ୟକ୍ତ କରିବାର ଅବସର ଦେଇ ଦେଶାଇଜୀ ଯାହା କିଛି ଖବର ଶୁଣନ୍ତି, ତାକୁ ନିଜର କଳ୍ପନାଶକ୍ତି ସାହାଯ୍ୟରେ ପୂରାକରି ନିଜେହିଁ ଅର୍ଥ ବାହାର କରିନିଅନ୍ତି। ଚାଷୀଟି କହୁଥିଲା ବସନ୍ତ ଗାଁର ବଦମାସ ଟୋକାଙ୍କୁ ଏକାଠି କରି ତାଙ୍କ ସହ ତାସ୍ ଖେଳି ସମୟ କାଟେ। ବସନ୍ତରାଓର ସାଙ୍ଗଙ୍କର ନାଁ ଶୁଣି ଦେଶାଇଜୀ ଅନୁମାନ କରିନେଲେ ଯେ ତା'ର ପିଇବା ଆଦତ ମଧ୍ୟ ପଡ଼ି ଯିବଣି। ଗାଁରେ ପହଞ୍ଚିବାର ଦିନ କେଇଟା ଭିତରେ ବସନ୍ତ ରାଓ ଗାଁର ଲୋକଙ୍କ ସୁଖଦୁଃଖ ବିଷୟରେ ଗାଁ ଲୋକଙ୍କ ଅପେକ୍ଷା ଅଧିକ ଉତ୍ସାହ ଦେଖାଇବାକୁ ଲାଗିଲା। ସାଧାରଣ ଲୋକଙ୍କର ନିଜର ବଳଦ ଉପରେ ଭାରି ମମତା। ସେମାନଙ୍କ ଦେଖାଦେଖି ବସନ୍ତ ମଧ୍ୟ ବଳଦଗୁଡ଼ିକୁ ଯତ୍ନ କରିବାକୁ ଲାଗିଲା। ସେମାନଙ୍କୁ ପନ୍ଦର ଦିନରେ ଥରେ ଧାରୱାଡ଼ର 'ଲାଇନ ବଜାର'ର ପେଡ଼ା ଖୁଆଏ। ସେ ଖାଦ୍ୟ ତା'ରି ବିଶେଷତ୍ୱ

ଓ ତା'ରି ମସ୍ତିଷ୍କରୁ ଉତ୍ପନ୍ନ। ତା' ସହ କ୍ଷେତବାଡ଼ି ଉପରେ ମଧ୍ୟ ଅଭିମାନ କରିବାକୁ ଲାଗିଲା। ଫସଲ କଟା ସମୟରେ କେବେ କେବେ ବିଲରେ ଶୋଇବାକୁ ଲାଗିଲା। ଥରେ ସକାଳୁ ସକାଳୁ ତା' ଜମି ପାଖ ଜମିବାଲାର ପୁଅ ଜମିରୁ ଚାରିଛଅ କେରା ଜବ ଛିଣ୍ଡାଇପକାଇଲା। ସେଥିପାଇଁ ବସନ୍ତ ତାକୁ ଚୌପାଢ଼ୀ ଉପରକୁ ଧରି ଆଣି ଚାବୁକରେ ପିଟିଲା। ବସନ୍ତ ରାଓର ଉତ୍ସାହର ପରିଣାମ ସ୍ୱରୂପ ଗାଁରେ ଧୀରେ ଧୀରେ ଦ୍ୱେଷ ଓ କଳହ ବଢ଼ିଚାଲିଲା। ଏ ଖବର ଦେଶାଇବାବୁଙ୍କ ଯାଏଁ ଆସିଲା। ମାତ୍ର ଏ ପର୍ଯ୍ୟନ୍ତ ବସନ୍ତ ବିଷୟରେ ଆସୁଥିବା ସଠିକ୍ ଖବର ଶୁଣି ଦେଶାଇଜୀ ଡରିବାକୁ ଲାଗିଲେ। ସବୁକଥା ଯଦି ସତବୋଲି ପ୍ରମାଣିତ ହୋଇଯାଏ ତେବେ ସେ କଣ ତାକୁ ସହିପାରିବେ? ଏଇ ଡରରେ ବସନ୍ତ ଯାହା କରୁଛି କରୁ ବୋଲି ତାକୁ ଛାଡ଼ିଦେଲେ। ତାକୁ ସୁଧାରିବା ଲାଗି ଅଥବା ତା'ର କୃତ କୁକର୍ମର ଦୁଃପରିଣାମକୁ ଭଣା କରିବା ଲାଗି ସେ ଗଲେ ନାହିଁ। ଯେତିକି ସତ୍ୟାସତ୍ୟ ଜାଣିଥିଲେ ତା'ର କିଛି ଅଂଶ ସ୍ତ୍ରୀକୁ କହିଲେ। ସେ ଜାଣିଥିଲେ ଯେ ଯଦି ସତ୍ୟର ଏକ ଦଶମାଂଶ ମଧ ସ୍ତ୍ରୀକୁ କହିବେ ତେବେ ସେ ସହିପାରିବ ନାହିଁ। ତେଣୁ 'ଗାଆଣ ଦଳ ଗଢ଼ିଛି' କହିବା ଜାଗାରେ ବସନ୍ତ ପାଞ୍ଚଜଣକୁ ସାଙ୍ଗ କରିଛି, ଜମିଜମା ଦେଖାଶୁଣା କରିବାକୁ ଯାଇ କାହାକୁ ଚାବୁକ ମାରିଛି, କଥାକୁ ଜମିଜମା ପ୍ରତି ଧ୍ୟାନ ଦେଉଛି ଇତ୍ୟାଦି କହନ୍ତି। ଏସବୁ କଥା ଶୁଣି ଆତ୍ମତୁଷ୍ଟ ବିଣୁବାଇ ପୁଅ ବିଷୟରେ ସୁନ୍ଦର ସ୍ୱପ୍ନ ଦେଖିବାକୁ ଲାଗିଲେ।

ସଂପ୍ରତି ଆସିଥିବା ଖବର ଅତି ଚିନ୍ତାଜନକ। ଘରେ ରଖାହୋଇଥିବା ଧାନବସ୍ତା ଯେ କେବଳ ବିକିବାକୁ ଲାଗିଛି ତାନୁହଁ, ଭଣ୍ଡାର ଉଜାଡ଼ କରିଦେଲାଣି। ଶକୁନିପରି ଦି'ଜଣ ସାଙ୍ଗକୁ ନିଜଘରେ ଭର୍ତ୍ତି କରିଛି। ଗାଁରେ କେତେଜଣ ଭଲ ଲୋକ ଦେଶାଇବାବୁଙ୍କ ଡରରେ ଅଳ୍ପ ଦରରେ ବିକ୍ରି ହେଉଥିଲେ ସୁଦ୍ଧା ଧାନ କିଣିନାହାନ୍ତି। ସେମାନଙ୍କ ଉପରେ ବସନ୍ତ ବିଷ ଉଦ୍‌ଗାରୁଛି। ଏ ଖବର ଦେଶାଇବାବୁଙ୍କ ପର୍ଯ୍ୟନ୍ତ ନଆସି ରହିଲା ନାହିଁ। ସ୍ତ୍ରୀଙ୍କୁ ଏ ସବୁ କିଛି ନକହି, ଧାନ କଟା ଦେଖି ଆସିବି କହି, ଦେଶାଇବାବୁ ଗାଁକୁ ଗଲେ।

ବାହାର ଲୋକଙ୍କୁ ଏଇ ଶୋଚନୀୟ ପରିସ୍ଥିତି କଥା ଜଣାନଥାଏ। କିନ୍ତୁ ବସନ୍ତକୁ ଭଲକରି ଜାଣିଥିବା ଦେଶାଇବାବୁ ସବୁ କିଛି ସହଳ ବୁଝିପାରିଲେ। ଗାଁରେ ଦଳାଦଳି ଆରମ୍ଭ ହୋଇଯାଇଥାଏ। ରାମଗୌଡ଼ ବଡ଼ ଚାଷୀଟିଏ। 'ମୁଲକୀ' ପରୀକ୍ଷରେ ପାଶ୍ କରିଥିବା ତା'ର ବଡ଼ ପୁଅ ଓ ମ୍ୟାଟ୍ରିକ୍ ପରୀକ୍ଷାରେ ପାଶ୍ କରିନଥିବା ବସନ୍ତ ମଧ୍ୟରେ ଶତ୍ରୁତା ଜନ୍ମିଥାଏ। ଦିହେଁ ଦି ଅକ୍ଷର ପଢ଼ିଛନ୍ତି। ଦିହେଁ ଅମୀର, ବଡ଼ ଚାଷୀ, ପ୍ରଥମେ ସ୍ପର୍ଦ୍ଧାରୁ ଯେଉଁ କଥାର ଆରମ୍ଭ ହୋଇଥିଲା, ତାହା କ୍ରମେ ଦ୍ୱେଷରେ ପରିଣତ ହୋଇଗଲା। ରାମ ଗଉଡ଼ର ପୁଅ ତା' ସାଇର ଲୋକଙ୍କୁ ଏକାଠିକରି 'ବୈଲାଟ'* ଖେଳର ଆୟୋଜନ କରିବାରୁ ବସନ୍ତର ଖଳବନ୍ଧୁମାନେ ବସନ୍ତକୁ ଉସୁକାଇଲେ। ଆଚ୍ଛା, ଗୌଡ଼ ଯଦି 'ବୈଲାଟ' କରୁଛି ତେବେ ମୋର ନାଟକ କରି ଦେଖାଇବା

* ମହୀଶୂରରେ ପ୍ରଚଳିତ ଏକପ୍ରକାର ଯଶଗାନ ପ୍ରଥା।

ଦରକାର। ଏହା ଭାବି ସେ ପାଖ ଗାଁର ଗୀତଓସ୍ତାଦକୁ ଡାକି ନିଜଘରେ ଆୟୋଜନ ଆରମ୍ଭ କଲା। ଭଗବତ ଅପଣ୍ଣା ଭଙ୍ଗ ସାରାରାତି ନାଟକରେ ଭାଗ ନେଉଥିବା ଲୋକଙ୍କୁ ଗୀତ ଶିଖାଏ। ଘରେ ରାତିଦିନ ଧିନ୍ ତା ଥୈ ଲାଗି ରହିଲା। ରାତିର ନିଦ ପିତା ହୋଇଗଲା; ଦ୍ୱେଷରୁ ଉତ୍ପନ୍ନ ଏଇ ସଉକ ନାନା ଭାବରେ ବଢ଼ିବାକୁ ଲାଗିଲା।

ଦେଶାଇଜୀ ଗାଁରେ ପହଞ୍ଚିବାରୁ ଘରର ଉପଦ୍ରବ ଥମିଗଲା, ତା' ସହିତ ବସନ୍ତ ମଧ୍ୟ ସଙ୍କୁଚିତ ହୋଇପଡ଼ିଲା। ଘରେ ରହିଲେ ସୁଦ୍ଧା ବାପାଙ୍କ ହାବୁଡ଼ରେ ନ ପଡ଼ିବାକୁ ଚେଷ୍ଟା କରୁଥାଏ। ଦେଶାଇଜୀ ବାରିପଟେ ଗଲେ ବସନ୍ତ ଦାଣ୍ଡକୁ ଓ ଦେଶାଇଜୀ ଦାଣ୍ଡକୁ ଆସିଲେ ବସନ୍ତ ବାରିପଟକୁ ପଳାଇ ବୁଲେ। ଏଇପରି 'ଯା ନିଶା ସର୍ବ ଭୂତାନାଂ' କଥାଟିକୁ ଚରିତାର୍ଥ କରୁଥାଏ। ଭୟରେ ସବୁ ନାଟୁଆ ସାଙ୍ଗ ଘରୁ ପଳାଇବାରୁ ଦେଶାଇଜୀ ବୁଝିଲେ ଯେ ଏ ଖେଳ ଏଇଠି ଇତି ହୋଇଯିବ। ମାତ୍ର ଦିନେ ଦି'ଦିନ ଭିତରେ ଜଣାପଡ଼ିଲା ଯେ ଗଳି ମୁଣ୍ଡରେ ଥିବା 'ଭୂତ କୋଠି' ନାମରେ ପ୍ରସିଦ୍ଧ ଘରେ କାମଦାମ ଛାଡ଼ି ଆଖଡ଼ା ଚାଲିଛି। ଯେତେଥର ଦେଶାଇଜୀ ବସନ୍ତକୁ ଡ଼କାଇ ପଠାନ୍ତି ସେତେଥର ସେ ନ ଆସି ଖସିଯାଏ। ଡାକିବାକୁ ଯାଇଥିବା ଚାକରକୁ ଦମ୍ଭ ଦେଖାଇ କହେ, ଯାଇ କହି ଦେ, ଆସିଲା ନାହିଁ, ମାତ୍ର ଚାକର କେବେ ଦେଶାଈବାବୁଙ୍କ ଡରରେ, କେବେବା ନିଜର ବୁଦ୍ଧିରୁ ଆସି ଦେଶାଇଜୀଙ୍କୁ କହେ 'ଏଇ ଆସୁଛି କହି ବାବୁ ବାହାରି ଗଲେ।, ଅଥବା କେବେ କେବେ କହେ 'ବାବୁ କହିଲେ କହିଦେ ମୋତେ ପାଇଲୁ ନାହିଁ' କିମ୍ବା 'ଯେମିତି ମୁଁ କହିଛି ଯେ ବାପା ଡାକୁଛନ୍ତି, ସେମିତି ବାଡ଼ିପଟ ଦେଇ କୁଆଡ଼େ ବାହାରିଗଲେ'ଇତ୍ୟାଦି ଇତ୍ୟାଦି। ଦେଶାଇବାବୁ ଚାହିଁଲେ ବସନ୍ତକୁ ଧରି ଆଣିପାରନ୍ତି, କିନ୍ତୁ ବସନ୍ତ ଦିନେ ବାହାଦୁର ଦେଶାଇ ହେବ, ତେଣୁ ଏତେ କଠୋର ପଦକ୍ଷେପ ନେବା ସମ୍ଭବ ହେଲାନାହିଁ।

ଏବେ ସେ ଅଲଗା ଉପାୟ ଚିନ୍ତା କରି ବସନ୍ତ ସହ ଲୁଚକାଳି ଖେଳିବା ବନ୍ଦ କରିଦେଲେ। ଭଗବତ ଅପଣ୍ଣା ଭଙ୍ଗକୁ ଡ଼ାକି ତା' ହାତରେ ପନ୍ଦର ଟଙ୍କା ଦେଇ ତାକୁ ଗାଁ ଛାଡ଼ି ଚାଲିଯିବାକୁ ଆଦେଶ ଦେଲେ। ଅପଣ୍ଣା ଭଙ୍ଗ ପଳାଇଯିବା ଖବର ଶୁଣି ରାମଣ୍ଣା ଗୌଡ଼ ଘରେ ଭୋଜି ହେଲା। ବସନ୍ତ ଅପମାନିତ ଓ ଦୁଃଖିତ ହେଲା। ତେଣୁ ସେ ବାପାଙ୍କ ସହ ଦେଖା କରିବାକୁ ଆସିଲା, ରାଗିଉଠି ଦେଶାଇବାବୁ ତାକୁ ବୁଝାଇ କହିଲେ ସେ ଯେପରି ତାଙ୍କୁ ନକହି ଆଉ କେବେ ଧାନ ବିକ୍ରି ନକରେ। ଅପଣ୍ଣା ଭଙ୍ଗକୁ ଡାକିବା ପାଇଁ ଅନୁମତି ଦେଲେ। ଧାନ ବିକ୍ରି ପଇସାରୁ ଏବେବି କିଛି ପଇସା ବସନ୍ତ ପାଖରେ ଥାଏ। ସେ ପଇସା ତାକୁ ପାଖରେ ରଖିବାକୁ ଦେଲେ। ନିଜର ରୟତମାନଙ୍କୁ ଡାକି ବସନ୍ତ ଉପରେ ସେମାନଙ୍କୁ ନିଘା ରଖିବାକୁ କହି ସେମାନଙ୍କଠାରୁ ଯାହା ସ୍ୱତ୍ୱ ପାଇବାର ଥିଲା ଅସୁଲ କରି ପନ୍ଦର ଦିନପରେ ଧାରୱାଡ଼ ଫେରିଲେ। ଧାରୱାଡ଼ରେ ତାଙ୍କପାଇଁ ଚିଠିଟିଏ ଅପେକ୍ଷା କରୁଥିଲା।

ବୁଧବାର, ତା ୨୩.......

ଶ୍ରୀ

ବମ୍ବେ।

'କ୍ଷେମ'

ତୀର୍ଥ ରୂପ ଚରଣାରବିନ୍ଦରେ ଚି. ଅଚ୍ୟୁତର ସାଷ୍ଟାଙ୍ଗ ପ୍ରଣାମ। ମୋର ସବୁ କୁଶଳ। ଏବେ ମୁଁ କମର୍ସ କଲେଜ ଛାଡ଼ିଦେଇଛି। ଅନ୍ୟ ପଢ଼ା ଆରମ୍ଭ କରିଛି। ମୋର ମନେହେଉଛି କଲେଜପାଠରେ କିଛି ଲାଭ ନାହିଁ, ତେଣୁ ଛାଡ଼ିଦେଲି। ଆପଣଙ୍କୁ ଏ ଯାଏଁ ଏହାର ସୂଚନା ଦେଇନାହିଁ, ତେଣୁ କ୍ଷମା କରିବେ। ଅନ୍ୟ କାମ ଶିଖୁଛି। ନୂଆକାମ ମୂଳରୁ ଆରମ୍ଭ କରୁଥିବାରୁ ପଇସାର ଅଭାବ ପଡୁଛି, ଏଣୁ କୃପାକରି ତଳଲିଖିତ ଠିକଣାରେ ଶହେ ଟଙ୍କା ପଠାଇବେ। ବିଳମ୍ବ କରିବେ ନାହିଁ, ଅନ୍ୟାନ୍ୟ ସମସ୍ତ କୁଶଳ, ମାତୃଦେବୀଙ୍କ ଚରଣରେ ମୋର ସାଷ୍ଟାଙ୍ଗ ପ୍ରଣାମ। ତାଙ୍କର ତଥା ଚିରଂଜୀବୀ ଭାଇମାନଙ୍କର କୁଶଳ ସମାଚାର ଜଣାଇବେ। ଇତି।

ଅଚ୍ୟୁତ

ଠିକଣା:-

ଦେଶାଇବାବୁ ଏ ଚିଠିର ଉଦ୍ଦେଶ୍ୟ ବୁଝି ପାରିଲେ ନାହିଁ। ଅଚ୍ୟୁତ କଲେଜ ଛାଡ଼ିଲା କାହିଁକି? ଆର୍ଟସ୍ ପଢ଼ି ଲାଭ ନାହିଁ କହି କମର୍ସ ପଢ଼ିବାକୁ ଗଲା। ଏବେ କଲେଜ ପଢ଼ାରେ ପୁଣି ଲାଭ ନାହିଁ କାହିଁକି? ନୂଆକାମ କଣ ହୋଇପାରେ? ଏ ନୂଆ ଠିକଣା ବା କଣ? ଅଟା କଳଚେ ତା'ର କ'ଣ କାମ? କିଛି ମୂର୍ଖାମୀ କରି ବସିନାହିଁ ତ? ବମ୍ବେରେ ଅନେକର ରକମର ଖବର କାଗଜର ବାହାରୁଛି। ଭାବିଲେ ଯାହା ହେଉ ପଛକେ ସେ ନିଜେ ଯିବେ। ଡାକରେ ଟଙ୍କା ପଠାଇ ଦେଇ ତିନିଦିନ ପରେ ଅଚ୍ୟୁତ ପାଖକୁ ଯାଉଛନ୍ତି ବୋଲି କହି ବମ୍ବେ ବାହାରିଗଲେ।

ବୋରୀ ବନ୍ଦରରେ ଓହ୍ଲାଇଲାମାତ୍ରେ ଲାଲବାଗ ଯିବା ଚିନ୍ତା ଛାଡ଼ି ପ୍ରଥମେ କମର୍ସ କଲେଜ ହଷ୍ଟେଲ ଯିବେ ସ୍ଥିର କରି 'ଭିକ୍ଟୋରିଆ'* ନେଲେ। ସେଠାରେ ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟଙ୍କ ସହ ସାକ୍ଷାତ କଲେ। ସାକ୍ଷାତ ହେବା ମାତ୍ରେ ଅଚ୍ୟୁତର ଅବିବେକୀତା'ର ଖବର ମିଳିଲା।

ଲବଣ ସତ୍ୟାଗ୍ରହ।

ଅଚ୍ୟୁତ ଦୁଇଜଣ ବନ୍ଧୁଙ୍କୁ ନେଇ କଲେଜ ଆଗରେ ଥରେ ପିକେଟିଂ କରିବା ପରେ କଲେଜର କର୍ମକର୍ତ୍ତାମାନେ ତାକୁ ଚେତାବନୀ ଦେଇଥିଲେ। ଦ୍ୱିତୀୟ ଦିନ ସେ ଆସି ସୁପରିନ୍‌ଟେଣ୍ଡେଣ୍ଟଙ୍କୁ କହିଲା ଯେ ସେ ଗାଁକୁ ଯିବାକୁ ଚାହୁଁଛି। ଏହା ଶୁଣି ତାଙ୍କର ସନ୍ଦେହ ହେବାରୁ ସେ ପଚରା ଉଚୁରା କଲେ। ତାଙ୍କୁ ଉପଦେଶ ଦେବାର ସୁଯୋଗ ନ ଦେଇ 'ମୁଁ ଘରକୁ ଯାଉଛି, ଅନ୍ୟ କୁଆଡ଼େ ନୁହଁ' କହି ହଷ୍ଟେଲ ଛାଡ଼ି ଚାଲିଗଲା ଓ ପ୍ରତ୍ୟକ୍ଷ ରୂପରେ ସତ୍ୟାଗ୍ରହରେ ଭାଗନେଲା। ତା'ର ବନ୍ଧୁ ଦିଜଣ ତିନିଦିନ ଜେଲରେ ରହିବାପରେ କ୍ଷମା ମାଗିବାରୁ ତାଙ୍କୁ ଖଲାସ

---

* ବମ୍ବେରେ ଘୋଡ଼ାଗାଡ଼ିକୁ 'ଭିକ୍ଟୋରିଆ' କୁହାଯାଏ।

କରିଦିଆଗଲା । କଲେଜରେ ପୁଣି ଯୋଗ ଦେବାପାଇଁ ଅନୁମତି ପାଇଲେ । ଅଚ୍ୟୁତ ହଷ୍ଟେଲରୁ ବିଛଣାପତ୍ର ନେଇ ବାହାରିଯିବାର ପନ୍ଦର ଦିନ ହେଲାଣି । ଅଚ୍ୟୁତର ଦୁଇବନ୍ଧୁଙ୍କୁ ଡକାଇ ଦେଶାଇବାବୁ ସବୁ ଖବର ବୁଝିନେଲେ । କଥା ହେଉଛି ଏଇଆ – ଜେଲରେ ସେମାନେ ବହୁତ କୁହାବୋଲା କଲେ ସୁଦ୍ଧା ଅଚ୍ୟୁତ କ୍ଷମା ମାଗିଲା ନାହିଁ । ଜିଦ୍ ଧରି ବସିଲା । ଏବେ ସେ କେଉଁଠି ଅଛି, ତାହା ସେମାନେ ମଧ୍ୟ ଜାଣନ୍ତି ନାହିଁ । ଦେଶାଇଜୀ ଏହା ମଧ୍ୟ ଜାଣିପାରିଲେ ଯେ ତାଙ୍କୁ ଚିଠି ନଲେଖିବାପାଇଁ ସେ ବନ୍ଧୁମାନଙ୍କୁ କଡ଼ା ନିର୍ଦ୍ଦେଶ ଦେଇଛି ।

ତାଙ୍କୁ କାହିଁକି ଚିଠି ଲେଖାଯାଇ ନାହିଁ, ଏକଥା ଦେଶାଇଜୀ ଅତି ବିନୀତ ଭବରେ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ପ୍ରଶ୍ନ କଲେ । ସେ କହିଲେ, 'ଲେଖିଥିଲି ନା' କଣ; ମୁଁ ଡ୍ରାଫ୍ଟ କରିଥିଲି, ତା' ଉପରେ ପ୍ରିନ୍ସପାଲ ସଇ କଲେ । ତା'ପରେ ସେ ବାହାରକୁ ପଠାଯାଉଥିବା ଚିଠି ରେଜିଷ୍ଟ୍ରାର ଦେଖି ଜାଣିପାରିଲେ ଯେ ସରକାରଙ୍କ ରିପୋର୍ଟ ଆସିବାମାତ୍ରେ ଚିଠି ଲେଖାହୋଇଛି । ଚିଠି ମିଳିଲା ନାହିଁ କାହିଁକି ? କୌତୂହଳୀ ଦେଶାଇବାବୁ ନିଜେ ରେଜିଷ୍ଟ୍ରାର ଦେଖି ଜାଣିଲେ ଯେ ତହିଁରେ ତାଙ୍କର ନାଁ ଠିକ୍ ଅଛି, ମାତ୍ର ଗ୍ରାମନାମ ''ଧାରୱାଡ଼'' ସ୍ଥାନରେ ''ଧାରୀୱାଲ'' ଲେଖାହୋଇଛି । ସେ ବୁଝିଲେ ଏ ଚିଠି ''ଧାରିୱାଲ'' ନାଁରେ ଘୂରି ଘୂରି ଡେଡ଼ଲେଟର ଅଫିସରେ ପହଞ୍ଚିଯିବଣି ।

କାହାରିକୁ ଦୋଷ ଦେବାପରି ମାନସିକ ଅବସ୍ଥା ଏବେ ଦେଶାଇବାବୁଙ୍କର ନଥିଲା । ସେ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ପଚାରିଲେ, ଯେ ଏବେ ଯଦି କ୍ଷମା ମଗାଯାଏ ତେବେ କଲେଜରେ ପ୍ରବେଶାଧିକାର ମିଳିପାରିବ କି? ଜବାବ ଦେବାକୁ ସୁପରିନ୍‌ଟେଣ୍ଡେଣ୍ଟଙ୍କର ସାହସ ହେଲାନାହିଁ । ସରକାରୀ ରିପୋର୍ଟ ନିଃସନ୍ଦେହରେ ଅଚ୍ୟୁତ ବିରୁଦ୍ଧରେ ଯାଉଛି । ଅଚ୍ୟୁତ ଭଲ ଛାତ୍ର, ଏ ବିଷୟରେ ଉଭୟ ପ୍ରିନ୍ସପାଲ ଓ ସୁପରିନ୍‌ଟେଣ୍ଡେଣ୍ଟ ଗର୍ବିତ । ଟିକିଏ ରହନ୍ତୁ କହି ସୁପରିନ୍‌ଟେଣ୍ଡେଣ୍ଟ ଫୋନ୍‌ରେ ପ୍ରିନ୍ସପାଲଙ୍କ ସହ କଥାବାର୍ତ୍ତା ହେଲେ ଏବଂ କହିଲେ, ତା'ର ହାଜିରା ବହୁତ କମ୍ ହୋଇଯାଇଛି । ଛାତ୍ରମାନେ କ୍ଷମା ମାଗି ସାରିଲା ପରେ ପୁଣି ଆନ୍ଦୋଳନରେ ଯୋଗ ଦେଲେ । ତା' ପରଠୁ ଏସବୁ କଥାରେ ସରକାର ବଡ଼ କଡ଼ାକଡ଼ି କରିଦେଇଛନ୍ତି । ଅଚ୍ୟୁତ ସମ୍ପର୍କରେ ଆମର ବହୁତ ଭଲ ଧାରଣା । ତେଣୁ ବିଶେଷ ସୁପାରିଶ କରି ତାକୁ ପ୍ରବେଶାଧିକାର ଦିଆଯାଇପାରେ, ମାତ୍ର ଆନ୍ଦୋଳନରେ ସେ ଯେପରି ପୁଣି ଭାଗ ନେବନାହିଁ, ଏକଥା ତାକୁ ଲେଖିଦେବାକୁ ପଡ଼ିବ ।

କଲେଜରେ ଅଚ୍ୟୁତ ସଭିଙ୍କର ପ୍ରିୟ । ଏହା ଜାଣିବା ପରେ ଦେଶାଇଜୀ ଗର୍ବିତ ତଥା ଚିନ୍ତିତ ହେଲେ । ତାଙ୍କର ଭୟହେଲା, ଆଜି ନହେଲେ କାଲି ଯଦି ଅଚ୍ୟୁତର ଜେଲ ଯିବାକଥା ଧାରୱାଡ଼ରେ ରଟିଯାଏ, ତେବେ କଣ ହେବ? ଯେ କ୍ଷମା ମାଗି ନାହିଁ, କାରଣ ସେ ପ୍ରକୃତରେ ବହାଦୁର ଦେଶାଇ – ଏହା ଭାବି ତାଙ୍କର ଛାତି ଫୁଲିଉଠିଲା । ଏଣେ ଅଚ୍ୟୁତ ଜେଲ୍ ଯାଇଥିବା ହେତୁ ତାଙ୍କୁ ଅପମାନ ଓ ଭୟ ବୋଧହେଲା ।

ପରିଶେଷରେ ସୁପରିନ୍‌ଟେଣ୍ଡେଣ୍ଟ କହିଲେ ଯେ ଏପରି ଭଲ ଛାତ୍ରଟିଏର ଜୀବନ ନଷ୍ଟ ହେଉଥିବାର ଦେଖି ସେ ଓ ପ୍ରିନ୍ସିପାଲ ବହୁତ ଦୁଃଖିତ। ଏହା କହି ସେ ଦେଶାଈଜୀଙ୍କୁ ବିଦାୟ ଦେଲେ। ପୁଣି ଏକଥା ମଧ୍ୟ କହିରଖିଲେ ଯେ ଆପଣ କ୍ଷମା ପ୍ରାର୍ଥନା କରି ଶଠି ନେଇଆସନ୍ତୁ, ବାକି ମୁଁ ସମ୍ଭାଳି ନେବି।

କୌଣସି ଉତ୍ତର ନଦେଇ ଦେଶାଈଜୀ ସେଠାରୁ ବାହାରି ଯାଇ ଲାଲବାଗରେ ପହଞ୍ଚିଲେ। ଲାଲବାଗରୁ ଟାଙ୍ଗାନେଇ ଦେବୀଦାସ 'ଫ୍ଲୋଓ୍ୟାର'* ମିଲ୍ କେଉଁଠି ଖୋଜିବାକୁ ଲାଗିଲେ। ଦିନ ଗୋଟାଏ ବାଜିଲାଣି, ଲାଲବାଗରେ ଘର ଖୋଜି ପାଇବା କାଠିକର ପାଠ। ଅଧମାଇଲ ଯାଏଁ ପେଷାକଳ ଓ ଫାକ୍ଟରୀର ଚାରିକୋଣିଆ ହତା ଦିଶୁଥାଏ। ଶେଷ ଅଂଶରେ ଅଙ୍କାବଙ୍କା ଧାଡ଼ିରେ ଘର ଓ ଚାଲିଆର ଗହଳି। ଅବଶେଷରେ ଡାକବାଲାର ସହାୟତାରେ ଦେବୀଦାସ 'ଫ୍ଲୋଓ୍ୟାର' ମିଲ୍‌ର ଠିକଣା ମିଳିଲା।

ପଲାଘରଟିଏ। ଟିଣର ଛାତ। ବଡ଼ ବଡ଼ ଗୁଜରାଟୀ ଅକ୍ଷରରେ ବାହାରେ ଲେଖା 'ଦେବୀଦାସ ଫ୍ଲୋୱାର ମିଲ୍'। ପାଖରେ ତୁଳା ବେପାର ହେଉଥିବାରୁ ଟିଣ କାନ୍ଥରେ ତୁଳାର ରୁଅ ଜମିଯାଇ ଥାଏ। ସବୁ କିଛି ପୁରୁଣା ଓ ମଇଳା। ଭିତରେ କେହି ଗ୍ରାହକ ନାହିଁ, ଏକ ବେଖାପ ଲୋକ ବସି ମାଛି ହୁରୁଡ଼ାଉଥାଏ। ତିନିକୋଣିଆ ମୁଣ୍ଡ, ଶୁଆ ଥଣ୍ଟ ପରି ନାକ, ସିନ୍ଦୂର ପରି ଲାଲ ବଡ଼ ବଡ଼ ଆଖି। କପାଳରେ ବଡ଼ ବଡ଼ ଶିରା ସ୍ପଷ୍ଟ ଦିଶୁଛି। ଏମିତି ସବୁ ମିଶାଇ ଲୋକଟି ବଡ଼ ଅଦ୍ଭୁତ ମନେ ହେଉଥାଏ। ଦେଶାଈବାବୁଙ୍କର ମନେହେଲା, ତାକୁ ଯେପରି କେଉଁଠି ଦେଖିଛନ୍ତି। ପୂର୍ବାଞ୍ଚଳର ଗାଉଁଲୀ ଲୋକ ପରି ହାତକଟା ଫତେଇ ଓ ଆଣ୍ଠୁ ଲୁଚା ଧୋତି ପିନ୍ଧିଥାଏ। ହେଲେ ତା'ର ଲୁଗାରେ କେଉଁଠି ଟିକିଏ ମଇଳା ଲାଗିନଥାଏ। ବମ୍ବେର ଏପରି ମଇଳା ଜାଗାରେ ଅଟାକଳ ଭିତରେ ତା'ର ଏପରି ସଫାସୁତୁରା ଲୁଗାପଟା ଦେଖି ଦେଶାଈଜୀ ଆଶ୍ଚର୍ଯ୍ୟ ହୋଇଗଲେ। ତାର ସବୁ ବୈଚିତ୍ର୍ୟ ମଧ୍ୟରେ ଏକଥା ମଧ୍ୟ ଲକ୍ଷ୍ୟ କଲେ। ସେ ପୂରା ମଫସଲିଆପରି ଦିଶୁ ନଥାଏ। ଦେଶାଈଜୀଙ୍କୁ ଦେଖି ସେ ମଧ୍ୟ ଆଶ୍ଚର୍ଯ୍ୟ ହେଲା। ତାଙ୍କ ଆଡ଼କୁ ଚାହିଁ ରୁକ୍ଷ ସ୍ୱରରେ ପଚାରିଲା, 'କଣ ଦରକାର ?'

'ବାହାଦୁର ଦେଶାଈ ନାଁରେ ଏଠାରେ କେହି ରହେ ?'

'ଆପଣ କିଏ ? ତା' ଘର ଲୋକ ?' କନ୍ନଡ଼ରେ ତା' ମୁହଁରୁ କଥା ଶୁଣି ଦେଶାଈବାବୁ ଅପ୍ରତିଭ ହୋଇପଡ଼ିଲେ। ଲୋକଟିର ବଡ଼ ପାଟିରେ କଥା କହିବା ଅଭ୍ୟାସ।

'ହଁ ସେ ଅଛି ?'

'ଏବେ ବାହାରିଯାଇଛି।...ଏଇତ ଗଲା...ଏଯାଏଁ ଏଇଠି ଥିଲା। ଏବେ ଏ ପଟାଟା ମରାମତି କରୁଥିଲା, କରିସାରି ଗଲା।'

'କୁଆଡ଼େ ଗଲା?'

---

* ଫ୍ଲୱାର ମିଲ୍ (Flour Mill) ଅଟାକଳ।

'ପ୍ରେସ୍‌କୁ। ନଅରୁ ବାରଯାଏଁ ଆମର ଏଠି କାମକରେ। ବାରରୁ ଦିଟାଯାଏ' ପ୍ରେସ୍‌ରେ।'

'କେଉଁ ପ୍ରେସ୍‌ରେ?'

'ସେ ସବୁ ମୁଁ ଜାଣେ ନାହିଁ।'

ରଗାଇବା ଠିକହେବ ନାହିଁ ଭାବି ଦେଶାଇଜୀ ତାକୁ ଖୁସି କରିବା ପାଇଁ କହିଲେ, 'ଆପଣଙ୍କ ନାଁ କଣ ? କେଉଁଠି ରହନ୍ତି ?'

'ସେ ସବୁ ମୁଁ ଜାଣେ ନାହିଁ।' ମନେହେଲା ଲୋକଟି ଯେପରି ରାଗିଗଲା।

'ତା ସହିତ କେତେବେଳେ ଦେଖା ହୋଇପାରିବ?'

'ସଞ୍ଜ ସାତଟା ବେଳକୁ ଆସନ୍ତୁ। ସାତଟାକୁ; ନାଇଁ ନାଇଁ, ସାଢ଼େ ସାତଟା ବେଳକୁ ଆସନ୍ତୁ। ସାଢ଼େ ସାତଟା; ସେତେବେଳକୁ ସେ ଆସିଯାଇଥିବ। ଆମରି ଘରେ ଶୁଏ।'

ଯାହେଉ ପୁଅର ଏତକ ଖବର ମିଳିଲା। ସଞ୍ଜକୁ ଆସିବେ ମନସ୍ଥ କରି ଦେଶାଇଜୀ 'ଆଚ୍ଛା, ମୁଁ ଏବେ ଯାଉଛି' କହି ଯିବାକୁ ବସିଲେ। ମାତ୍ର ସେତିକିରେ ତାଙ୍କୁ ସେ ଲୋକ ଛାଡ଼ିଲା ନାହିଁ।

'ସଞ୍ଜକୁ ଆସନ୍ତୁ। ଆସି ଦେଖା କରିଯିବେ। କେବଳ ତା'ରିପାଇଁ ଏଠାରେ ଶୋଇବାକୁ ଜାଗା ହେବ, ଆଉ କାହାପାଇଁ ହେବ ନାହିଁ। ଆପଣଙ୍କର ଶୋଇବାର ବ୍ୟବସ୍ଥା ଆପଣଙ୍କୁ କରିବାକୁ ପଡ଼ିବ। ଜାଗା ଖୋଜିବାକୁ ପଡ଼ିବ। ଆଉ....।'

ତା'ର କଥା କେଇପଦ ଶୁଣି ଦେଶାଇଜୀଙ୍କୁ ହସ ଲାଗିଲା।

ସେ ସେଠାରୁ ବାହାରିଗଲେ। ସଞ୍ଜରେ ଦେଖାହେବ। ତାଙ୍କର ଭୟ ନାହିଁ ଯେ ଅଚ୍ୟୁତ ବସନ୍ତ ପରି ଲୁଚିଛପି ବୁଲିବ। ଚିନ୍ତିତ ଥିବାରୁ ଏଯାଏଁ ଖାଇବା କଥାପ୍ରତି ସେ ଧ୍ୟାନ ଦେଇନଥିଲେ। ଏବେ ମନେହେଲା ବଡ଼ ଭୋକ ଲାଗୁଛି। ବସ୍‌ରେ ଫୋର୍ଟ ଯାଇ ଯେଉଁ ହୋଟେଲରେ ରହିଥିଲେ ସେଠାରେ ଖିଆପିଆ କଲେ। ଦି'ଘଣ୍ଟା ଭଲକରି ଶୋଇ ସଞ୍ଜରେ ପୁଣି ଲାଲବାଗ୍‌ରେ ପହଞ୍ଚି ସାତଟାବେଳକୁ ଦେବୀଦାସ ଫ୍ଲାଓ୍ବାର ମିଲ୍‌କୁ ଗଲେ। ତା' ଆଗରେ ଇରାନୀ ହୋଟେଲଟିଏ। ସେଠାରେ ପହଞ୍ଚି ଚା ମଗାଇଲେ। ଢୋକଟିଏ ସୁଦ୍ଧା ନପିଇ ଦୁଆର ଉପରେ ନଜର ରଖି ଚଉକିକୁ ଆଉଜି ବସିରହିଲେ।

ପ୍ରାୟ ସାଢ଼େସାତଟା ବେଳକୁ ଖଦଡ଼ର ପାଇଜାମା, ଶାର୍ଟ ଓ ଟୋପି ପିନ୍ଧି ଛିଣ୍ଡାଚପଲକୁ ଘୋଷାଡ଼ି ଘୋଷାଡ଼ି ଅଚ୍ୟୁତ ସହଜ ଗତିରେ ଅଟାକଳ ଦୋକାନରେ ପଶିଲା। ଦେଖିଲାମାତ୍ରେ ଦେଶାଇଜୀଙ୍କର ମନେହେଲା ସେ ଢେର ବଦଳିଯାଇଛି। ବାପାର ଦୃଷ୍ଟିନେଇ ସେ ଢିଲାପୋଷାକ ମଧ୍ୟରେ ସୁଦ୍ଧା ପୁଅର ଧଡ଼ିଆ ଦେହକୁ ଅନୁଭବ କରିପାରିଲେ। ଲୁଗା ହେତୁ ଚେହେରା ଟିକିଏ ପୂରିଲା ଦିଶୁଛି; କିନ୍ତୁ ପ୍ରକୃତକଥା ସେ ଏକ ନଜରରେ ବୁଝିପାରିଲେ। ତା'ରି ପଛେ ପଛେ ସେ ପଶିଆସିଲେ। ଶୁଣିଲେ ଅଚ୍ୟୁତ କହୁଛି, 'କଣ, ପଟା ଠିକ୍ କାମ କରୁଛି ?'

'ତୁ...ତୁ....ତୁ....ତୁମ ବାପା ଆସିଛନ୍ତି।'

'କିଏ ?'

ଦେଶାଈଜୀ ପଛରୁ ତା'ର କାନ୍ଧ ଆପୁଡ଼ାଇଦେଲେ।

ଅଗଣାରେ ବାଲି ଉପରେ ବସି ବାପପୁଅ ଢେର ବେଳ ଯାଏଁ କଥା ହେଲେ। ଦେଶାଈଜୀ ଅନେକଥର ଭାବିଲେ କ୍ଷମାମାଗିବା କଥା କହିବେ, ମାତ୍ର ମୁହଁ ଖୋଲିଲା ନାହିଁ। ମୂଳରୁ ଚୂଳଯାଏଁ ତାଠାରୁ ସବୁ ଶୁଣିଲେ। ଆପଣାର ବାହାଦୁରି ବଖାଣିବାକୁ ଅଚ୍ୟୁତକୁ ଲାଜଲାଗୁଥାଏ। କ୍ରୋଧପ୍ରକାଶ ନକରି ସବୁ ଶୁଣିବା ପାଇଁ ବାପା ତିଆର। ଦେଶାଭିମାନର ବାତାବରଣ ମଧ୍ୟରେ ସେଇ ସବୁ କଥାଛଡ଼ା ଅଚ୍ୟୁତ ମୁହଁରେ ଆଉ କିଛି କଥା ଯୋଗାଉ ନଥାଏ। ଲଜ୍ୟାକୁଣ୍ଠିତ ହୋଇ ସେ ସବୁକଥା ଶୁଣାଇଲା – ଗାନ୍ଧୀଙ୍କର ଲବଣ ସତ୍ୟାଗ୍ରହ କଥା। ତାଙ୍କର ଦାଣ୍ଡୀ ଯାତ୍ରା। ଏସବୁ ଖବରାଖବର କାଗଜରେ ଛପା ହେବାରୁ ଲୋକଙ୍କ ମଧ୍ୟରେ କ୍ଷୋଭ ଦେଖାଦେଲା। ତାଙ୍କ କଲେଜର ପିଲାଏଁ ବିଶେଷ ଉତ୍ସାହୀ ଥିଲେ। ରାଜନୈତିକ ଆଲୋଚନା ହେଉ ବା ଧର୍ମୀୟ ଉତ୍ସବ ହେଉ ସବୁଥିରେ ଛାତ୍ରମାନେ ଆଗୁଆ। ସବୁ କଲେଜ ପରି କମର୍ସ କଲେଜ ଆଗରେ ମଧ୍ୟ ପିକେଟିଂ ହେଲା। ଦିନେ ପିକେଟିଂ ଭୟଙ୍କର ରୂପ ନେଲା। ତହିଁରେ ଭାଗ ନେଇଥିବା ପିଲାଙ୍କୁ କଠୋର ଚେତାବନୀ ଦିଆଯିବାରୁ ସଂଗଠନ ଭାଙ୍ଗିଗଲା। କମର୍ସ କଲେଜପରି ଛୋଟ କଲେଜରେ ଜଣେ ଆଉ ଜଣକ ବିରୁଦ୍ଧରେ ଅଭିଯୋଗ କରିବା ସ୍ୱାଭାବିକ। କିନ୍ତୁ ଭିତରେ ଭିତରେ ଆନ୍ଦୋଳନ ବଳବତ୍ତର ହେଲା। ନିତି କଲେଜ ବନ୍ଦ କରିବାର ପ୍ରୟାସ ବ୍ୟର୍ଥ ହେବାଟା ଅଚ୍ୟୁତର ମନକୁ ପାଇଲାନାହିଁ। ପୁଣି କଲେଜରୁ ବାହାରି ଯାଇ ଛାତ୍ରମାନଙ୍କର ସିନେମା ଯିବା ବା ନିଜ ଘରେ ଯାଇ ସିବା କଥାକୁ ସେ ଅପ୍ରୀତିକର ମଣୁଥିଲା। ସେଥିପାଇଁ ସେ ବିଦ୍ୟାର୍ଥୀମାନଙ୍କୁ ପ୍ରତ୍ୟକ୍ଷ ଭାବରେ ଲବଣ ସତ୍ୟାଗ୍ରହରେ ଭାଗ ନେବା ପାଇଁ କହି ପ୍ରଚାରଚଳାଇଲା। ଦେଶଭକ୍ତ ବିଦ୍ୟାର୍ଥୀମାନେ ଏକଥର ବିରୋଧ କରି ଯୁକ୍ତିକଲେ ଯେ ସ୍ୱୟଂ ଗାନ୍ଧିଜୀ ଛାତ୍ରମାନଙ୍କୁ ସତ୍ୟାଗ୍ରହରେ ଭାଗ ନ ନେବା ପାଇଁ କହିଛନ୍ତି। ଅଚ୍ୟୁତର ମନେହେଲା ଗାନ୍ଧିଜୀ ସେଇ ଡରୁଆଛାତ୍ରମାନଙ୍କୁ ସତ୍ୟାଗହରେ ଭାଗ ନେବା ଲାଗି ବାରଣ କରିଛନ୍ତି, ଯେଉଁମାନେ କି ପରେ କେବଳ ସମସ୍ୟା ସୃଷ୍ଟି କରିବେ। ମାତ୍ର ସତ୍ୟାଗ୍ରହର ମହତ୍ତ୍ୱକୁ ବୁଝିପାରୁଥିବା ବିବେକୀ ଛାତ୍ରମାନେ ଏଥିରେ ଭାଗନେଇପାରନ୍ତି। କମର୍ସ କଲେଜରେ ସେମିତି ଜଣେ ଦି'ଜଣ ଛାତ୍ର ଥିଲେ; ମାତ୍ର ଅନ୍ୟାନ୍ୟ କଲେଜରେ ଶହ ଶହ ଛାତ୍ର ସତ୍ୟାଗ୍ରହ କରିବା ପାଇଁ ସମୁଦ୍ର ପର୍ଯ୍ୟନ୍ତ ଯାଇଥିବା ରାସ୍ତାରେ ଶୋଭାଯାତ୍ରା କରି ଯାଇ ଲୁଣ ଲୁଟ କଲେ। ତହିଁରୁ କେତେଜଣ କ୍ଷମାପ୍ରାର୍ଥନା କରି ଜେଲ୍‌ରୁ ବାହାରି ଆସିଲେ। କିନ୍ତୁ ଜେଲ୍‌ରେ ରହିବାବାଲା ମଧ୍ୟ ସ୍ୱଚ୍ଛ ନଥିଲେ, ଯେଉଁମାନେ କି ଆଜିକାଲିର ଶିକ୍ଷା ପଦ୍ଧତି ପ୍ରତି ବିରୂପ ହୋଇଉଠିଥିଲେ।

'ଶୁଣ, ଥରେ ଡିଗ୍ରୀ ପାଇ ସାରିଲା ପରେ ଯେତେଇଚ୍ଛା ରାଜନୀତିରେ ଭାଗନେ।

ଏବେ କ'ଣ ଭାବୁଛୁ ପଢ଼ା ଛାଡ଼ିଦେବା ଦରକାର ?'

'କଲେଜରେ ଯୋଗ ଦେବାକୁ ଅନୁମତି ଯଦି ମିଳେ, ତେବେ କୋର୍ସ ପୂରା କରିଦିଅନ୍ତି।'

'ସେମାନେ ଅନୁମତି ଦେବାକୁ ପ୍ରସ୍ତୁତ। ସକାଳୁ ତମ ସୁପରିନ୍‌ଟେଣ୍ଡେଣ୍ଟଙ୍କ ସହିତ ଦେଖାକରିଥିଲି।'

'ତା ହେଲେ ......।'

'କ୍ଷମା ମାଗି ଦରଖାସ୍ତ ଦେବାକୁ ପଡ଼ିବ।'

'କ୍ଷମା କାହିଁକି ମାଗିବି ବାପା ? ବେଶୀ କହିବା ପାଇଁ ଅଚ୍ୟୁତକୁ ଲାଜଲାଗିଲା। ବନ୍ଧୁମାନଙ୍କ ଆଗରେ ବଖାଣୁଥିବା ଦେଶାଭିମାନର ତତ୍ତ୍ୱଜ୍ଞାନ ବାପାଙ୍କ ଆଗରେ କହିବାକୁ ସାହସ ହେଲାନାହିଁ। ଅର୍ଦ୍ଧଶିକ୍ଷିତ–ବୁଦ୍ଧି ପିତାଙ୍କର ଚାରିତ୍ରିକ ବଳିଷ୍ଠତା ଓ ବ୍ୟକ୍ତିତ୍ୱ ଆଗରେ ତା'ର ନିଜର ପାଣ୍ଡିତ୍ୟ ସବୁବେଳେ ଦନ୍ଥଡ଼ା ହୋଇପଡ଼େ। ଧାରଓ୍ଵାଡ଼ରେ ଘରେ ଥିଲାବେଳେ ସେ ବାପାଙ୍କ ସହ ବହୁତ କମ୍ କଥାବାର୍ତ୍ତା କରୁଥିଲା। ମା' ଥିଲା ତା'ର ସାଥୀ। ଅନେକ ଦିନ ପରେ ସାକ୍ଷାତ ହେଉଥିବାରୁ, ଟିକିଏ ବଡ଼ ହୋଇ ଯାଇଥିବାରୁ, ଜେଲ କାଟି ଆସିଥିବାରୁ, ବ୍ୟକ୍ତିତ୍ୱର ବିକାଶ ହୋଇଥିବାରୁ ତଥା ବିଦେଶରେ ଥିବାରୁ ସେ ବାପାଙ୍କ ଆଗରେ ଏତେ ସବୁ କଥା କହିପାରୁଛି। ଏବେ ତା'ର କଥା ଶୁଣି, ତା'ର ନିଶ, ଗାନ୍ଧୀ ଟୋପି ଓ ଉତ୍ସୁକ ମୁହଁ ଦେଖି ଦେଶାଇଜୀ ଅନୁଭବ କଲେ ଯେ ପୁଅ ବଡ଼ ହେଲାଣି। ଏତିକି ବେଳେ ଅଚ୍ୟୁତ ମୁହଁ ବନ୍ଦକଲା। ତା'ର ଅବସ୍ଥା ବୁଝିପାରି ଦେଶାଇବାବୁ କହିଲେ, 'ତୋର ମନ ଯଦି ନମାନୁଛି ତେବେ ଥାଉ।'

କିଛି ସମୟ ପାଇଁ ନୀରବତା ବ୍ୟାପିଗଲା।

'ଯାପରେ କଣ କରିବୁ ଭାବିଛୁ ?'

'ଆଜିକାଲି 'ବମ୍ବେ ଗେଜେଟ' ଖବରକାଗଜରେ କାମ କରୁଛି। ନୂଆ କାଗଜ। ତା'ର ଜଣେ ସବ୍–ଏଡ଼ିଟରଙ୍କ ସହିତ ଜେଲରେ ଜଣାଶୁଣା ହୋଇଥିଲା। ତାଙ୍କରି ପାଖରେ ତିନିଘଣ୍ଟା କାମ କରେ।'

'କାମ କ'ଣ ?'

'ସହସଂପାଦକର କାମ। ସେମାନେ ପଚିଶଟଙ୍କା କରି ଦେଉଛନ୍ତି। ଦି'ଟାରୁ ପାଞ୍ଚଟା ପର୍ଯ୍ୟନ୍ତ କାମ କରେଁ। ପାଖରେ ସେଇ ଖବରକାଗଜର ପ୍ରେସ୍। ସେଠାରେ ପ୍ରେସ୍ ଚଳାଇବା କାମ ଶିଖେଁ।'

'ଆଉ ଏ ଅଟାକଳରେ ?'

'ଏଠି କିଛି କାମ ନାହିଁ। ସେ ଲୋକଟି ସାଙ୍ଗରେ କେବଳ ଚିହ୍ନା ଜଣା ଅଛି। ତା'ରି ଘରେ ରହେଁ। କେବେ କେମିତି କଳ କାମ ମଧ୍ୟ ଦେଖେଁ। ଥରେ ମେସିନର ପାଗଳାମି ବାହାରିଲା ଯଦି.....ବାସ୍...।'

'ଏସବୁ ଶିଖିବା ପାଇଁ ଏବେ କେତେଦିନ ଲାଗିବ ?'

'ଆପଣ କ'ଣ ଭାବୁଛନ୍ତି?....ଏଇଠି ରହି ଖବରକାଗଜରେ କାମ କରି ହୁଅନ୍ତା, କାରଣ କାଗଜଟା କହିବାକୁ ଗଲେ ନିଜର, ଚାକିରୀ ନାଁକୁ ମାତ୍ର। ସେଠାରେ କାମ କରୁଥିବା ଲୋକେ ସମସ୍ତେ ସେମିତି ଭାବନ୍ତି।' ଏତିକି କହି ଅଚ୍ୟୁତ ଚୁପ୍ ହୋଇଗଲା। ଦେଶାଇଜୀ ମଧ୍ୟ ସେଇପରି ଭାବରେ ଜବାବ ଦେଲେ,

'ଠିକ୍ ଅଛି। ତୁ ଯଦି ଏଠି ରହିବୁ ଘର ଜମିଜମା କିଏ ସମ୍ଭାଳିବ? ସେକଥା ମଧ୍ୟ ତୋର ଭାବିବା ଉଚିତ।'

'ତେବେ ମୁଁ କ'ଣ କରିବି?' ଅଚ୍ୟୁତ ନିଜର ମନକଥା ବାପାଙ୍କ ମହଁରୁ ଶୁଣିବାକୁ ଚାହୁଁଥିଲା।

ଟିକିଏ ଭାବି ଦେଶାଇଜୀ କହିଲେ, 'ଏଠାରେ ତୋର ଯାହାକିଛି ଶିଖିବା କଥା, ଶିଖି ଧାରୱାଡ଼ରୁ ଖବରକାଗଜଟିଏ ବାହାର କରିପାରୁ।'

'ମୁଁ ମଧ୍ୟ ସେଇଆ ଭାବି ଛାପାଖାନାରେ କାମ ଶିଖୁଛି।'

'ଛାପାଖାନା କାମରେ କେତେଟଙ୍କା ଦରକାର, କିଛି ଭାବିଛୁ?'

'ନୂଆଟିଏ ପାଇଁ ତ ତିନିହଜାର ସାଢ଼େ ତିନିହଜାର ଟଙ୍କା ଦରକାର। ମାତ୍ର ଛୋଟ ପ୍ରେସ୍‌ଟିଏ ବହି କାମ ପାଇଁ ଆମ ପ୍ରେସ୍‌ରେ ରଖାହୋଇଛି। ଆମ ସଂପାଦକ କହୁଥିଲେ ଯେ ବହି କାମରେ କିଛି ଫାଇଦା ନାହିଁ। ତାକୁ ବିକି ଦେଇ ପାରନ୍ତି। ଫୋରମେନ୍‌କୁ ପଚାରୁଥିଲି...କହିଲା, ଅତିବେଶୀରେ ତା'ର ଦାମ ହଜାରେ ଟଙ୍କା ହୋଇପାରେ।'

'ସେଇଟା ଖରାପ ନୁହଁ ତ?'

'ନାଇଁ, ପୁରୁଣା ହେଲେ ହେଁ ଭଲକାମ କରୁଛି।'

ଦେଶାଇଜୀ ସଙ୍ଗେ ସଙ୍ଗେ ସିଦ୍ଧାନ୍ତ କଲେ, 'ତା ହେଲେ ଏମିତି କର, ବର୍ଷେ ଦିବର୍ଷ ଏକାମ ଶିଖ। ଏବେ ତୋର ବୟସ କମ୍। ଏବେ ତୁ ସ୍ୱତନ୍ତ୍ରଭାବରେ ଖବରକାଗଜ କାଢ଼ି ଚଳାଇ ପାରିବୁ ନାହିଁ। ତାହା ମଧ୍ୟ ଠିକ୍ ହେବ ନାହିଁ। ପାଞ୍ଚଜଣଙ୍କ ସହିତ କାମ କରି ଯେତେବେଳେ ଅଭିଜ୍ଞ ହୋଇଯିବୁ, ସେତେବେଳେ ତୋ ଖବରକାଗଜର ଦାମ୍ ବଢ଼ିବ। ଆଉ ତୋ କାଗଜ ଯେମିତି ସେମିତି ହେଲେ ଚଳିବ ନାହିଁ। ତୋର ବିଚାରଧାରାର ସମ୍ମାନ ମିଳିବା ଉଚିତ। ତୁ କାମ କରୁ କରୁ ସବୁ କିଛି କାଇଦା କଟକଣା ଶିଖିଯିବୁ, ଭାଷାରେ ଓଜନ ଆସିବ ଓ ଅନ୍ୟକଥା ବଳେବଳେ ବୁଝିପାରିବୁ। ତେଣୁ ମୋର ଏତିକି କହିବା କଥା ଯେ ଏସବୁ କାମ ପାଇଁ ତୋର ପଢ଼ା ଯଦି ସରିଯାଇଥାନ୍ତା, ତେବେ ଭଲ ହୋଇଥାନ୍ତା। ଏଠାରେ ଯେତେବେଳେ ତୋର ଏ କାମରେ ପାରଦର୍ଶିତା, ଆସିବ ସେତେବେଳେ ଧାରୱାଡ଼ ଆସିବୁ, ପ୍ରେସ୍ ବିଷୟରେ ସେତେବେଳେ କିଛି କରିବା। ବାରିପଟେ ହିଁ ପ୍ରେସ୍ କରିପାରୁ। ସେଠା କଲେଜରେ ନାଁ ଲେଖାଇ ପାଶ୍ କର, ପରେ ମନ ହେଲେ ଖବରକାଗଜ କାଢ଼ିବୁ।'

ଅଚ୍ୟୁତ ଭାରି ଖୁସିହେଲା, ମାତ୍ର ଏତେ ଦିନ ଅପେକ୍ଷା କରିବାକୁ ପ୍ରସ୍ତୁତ ହେଲା ନାହିଁ। 'ଏଇଠି ଆସନ୍ତା ବର୍ଷଠାରୁ ଆର୍ଟସରେ ନାଁ ଲେଖାଇବି?'

'ଦି'ଟା କାମ ଏକାଠି କରିପାରିବୁ ତ? ଖବରକାଗଜ...ପ୍ରେସ୍... ପାଠପଢ଼ା?'

'ଚଳାଇ ନେବି।'

'ଏଠା ଜଳବାୟୁ ଖରାପ, ବେଶୀ ପରିଶ୍ରମ କରିବା ଠିକ୍ ହେବ ନାହିଁ।'

'ନାଇଁ ଏଇ ପାଞ୍ଚ ଛଅମାସ ଭିତରେ ପ୍ରେସ୍ କାମ ବେଶ୍ ଶିଖିଗଲିଣି। ଆସନ୍ତା ଜୁନ୍‌ରୁ କଲେଜ ଓ ଖବରକାଗଜ ହିଁ ରହିବ।'

ଦେଶାଇଜୀ ଟିକିଏ ସନ୍ଦିହାନ ହୋଇ କହିଲେ, 'ତୁ ଯଦି କରିପାରିବୁ କର। ମାତ୍ର ତୋର ମା' ତୋ କଥା ବହୁତ ଭାବୁଛି; ତୁ ଏଠାରେ ଅଟାକଳ ଓ ପ୍ରେସ୍ କଥା ଭାବୁଛୁ।'

ଜନ୍ମରୁ ଅମୀର ହୋଇଥିଲେ ସୁଦ୍ଧା ଗାନ୍ଧିଜୀଙ୍କ ପ୍ରଭାବରୁ ଦରିଦ୍ରନାରାୟଣର ସେବକ ହୋଇଯାଇଥିବାରୁ ଅଚ୍ୟୁତର ମନରେ କେବେ କେବେ ଭୟାନକଶୂନ୍ୟତା ଦେଖାଦିଏ। ଏଇ ବଳିଷ୍ଠ ଦେହ ଓ ଦୃଢ଼ ମନର କେଉଁ କୋଣରେ ସ୍ତ୍ରୀସୁଲଭ କୋମଳ ମନ ଅଚ୍ୟୁତ ଭିତରେ ଉଙ୍କିମାରେ। ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଭାବରେ ତାହା ପ୍ରକଟିତ ହୁଏ। କେବେକେବେ ଅମୀର ହୋଇ ଜନ୍ମହୋଇଥିବା ହେତୁ ସେ ଲଜ୍ୟାବୋଧ କରେ ଓ ବାପାମା'ଙ୍କଠାରୁ ଦୂରରେ ରହିବା ଫଳରେ ତାହା ବ୍ୟକ୍ତ ହୋଇପଡ଼େ। କେବେକେବେ ନିଜର କାର୍ଯ୍ୟକ୍ରମ ଦେଖି ଭାବେ ଯେପରି ବାପା ମା'ଙ୍କ ଆଗରେ ସେ ନୈତିକତା ଦୃଷ୍ଟିରୁ ତଳେଇ ହୋଇଯାଇଛି। ବମ୍ବେର କଠୋର ସାମୂହିକ ଜୀବନରେ ଗୋଟିଏ କୋଣରେ ପଡ଼ିରହିବା ତା'ପକ୍ଷରେ ସମ୍ଭବ ନଥିଲା। ବମ୍ବେ ମଣିଷର ଅରଣ୍ୟ। ଏଇ ମଣିଷର ଭିଡ଼ ମଧ୍ୟରେ ସୁଦ୍ଧା ଲୋକେ ନିଜକୁ ଏକୁଟିଆ ମନେକରନ୍ତି। ଏକ କଠୋର ଏକାକୀତ୍ୱବୋଧର ମୁହୂର୍ତ୍ତକୁ 'ବମ୍ବେଇ ଜ୍ୱର' କୁହାଯାଏ।

ଏମିତି ମୁହୂର୍ତ୍ତ ଆସିଲେ ଅଚ୍ୟୁତ ଆପଣା କୋଠରୀରେ ଗୋଟିଏ କୋଣରେ ଚାଦରରେ ମୁହଁ ଢାଙ୍କି ଶୋଇରହି ଭିତରେ ଭିତରେ କାନ୍ଦେ। ହଷ୍ଟେଲ ବନ୍ଧୁମାନେ ତା'ର ଚାଦର ଟାଣି 'ଏଇଟା ବଡ଼ ଲୋକୀର ପ୍ରଭାବ' କହି ତାକୁ ଚିଡ଼ାନ୍ତି। ଅଚ୍ୟୁତକୁ କଥାଟି ଠିକ୍ ମନେହୁଏ। ଗରିବର ବାପ କାହିଁ ନାଁ ମା' କାହିଁ। ସେମାନେ ନିଜ ଭିତରେ ରହନ୍ତି, ସବୁବେଳେ ପରିଶ୍ରମ କରନ୍ତି। 'ସେପରି କଠୋରତା ମୋଠାରେ ମଧ୍ୟ ଆସିବା ଦରକାର'— ଏ ତତ୍ତ୍ୱର ସଂଧାନ ସେ ନିଜେ କରିଥିଲା। ଦୈହିକ ଶ୍ରମ ମଧ୍ୟରେ ମାନସିକ ଦୁର୍ବଳତାକୁ ଭୁଲିବାର ପ୍ରୟାସ କରୁଥିଲା। ବାପା ମାଙ୍କର ଦୂରତ୍ୱକୁ ନିଜର ବା ଅନ୍ୟର ପ୍ରଯତ୍ନରେ ଭୁଲିବାର ପ୍ରୟାସ କରୁଥିଲା। ନିଜର ବନ୍ଧୁମାନଙ୍କୁ ସେମାନଙ୍କର ବାପା, ମା', ଭାଇ, ଭଉଣୀ ସଂପର୍କରେ ଚିନ୍ତା ନକରିବା ପାଇଁ ସେ ସବୁବେଳେ କହୁଥିଲା। ଅଥଚ ସେମାନେ ତାକୁ ସେ କଥା କହିଲେ ସେ ସହିପାରୁ ନଥିଲା। ନିଜର ଆନ୍ତରିକ ଦୁଃଖକୁ ଭୁଲିବା ପାଇଁ ସେ ଅଟାକଳ ଓ ପ୍ରେସକୁ ଦୌଡ଼ିବାକୁ ଲାଗିଲା। ଏଇ ଅସ୍ଥିରତା ମଧ୍ୟରେ ତା'ର ପ୍ରେସ୍‌ର ଫୋରମ୍ୟାନ ଓ ଅଟାକଳର ବାଉଳା ଲୋକଟି ସହ ବନ୍ଧୁତା ହୋଇଯାଇଥିଲା। ମାର ସ୍ମୃତି ପୁଣି ତାକୁ ଉତଳା କରିଦେଲା।

ସେ ଶୂନ୍ୟଦୃଷ୍ଟିରେ ସମୁଦ୍ର ଆଡ଼େ ଚାହିଁରହିବାର ଦେଶାଇଜୀ ଦେଖି ପାରିଲେ।

ଅଚ୍ୟୁତର ଏ ଦୁର୍ବଳତା କଥା ତାଙ୍କୁ ମୂଳରୁ ଜଣାଥିଲା । ସେ ଯଦି ଭାରସାମ୍ୟ ହରାଇନଥାନ୍ତେ ତେବେ ମା' କଥା ଅଚ୍ୟୁତ ଆଗରେ ଏମିତି ଭାବରେ କହିନଥାନ୍ତେ । ଅଚ୍ୟୁତ ଯେବେ ବମ୍ବେରେ କମର୍ସ ପଢ଼ିବା କଥା କହିଲା, ସେତେବେଳେ ସେ ଏକା ରହିଲେ ସାହସୀ ହେବ ଭାବି ଦେଶାଇଜୀ ତାକୁ ଯିବା ପାଇଁ ଅନୁମତି ଦେଲେ । କଥା ବଦଳାଇବା ପାଇଁ ସେ ପଚାରିଲେ, 'ଅଟାକଳରେ କାମ କରୁଥିବା ଲୋକଟି କନ୍ନଡ଼ କହୁଛି ।'

'ଆଜ୍ଞା ହଁ, ସେ ଧାରଓ୍ୱାଡ଼ର ଲୋକ । ସେ ଏଠାକୁ ଆସିବାର ବହୁଦିନ ହୋଇଗଲାଣି । ଆଡ଼ପାଗଳା ହେଲେହେଁ ଲୋକ ହିସାବରେ ଭଲ । ଅଟାକଳର ଶେଠର ତାଉପରେ ଭାରି ବିଶ୍ୱାସ । ତା'ରି ରହିବା ପାଇଁ ସେ ବଖରାଏ ଘର ଦେଇଛି ।'

'ତା ସହ ତୋର କେବେ ଚିହ୍ନାପରିଚୟ ହେଲା ?'

'ଥରେ ଗାଡ଼ିରେ କନ୍ନଡ଼ ଉପନ୍ୟାସ ପଢୁଥିଲି । ବହି ଉପରେ ମୋ ନାଁ ସହିତ ଧାରଓ୍ୱାଡ଼ ଲେଖିଥିଲି । ସେ ଆଗରେ ବସିଥିଲା । ମୋତେ ପଚାରିଲା, 'ଆପଣ ଧାରଓ୍ୱାଡ଼ର ?' ମୁଁ ହଁ ଭରିବାରୁ କହିଲା, 'ମୁଁ ମଧ୍ୟ ଧାରଓ୍ୱାଡ଼ର ଲୋକ । ମୋ ପେଷାକଳ ଦେଖିବାକୁ ଆସିବ ।' ପେଷାକଳ ତା'ର ପ୍ରାୟଣଠୁପ୍ରିୟ । ବାହାରେ ଏତେ ମଇଳା ଜମିଛି । କିନ୍ତୁ ସେ ମେସିନରେ ସପ୍ତାହରେ ଥରେ ତେଲ ଦିଏ ଓ ସବୁ ଖୋଲି ସଫାକରେ । ପ୍ରତିପୂର୍ଣ୍ଣମୀରେ ଷୋଡ଼ଶୋପଚାରରେ ଯଂତ୍ର ପୂଜାକରେ । ଯଂତ୍ର ସହିତ ତା'ର ଯେତେ ଭାବ । ଶେଠର ସ୍ତ୍ରୀ ପିତୃପକ୍ଷରେ ତାକୁ ଘରକୁ ଡାକି ଖୁଆଏ । ସୁଖରେ ଅଛି ।'

'ଦୁଃଖ ଅକଲବାଲାଙ୍କର ହୁଏ । ଏମିତି ଲୋକର ବା ଦୁଃଖ ଆସିବ କୁଆଡୁ ?'

ଦେଶାଇଜୀଙ୍କର ଏକଥା କହିବାର ଅଭିପ୍ରାୟ ହେଲା ଯେ ସେମିତି ଲୋକ ଈଶ୍ୱରଙ୍କ ପରି ।

'ଲାଗୁଛି ମୁଁ ଯେମିତି ତାକୁ କେଉଁଠି ଦେଖିଛି । ତା ନାଁ କଣ ?'

ବିନ୍ଦଗୋଠ୍ଠ ଭେଙ୍କଟ ରାୟ ।'

'ବିନ୍ଦଗୋଠ୍ଠ ରାଘପ୍ପାର ସେ କିଛି ହୁଏନାଁ କଣ ?'

'ମୁଁ ସେକଥା ଜାଣେ ନାହିଁ । ଥରେ କହୁଥିଲା ଯେ ତା'ର ଭାଇଟିଏ ଅଛି ।'

ସଂକ୍ଷେପରେ ଦେଶାଇଜୀ ଅଚ୍ୟୁତକୁ ବସନ୍ତର ଉପଦ୍ରବ ବିଷୟରେ କହିଲେ । ସେ ଯେଉଁ ହୋଟେଲରେ ରହିଥିଲେ, ସେଇ ହୋଟେଲକୁ ବାପପୁଅ ଦିହେଁ ଗଲେ । ଖିଆପିଆ ପରେ ଦିଘଣ୍ଟା କାଳ ପୁଣି କଥାବାର୍ତ୍ତା ହେଲେ । ଦେହପା ପ୍ରତି ନଜର ରଖିବା ପାଇଁ ଦେଶାଇଜୀ ପୁଅକୁ ତାଗିଦ୍ କଲେ । ପରଦିନ ଅଚ୍ୟୁତ ବାପାଙ୍କୁ ମାଲବ୍ବାର ହିଲ ଆଦି ସୁନ୍ଦର ସ୍ଥାନ ଦେଖାଇଦେଲା । ଖୁବ୍ ଭଲ ହୋଟେଲରେ ଖିଆପିଆ ହେଲା ପରେ, ସଞ୍ଜରେ ସେ ବାପାଙ୍କୁ ବିଦାୟଦେଲା । ଏ ଦି' ଦିନ ଯେ କେମିତି ବିତିଗଲା ତାହା ସେ ଜାଣି ପାରିଲା ନାହିଁ ।

ଏହା ପରେ ପୁଣି ଅଲଗା ରହିବା, ପୁଣି ଏକାକୀତ୍ୱବୋଧ ।

ଦ୍ୱିତୀୟ ଭାଗ

# 22. ମିଠାକଡ଼ା ଅନୁଭବ

ତାରୁଣ୍ୟ ଓ ପ୍ରୌଢ଼ତା ମଧ୍ୟରେ ବିବାହ ଏକ ଗଡ଼ାଣିଆ ପୋଲ । ବିବାହ ପରେ ଯେଉଁ ଲୋକ ବଦଳେ ନାହିଁ, ତାକୁ ଅପୂର୍ଣ୍ଣ କହିବାକୁ ହେବ । ନୂଆ ଅଶା, ଆକାଂକ୍ଷା ତଥା ଆଦର୍ଶ ଦି'ଚାରି ବର୍ଷ ଯାଏଁ ମୁହଁ ଦେଖାଏ, ପରେ ସ୍ୱପ୍ନଲୋକକୁ ମିଠା କଡ଼ା କରିଦିଏ । ମଣିଷ ଭାବେ ଆଗକୁ ସୁଖର ଦିନ ଆସୁଛି । ଏବେ ସହିବାକୁ ହିଁ ପଡ଼ିବ ।

ନିଜର ପରିଧି ମଧ୍ୟରେ କିଙ୍ଗୀ ଅନ୍ତର୍ମୁଖୀ ହେବାକୁ ଲାଗିଥାଏ । ଏଇ ପରିଧିକୁ ଲଙ୍ଘନ କରିବାର ଇଚ୍ଛା ବା ତା'ର ପାଚେରୀ ଅପେକ୍ଷା ଉଚ୍ଚ ହୋଇଯିବାର ଇଚ୍ଛା ନଥିଲା । ଆପଣାର ପରିଧିରେ ହିଁ ସେ କ'ଣ ହେବା ଉଚିତ, ବା କ'ଣ ନ ହେବା ଉଚିତ, ଏ ବିଷୟରେ ଚିନ୍ତା କରେ । ବିବାହର ପ୍ରାରମ୍ଭିକ କାଳର ଇଚ୍ଛାଗୁଡ଼ିକ ପୂରଣ ହୋଇ ଯିବା ପରେ ପ୍ରଣୟ କେବଳ ଦେହର ଚାହିଦା ହୋଇ ରହିଯାଏ । ଦେହ ଯେତେବେଳେ ଥକିଯାଏ (କିନ୍ତୁ ବୁଦ୍ଧି ଥକେ ନାହିଁ) ସେତେବେଳେ ଦମ୍ପତି ଅଧିକ ଆନ୍ତରିକ ଇଚ୍ଛାର ସମନ୍ୱୟକୁ ଦେଖିବାର ପ୍ରୟାସ କରନ୍ତି । ସେତେବେଳେ ସନ୍ତାନମାନେ ତାଙ୍କର ସହାୟ ହୁଅନ୍ତି । ସଂତାନ ଯଦି ନଥାଏ, ତେବେ ସଂତାନର ଅଭାବ ଏକ ପୀଡ଼ାରେ ପରିଣତ ହୁଏ ଏବଂ ଏହା ଦମ୍ପତିକୁ କରୁଣାପ୍ଲୁତ କରେ ।

ବିବାହର ପାଞ୍ଚବର୍ଷ ବିତିଗଲେ ସୁଦ୍ଧା କିଙ୍ଗୀ ଘରେ ପିଲାଟିଏ ହେଲାନାହିଁ । ନିତିଦିନିଆ ଦେହର ଚାହିଦା ସନ୍ତା କାମନାରେ ରୂପାନ୍ତରିତ ହେବାକୁ ଲାଗିଲା । କିଙ୍ଗିର ମୁହଁରେ ମନର ବ୍ୟାକୁଳତା ବ୍ୟକ୍ତ ହୋଇ ପଡ଼େ । ରତ୍ନା ମଧ୍ୟରେ ମଧ୍ୟ ସେ ମୂକ ବ୍ୟଥା । ତା'ଠାରେ ମଧ୍ୟ କାତରତା । ଥରେ ଥରେ ସେ ଭାବେ ମୋର ସାଙ୍ଗ ଝିଅମାନେ ଦିଦି'ଟା ପିଲା ଧରି ବୁଲୁଛନ୍ତି । ସେଇ ଗୋଦାବରୀର ବିବାହ ହୋଇଯାଇଛି ଓ ସେଇ ପୁରୁଷସୁଲଭ ଝିଅଟାର ମଧ୍ୟ ଦି'ଟା ପିଲା ହେଲେଣି । ଗୋଦାବରୀ ବାପଘରକୁ ଆସିଥିଲାବେଳେ ନିଜର କୁରୂପ ପିଲାଙ୍କୁ ଧରି ରତ୍ନା ସହ ଦେଖା କରିବାକୁ ରାଘଭା ଘରକୁ ଆସିଥିଲା । ସେ ପିଲାଙ୍କୁ ଦେଖି ରତ୍ନା ମନରେ ଜମି ରହିଥିବା ଈର୍ଷା, ଆଶା ଓ ସ୍ନେହ ଉପୁନ୍ନ ହେଲା ।

ପିଲାଟିଏ ପାଇବା ଆଶାରେ କିଛୀର ମନ ଭଗବାନଙ୍କ ଆଡ଼କୁ ଢଳିବାକୁ ଲାଗିଲା। ସେଇ ସକାମ କାର୍ଯ୍ୟସାଧକର ଭକ୍ତିରେ ବିଶେଷ ବିଶ୍ୱାସ ନଥିଲା। ତଥାପି ଈଶ୍ୱରଭକ୍ତିର ପରିଣାମ ସ୍ୱରୂପ ଟିକିଏ ମାତ୍ର ଭକ୍ତିର ଝଲକ ମଧ୍ୟ ଦେଖାଦେଲା। ମା' ପ୍ରତି ତା'ର ଆଦର ବଢ଼ିଗଲା। ମା'ମନରେ ନାତିନାତୁଣୀ ପାଇଁ ଆଶା। ପିଲାର ଅଭାବ ଏଇପରି ଭାବରେ ତିନିଙ୍କ ମନରେ ତିନିଙ୍କ ପ୍ରତି ବିଶ୍ୱାସଭାବ ଜାତ କରାଇଲା। ସେଇ ସମୟରେ ଏକ ବିଶେଷ ଘଟଣା ଘଟିଲା।

କିଛୀଘରର ଦେବଦେବୀମାନଙ୍କ ମଧ୍ୟରେ ତା'ର ବାପା ପୂଜା କରୁଥିବା ମୂର୍ତ୍ତିଏ ଶାଳଗ୍ରାମ ଥିଲେ। ବାପା ମଲାପରେ ସେ ସବୁକୁ ଏକ ବାକ୍ସରେ ରଖି ମାତ୍ର କେତୋଟି ମୂର୍ତ୍ତିକୁ ପୂଜା ପାଇଁ ବାହାରେ ରଖାଯାଇଥାଏ। ଉପନୟନ ହେଲା ପରଠାରୁ କିଛୀ ପୂଜା କରୁଛି। ନବରାତ୍ରରେ ଥରେ ସବୁ ବିଗ୍ରହଙ୍କୁ ବାହାର କରି, ସଫାସୁତୁରା କରି ପୂଜା କରାଯାଏ। ତାପରେ ପୁଣି ତାଙ୍କ ଜାଗାରେ ରଖିଦିଆଯାଏ। କିଛୀ ଶାଳଗ୍ରାମକୁ ଟିକିଏ ଡରେ। ତାଙ୍କର ରଙ୍ଗ ଆକାର ଓ ଚିତ୍ରରେଖା ସବୁ ତାକୁ ଡରାନ୍ତି। ତା'ର ମା' ଶାଳଗ୍ରାମକୁ ବିଶେଷ ମର୍ଯ୍ୟାଦା ଦିଏ। ସେଥିପାଇଁ ପିଲାଦିନରୁ ତା ଉପରେ ଶାଳଗ୍ରାମର ପ୍ରଭାବ ପଡ଼ିଥିଲା।

ଦିନେ ସେଇ ଶାଳଗ୍ରାମ ହଜିଗଲା।

ଘଟଣାଟି ଏଇପରି। କିଛୀ ତ୍ରେଣୀହଠ୍ଠ ରେଲପୋଲ ଉପରେ ଯାଉଥାଏ। ମୁଣ୍ଡ ଉପରେ ବାକ୍ସ। ସେ ରେଲଧାରଣା ଉପରେ ଚାଲୁଥାଏ। ଯାଉଁ ଯାଉଁ ବୁଲିପଡ଼ି ଦେଖେ ତ ଗାଡ଼ି ଚାଲି ଆସୁଛି। କିଛୀ ରେଲଧାରଣା ଉପରେ ଦୌଡ଼ିବାକୁ ଲାଗିଲା; ମାତ୍ର ଗାଡ଼ିର ଗତି ଆଗରେ ସେ ବା କେତେ ଦଉଡ଼ି ପାରିବ? ତହିଁରେ ପୁଣି ମୁଣ୍ଡ ଉପରେ ଠାକୁରମୂର୍ତ୍ତିମାନଙ୍କର ବାକ୍ସ। ଯାଉଁ ଯାଉଁ ପୋଲ ଓ ପାହିଆକୁ ଧରିରଖିଥିବା କାଠ ପଟା ସବୁ ସାନହୋଇ ଯିବାକୁ ଲାଗିଲା। ତାକୁ ଆଶ୍ରାକରି ଠିଆହେବାକୁ ମଧ୍ୟ ସ୍ଥାନ ନାହିଁ। ଅନେକ ଦଉଡ଼ିଲା ପରେ ସୁଦ୍ଧା ପୋଲ ଶେଷ ହେଉ ନଥାଏ। ଅବଶେଷରେ କିଛୀ ଭଗବାନଙ୍କ ନାଁ ନେଇ ସେଇ ଧାରଣା ଉପରେ ଗୋଡ଼ ପଞ୍ଝା ଉପରେ ଟିପରଖି ଠିଆ ହୋଇଗଲା। ତା'ର ହାତ ବାକ୍ସର ଢାଙ୍କୁଣୀକୁ ଚାପି ଧରିଥାଏ। ଏହି ସମୟରେ ଘଡ଼ ଘଡ଼ ଶବ୍ଦ କରି ଗାଡ଼ି ଆଗଦେଇ ଚାଲି ଯିବାକୁ ଲାଗିଲା। ସେ ଶବ୍ଦରେ ଡରି କିଛୀ ନିଃଶ୍ୱାସ ଚାପି ରହିଗଲା। ସାରା ଦେହ ଝାଳନାଳ ହୋଇ ଉଠିଛି। ସେ ଯେତେବେଳେ ଭାବୁଥାଏ ଯେ ଭଗବାନ ବିପଦରୁ ପାରି କରିଦେଲେ, ସେତିକିବେଳେ ଗାଡ଼ିର ଶେଷ ଅଂଶ ଗାର୍ଡ଼ର ଡବା ଆସିଲା। ତହିଁରେ ଜର୍ଜ, ହେଡ଼ କ୍ଲର୍କ ଯୋଶୀ, ପୁରୁଣା ତହସିଲଦାର ଓ ଦେଶାଇବାବୁ ଗାର୍ଡ଼ ସହ ଠିଆହୋଇଥିଲେ; ଜର୍ଜ ଗାର୍ଡ଼ର ହାତ ଧରି ଅଟକାଉ ଅଟକାଉ ନାହିଁ ନାହିଁ କହିଚାଲିଥାଏ। ଗାର୍ଡ଼ ହାତ ଛଡ଼ାଇ ନେଇ ହାତରେ ଧରିଥିବା ମୋଟାବାଡ଼ିରେ କିଛୀ ପିଠିରେ ପାହାରେ କଷିଦେଲେ। ଗାଡ଼ି ଆଗକୁ ବାହାରିଗଲା। କିଛୀ ଧରୁଧରୁ ଦେବମୂର୍ତ୍ତି ଥିବା ବାକ୍ସର ଢାଙ୍କୁଣୀ ଖୋଲିଗଲା। ଭିତରର ସବୁ ମୂର୍ତ୍ତି ତ୍ରେଣୀହଠ୍ଠରେ

ପଡ଼ିଗଲା। କିଟ୍ଟୀ ଧରିପକାଇବାର ପ୍ରୟାସ କରି ହାତ ବଢ଼ାଇବାରୁ ତାହାତରେ ଏକମାତ୍ର ଶାଳଗ୍ରାମ ହିଁ ଅଟକିଗଲେ। 'ଯାହେଉ ଶାଳଗ୍ରାମ ବଂଚିଯିବ ଅର୍ଥ ସବୁ ମୂର୍ତ୍ତି ବଂଚିଗଲା ଜାଣ' ଭାବି କିଟ୍ଟୀ ଶାଳଗ୍ରାମକୁ ସଜୋରରେ ମୁଠାଇ ଧରିଲା। ତା'ପରେ ତାଙ୍କୁ ପକେଟରେ ରଖିବାକୁ ଯାଉଛି, ଶାଳଗ୍ରାମ ହାତମୁଠା ଭିତରେ ଖୁଜୁବୁଜୁ ହେବାକୁ ଲାଗିଲେ।

'ଆରେ ଏହାର ପ୍ରାଣ ଅଛି ନା କଣ ' କହି କିଟ୍ଟୀ ହାତମୁଠା ଖୋଲି ଦେଖିଲା।

'ମୋତେ ଧରି ପକାଇଲୁ କାହିଁକି? ଏତେଦିନ ହେଲାଣି ତୁ ମୋତେ ପୂଜା କରିଛୁ? ଛାଡ଼ ମୋତେ। ଖାଇରେ ପ୍ରତିଦିନ ମୋ ଉପରେ ଅନ୍ତତଃ ଥଣ୍ଡାପାଣି ମୁନ୍ଦିଏ ପଡ଼ିପାରିବ'—କହି ଶାଳଗ୍ରାମ ତା ହାତରୁ ଖସି ଯିବାକୁ ବସିଲେ। ଶାଳଗ୍ରାମ ପଡ଼ିଯିବା ଭୟରେ କିଟ୍ଟୀ ପୁଣି ଜୋରେ ହାତ ମୁଠା କରିନେଲା। ନାହିଁ ନାହିଁ କହି ସେ ଆକୁଳ ହେଉଥିଲେ ସୁଦ୍ଧା ଶାଳଗ୍ରାମ ଖୁଜ୍‌ବୁଜ୍ ହୋଇ ତା' ହାତରୁ ଖସିଗଲେ। ସେଯାଏଁ ଅନୁଭବ କରିଥିବା ଶାଳଗ୍ରାମଙ୍କର ଶୀତଳ ସ୍ପର୍ଶ ହେତୁ କିଟ୍ଟୀ ଥରଥର ହୋଇ କମ୍ପିଉଠିଲା। ସାରା ଦେହରୁ ଝାଳ ପାଣିପରି ବୋହିଯିବାକୁ ଲାଗିଲା। ସେ ଗଁ ଗଁ ଶବ୍ଦ କରି ଉଠିବସିଲା।

କିଟ୍ଟୀର ବିଳିବିଳାରେ ରତ୍ନାର ନିଦ ଭାଙ୍ଗିଗଲା। ସେ ଉଠିପଡ଼ି ଭୟରେ ସ୍ୱାମୀଆଡ଼େ ଅନାଇବାକୁ ଲାଗିଲା। ଖରାପ ସ୍ୱପ୍ନ ଦେଖିଲି କହି କିଟ୍ଟୀ ଟର୍ଚ୍ଚ ଜାଳି ଘଡ଼ି ଦେଖିଲା। ରାତି ଦି'ଟା ବାଜିଛି। ସ୍ତ୍ରୀକୁ ସ୍ୱପ୍ନର ଅର୍ଥ ସବିସ୍ତାର କହି କିଛି ଲାଭ ନାହିଁ, ମନ ଏବେବି ଭୟତ୍ରସ୍ତ, କିଟ୍ଟୀ ଦରଜା ଖୋଲି ମା'କୁ ଉଠାଇଲା।

ଏତେ ଦିନପରେ ଗଙ୍ଗୱା ଆନ୍ତରିକ ଭାବରେ ମୁହଁ ଖୋଲିଲା। ପୁଅର ଭୟ ଦେଖି ସାହସ ଦେଲା।

'ତୁ ଡରନା କିଟ୍ଟୀ, ଶାଳଗ୍ରାମ ଆମର ଅଧିଷ୍ଠାତା ଦେବତା। ସିଏ ଥିଲାବେଳେ ଶାଳଗ୍ରାମକୁ ବଡ଼ ଭକ୍ତି କରୁଥିଲେ। ସେ ଗଲାବେଳକୁ ତୁ ପିଲା। ତାଙ୍କ ପୂଜାରେ କାଳେ ଦୋଷତ୍ରୁଟି ହୋଇଯିବ ଏହା ଭାବି ମୁଁ ତାଙ୍କୁ ଭିତରେ ରଖିଦେଇଥିଲି। ଦେବତା କ୍ରୋଧ କରନ୍ତି ନାହିଁ। ଏକମାତ୍ର ଭକ୍ତ ପାଖରେ ସବୁ ଦେବତା ଶାନ୍ତ। ଭୟ କର ନାହିଁ। ତୁ ଏବେ ବଡ଼ହେଲୁଣି। 'ତୁ ଏବେ ମୋର ପୂଜାକର'—ତୋତେ ଶାଳଗ୍ରାମ ଏଇ ଚେତାବନୀ ଦେଲେ। ତୁ ଯାକୁ ପୂର୍ବପୁରୁଷଙ୍କର ପୁଣ୍ୟ ଫଳ ବୋଲି ଭାବ। ତୁ ପିଲାଲୋକ, ଶାଳଗ୍ରାମଙ୍କୁ ଭୁଲି ଯାଇ ପାରିଥାଉ, ମୁଁ କେମିତି ଭୁଲିଯିବ? ଆମକୁ ପ୍ରଥମେ ସମ୍ପତ୍ତି ସେଇ ଦେଇଥିଲେ। ଦୁର୍ଦ୍ଦିନରେ ରକ୍ଷା ମଧ୍ୟ ସେଇ କରିଥିଲେ। ତୁ ପୂଜା କରିସାରିଲାପରେ ମୁଁ ପ୍ରିତିଦିନ ଘିଅଦୀପଟିଏ ଜାଳେଁରେ ବାପା; ଯଦି ସେ କୁପିତ ହୋଇଥାନ୍ତି, ତେବେ ବେଶୀ କୁପିତ ହେବେ ନାହିଁ। 'ତୁ ତେବେ ଶାଳଗ୍ରାମ ନାଁରେ ସେ ଦୀପ ଜଳାଉ?' ଗଙ୍ଗୱା ମୁଣ୍ଡ ହଲାଇ ହଁ ଭରିଲା।

ଏହା ଶୁଣି ଉୟଭୀତା ରତ୍ନା ମନରେ ଏଇ ମୁଖରା ବୁଢ଼ୀଟି ପ୍ରତି ଆଦରଭାବ ଜାତ ହେଲା। କିଟ୍ଟୀରି ମନେହେଲା, ଯେମିତି ମା' ହିଁ ତାକୁ ରକ୍ଷା କରିଦେଲା।

ନିଜର କୁଳ, ଧର୍ମ ଓ କୁଳାଚାରର ଜୀବନ୍ତ ଜାଗ୍ରତ ଦେବତାପରି ମା' ତାକୁ ଦେଖାଗଲା। ସେଇ ଦିନୁ ଶାଳଗ୍ରାମ ବାକ୍ସ ଛାଡ଼ି ଆପଣାର ପୁରୁଣା ତମ୍ବାଥାଳିରେ ବିରାଜମାନ ହୋଇଗଲେ। ଗଙ୍ଗଓ୍ୱା ମଧ୍ୟ ମାତୃଦେବତା ସ୍ଥାପନରେ ସ୍ଥାପିତା ହୋଇଗଲା।

କଚେରୀ ଯିବା ଆଗରୁ କିଙ୍ଗୀ ଶାଳଗ୍ରାମକୁ ପୂଜା କରି 'ଆଜି ମୋର କିଛି ଭୁଲ ନହେଉ, ମୋର ମୁଣ୍ଡ ଠିକ୍ ରହୁ, ମୋର ପ୍ରତିପତ୍ତି କମ୍ ନହେଉ, ପକେଟକୁ କିଛି କିଛି ପଇସା ଆସୁଥାଉ' ଇତ୍ୟାଦି ମନେମନେ ପ୍ରାର୍ଥନାକରି ଘରୁ ବାହାରେ। କେବେକେବେ ଶାଳଗ୍ରାମଙ୍କ ନିର୍ମାଲ୍ୟ ତୁଳସୀକୁ ପକେଟରେ ପୂରାଇ ଯାଏ।

ଦେବତାଙ୍କ ମଧ୍ୟରେ ଯେମିତି ଶାଳଗ୍ରାମ, ଘରେ ଯେମିତି ମା' ପୂଜ୍ୟା, କଚେରୀରେ ସେଇପରି ଜର୍ଜ ପୂଜନୀୟ ହୋଇପଡ଼ିଲା। କିଙ୍ଗୀ ବିବାହର ଚାରିପାଞ୍ଚମାସ ପରେ ଜର୍ଜର ବିବାହ ହୋଇଯାଇଥିଲା। ତାଙ୍କର ପୁଅଟିଏ। ଜର୍ଜ ସ୍ଥାଣୁପରି। ସେ ନିଜର ସ୍ଥିର ଜୀବନଦ୍ୱାରା ନୀରବରେ ଅଧୀରତା ଓ ଚଞ୍ଚଳତା ହାତରେ ପଡ଼ି ଛଟପଟ ହେଉଥିବା କିଙ୍ଗୀର ସହାୟତା କରେ। ଘରେ ଯେମିତି ଶାଳଗ୍ରାମ ପାଇଁ ବିନା ବିଘ୍ନରେ ନିରବଚ୍ଛିନ୍ନ ଭାବରେ ଘିଅଦୀପ ଜାଳିବାପାଇଁ ମା' ଥିଲା, ଅଫିସରେ ସେଇପରି ସଞ୍ଜରେ ଦି'ଥର ଚା' ନପିଉଥିବା କାମନକରି ପଇସା ସ୍ୱୀକାର କରୁନଥିବା, ଆଶାର ମହତ୍ତ୍ୱକୁ ଛାଡୁ ନଥିବା, ଓ କାହାକୁ ଉପଦେଶ ଦେଉ ନଥିବା ଲୋକ ଥିଲା ଜର୍ଜ। ସେପରି ଲୋକ କିଙ୍ଗୀକୁ ଆପଣା ଆଡ଼କୁ ଟାଣନ୍ତି। ମାତ୍ର ସେମାନଙ୍କର ଆଦର୍ଶ ତା'ର ସ୍ଥାଣୁତ୍ୱର ବାହାର କଥା। ନୀତିର ଉଦ୍‌ଗମ କେଉଁଠାରୁ ହୋଇଛି ସେ ବିଷୟରେ ଜ୍ଞାନୀମାନେ ଅନେକ ଉତ୍ତର ଦେବେ। ସାମାଜିକ ଜୀବନର ଆବଶ୍ୟକତା ପାଇଁ ଯଦି ନୀତିର ଜନ୍ମ ହୋଇଥାନ୍ତା ତେବେ ବିବିଧ ସମାଜରେ ବିବିଧ ନୀତି ଆବଶ୍ୟକ ହୁଅନ୍ତା ନାହିଁ। ନୀତିର ଉଦ୍‌ଗମ ଯଦ୍‌ଭଦ୍ର, 'ଯଦୟଦାଚରତିଂ ଶ୍ରେଷ୍ଠଃ' ମଧ୍ୟରେ ନିହିତ। କେତେକ ଲୋକ ଯତ୍ନପୂର୍ବକ ଶିକ୍ଷାନକରି ନୀତି ପାଳନ କରନ୍ତି। ସେମାନେ ସହଜଭାବରେ ଯଶସ୍ୱୀ ହୁଅନ୍ତି। ଏମାନଙ୍କ ଜୀବନର ସ୍ଥିରତାକୁ ଦେଖି ଅସ୍ଥିରତାରେ ଦୁଃଖୀ ମଣିଷ ଏ ତତ୍ତ୍ୱର ମହତ୍ତ୍ୱକୁ ଏଇପରି ବୁଝନ୍ତି – ସ୍ଥିରତାରେ ହିଁ ସୁଖ। ଯଦି ଏ ସିଦ୍ଧାନ୍ତକୁ ମାନି ନିଆଯାଏ, ତେବେ ସଞ୍ଜରେ ଥରେ ଚା ପିଇବାରେ ହିଁ ସୁଖ ମିଳିପାରେ। ମାତ୍ର ଏହା ଏକ ଅନ୍ଧ ନୀତି ଓ ମୂଢ଼ କଳ୍ପନା। ଅଥବା ଏଇ ସବୁ ତତ୍ତ୍ୱକୁ ନଖୋଜି ଜର୍ଜ ପରି ବ୍ୟକ୍ତିତ୍ୱକୁ ନିଜ ଜୀବନର ଆଦର୍ଶ କରାଯାଇପାରେ। ଏଇ ପରିସ୍ଥିତିରୁ 'ବ୍ୟକ୍ତିପୂଜା' ଆରମ୍ଭ ହୁଏ। କିଙ୍ଗୀ ପରି ସାଧାରଣ ଲୋକ ଆପଣାର କ୍ଷୁଦ୍ରତାର ନିନ୍ଦାକରି ସେପରି ଲୋକର ପ୍ରଶଂସା କରନ୍ତି ଏବଂ ସେମାନଙ୍କୁ ଈର୍ଷା କରି ନିଜ ଜୀବନକୁ ଦୁଃଖମୟ ମଣନ୍ତି। ଭାଗ୍ୟବଶତଃ ଯଦି ଶାଳଗ୍ରାମ ସହାୟକ ହୁଅନ୍ତି ତେବେ ଏମିତି ଲୋକ ବିପରୀତ ଭାବରେ କିଞ୍ଚିତ ସ୍ଥିରତା ପ୍ରାପ୍ତ ହୁଅନ୍ତି।

ନିଜର ଅଜାଣତରେ ଜର୍ଜ କିଙ୍ଗୀକୁ ଆତ୍ମପରୀକ୍ଷା ଦିଗରେ ପ୍ରେରଣ କରୁଥିଲା। ଦିନେ ଏକ ବଡ଼ ଷ୍ଟେଟମେଣ୍ଟ ସେଇଦିନ ତିଆରି କରିସାରି କିଙ୍ଗୀର ଘରକୁ ଫେରିବା

କଥା। କଚେରୀସମୟ ଶେଷ ହୋଇଯିବାପରେ ଜର୍ଜ କିଟ୍ଟୀ ପାଖକୁ ଆସିଲା। କିଟ୍ଟୀ ହସି କରି କହିଲା 'ଜର୍ଜ, ଟିକିଏ ଡାକିଦେଲ, ମୁଁ ଲେଖୁଛି, ଯଦି ସାହାଯ୍ୟକରିବ ତେବେ କୃଷ୍ଣାସ୍ୱା ଦୋକାନର ଦୋଷା ଖୁଆଇବି।' ସ୍ମିତହସି ଜର୍ଜ ଠିଆହୋଇ ରହି ଡାକିଦେବାକୁ ଲାଗିଲା। ଦେଢ଼ଘଣ୍ଟା ବିତିଗଲା। ସାତଟା ବାଜିଗଲାଣି। କାମ ସରିଲାବେଳକୁ କିଟ୍ଟୀ ଆଗରେ ଏକ ଧର୍ମସଙ୍କଟ ଦେଖା ଦେଲା। ଜର୍ଜ ସନ୍ଧ୍ୟାରେ କିଛି ଖାଏ ନାହିଁ; ଅଥଚ କିଟ୍ଟୀ ପାଇଁ ସେ ଦେଢ଼ ଘଣ୍ଟା କାମ କଲାଣି; କିଟ୍ଟୀ ତାକୁ ଖୁଆଇବବୋଲି କଥା ଦେଇଛି। ଯାହା ହେଉ ପଛକେ ଯତ୍ନକରି ଦୋଷା ଖୁଆଇବା ଦରକାର, ଏହା ସ୍ଥିର କରି ସେ ଜର୍ଜ ସାଙ୍ଗରେ ଚାଲିଲା। ମିଶନ କମ୍ପାଉଣ୍ଡ ମୋଡ଼ ପାଖରେ ଜର୍ଜ ବାଙ୍କିଗଲା। କିଟ୍ଟୀ ଜର୍ଜକୁ ହୋଟେଲକୁ ନେଇ ଯିବାକୁ ଚେଷ୍ଟା କଲା। ଜର୍ଜ ମନା କଲା ଓ କିଟ୍ଟୀ ତହିଁରେ ଦୁଃଖିତ ହେଲା। ତାକୁ ଆଶ୍ୱାସନା ଦେଇ ଜର୍ଜ କହିଲା, 'ଘରେ ଷ୍ଟିଫେନ୍‌ସ ବାଟ ଚାହିଁଥିବ। ଏବେ ହୋଟେଲକୁ ଗଲେ ଘରେ ପହଞ୍ଚିବାରେ ଡେରି ହୋଇଯିବ।'

କିଟ୍ଟୀର ମନେହେଲା ଯେପରି ସାରା ସଂସାର ତାକୁ ପରିହାସକରିବା ପାଇଁ ଭିତରେ ଭିତରେ ଯୋଜନା କରୁଛି। ଷ୍ଟିଫେନ୍‌ସ (ଜର୍ଜର ଦ୍ୱିତୀୟ ପୁଅ) ବେମାର ଥାଏ। ସେ କଥା ଜର୍ଜ ତାକୁ ପ୍ରଥମରୁ କହି ନଥିଲା। ହସି ହସି ଦେଢ଼ଘଣ୍ଟା କାଳ ମୋ କାମ କଲା, ସେଥିପାଇଁ ତାକୁ ଦୋଷା ଖୁଆଇବାକୁ ଚାହିଁଥିଲି। —ଏମିତିସବୁ ଭାବି କିଟ୍ଟୀ ମନକୁ ମନ ଚିନ୍ତିତ ହେଲା।

ଥରେ କ୍ରୀସମାସରେ କିଟ୍ଟୀ ଜର୍ଜର ଘରକୁ ଗଲା। ସାରାର ଆଜ୍ଞାପାଳନରେ ତତ୍ପର ଜର୍ଜକୁ ଦେଖି ସେ ଭାବିଲା, ଏତ ସତୀଭକ୍ତ—ଶିରୋମଣି। ଘରେ ସ୍ତ୍ରୀର ବୋଲକରା। ଏହାଦ୍ୱାରା କିଟ୍ଟୀକୁ ଏଇ ସଂତୋଷ ମିଳିଲା ଯେ 'ଜର୍ଜ ସ୍ତ୍ରୀ ବୋଲକରା। କିଟ୍ଟୀର ଘରେ ଇଆର ଠିକ୍ ବିପରୀତ ପରିସ୍ଥିତି। ବିବାହ ପରର ଉତ୍ସାହ ଶେଷ ହୋଇଗଲା ପରେ ରତ୍ନା ମଧ୍ୟ ଆଉ ଆଉ ସ୍ତ୍ରୀମାନଙ୍କ ପରି ସ୍ତ୍ରୀଟିଏ ହୋଇଗଲା। ମାତ୍ର ରତ୍ନା ଅସୁସ୍ଥ ହେଲେ କିଟ୍ଟୀ ଦିନରାତି ଚିନ୍ତିତ ହୁଏ। ସେତେବେଳେ କଚେରୀ କାମ ମଧ୍ୟ ଠିକ୍‌ଭାବରେ କରିପାରେ ନାହିଁ।

ସାରାର ପ୍ରସବ ସମୟରେ କିଟ୍ଟୀ ସାଇକେଲ ନେଇ ସିଭିଲ ହସପିଟାଲ ଗଲା। ପ୍ରତୀକ୍ଷାଳୟରେ ବସି ଜର୍ଜ ଖବର କାଗଜ ପଢୁଥିଲା, ପାଖ ଓ୍ୱାର୍ଡ଼ରୁ ସାରାର କାତର ସ୍ୱର ଶୁଣାଯାଉଥିଲା। ତାହା ଶୁଣି କିଟ୍ଟୀର ଛାତି ପାଣିହୋଇଗଲା। ଜର୍ଜ ଆଡ଼େ ଚାହିଁ ଦେଖିଲା, ସେ ସଚିତ୍ର ଖବରକାଗଜରେ ମଗ୍ନ ହୋଇଯାଇଛି।

# 23. କିଟ୍ଟୀର ଗସ୍ତ

''ଅଥକେନ ପ୍ରଯୁକ୍ତୋଽୟମ୍ ପାପଂ ଚରତି ପୁରୁଷଃ ।
ଅନିଚ୍ଛାନ୍ନିବ ବାର୍ଷ୍ଣେୟ ବାଳାଦିବ ନିୟୋଜିତଃ ॥''

ଇଚ୍ଛା ନଥିଲେ ସୁଦ୍ଧା ଇଚ୍ଛା ମନୁଷ୍ୟକୁ ପାପ କରିବାଲାଗି ପ୍ରେରଣ କରୁଥିବା ଶକ୍ତି କଣ ? – ଏ ପ୍ରଶ୍ନ ତ୍ରେତୟା ଯୁଗରୁ ମନୁଷ୍ୟ ପଚାରି ଆସୁଅଛି । ଏହାର ଉତ୍ତର ଯାହା ହେଉ ନାଁ କାହିଁକି ଥରେ ଭୁଲ କାମ ହୋଇଗଲା ପରେ ତାହାକୁ ନେଇ ପଶ୍ଚାତ୍ତାପ କରୁଥିବା ବ୍ୟକ୍ତିକୁ ଧର୍ମାତ୍ମା ହିଁ କୁହାଯିବା ଉଚିତ । ଗସ୍ତ ଯିବା ମୌକାରେ ଯେଉଁ ସରକାରୀ ଅଫିସରର ପାଦ ଖସେନାହିଁ ତାହାକୁ ଧର୍ମରାଜ କୁହାଯିବା ଉଚିତ, ନ ହେଲେ ଗଜମୂର୍ଖ ।

ସେକାଳରେ ଗସ୍ତକୁ ଯାଉଥିବା ରେଭିନ୍ୟୁ ବିଭାଗର କର୍ମଚାରୀମାନେ ଛାଉଣୀରୁ ବାହାରି ଯୁଦ୍ଧକୁ ଯାଉଥିବା ସୈନିକ ପରି ହୋଇପଡୁଥିଲେ । ଘରଛାଡ଼ି, ଦୂରକୁ ଯିବାମାତ୍ରେ, ପ୍ରତିଦିନ ରଚିକର ଭୋଜନ, ଲୋକଙ୍କ ଉପରେ ଅଧିକାର, ଗପସପ, ନିଜର ଦର୍ପକୁ ବାରଂବାର ପରୀକ୍ଷା କରି ଦେଖିବାର ଇଚ୍ଛା, – ସବୁ ଏକାଠି ହୋଇ 'ଏକୈକମପ୍ୟନର୍ଥାୟ' ସମାନ ହୋଇ ପଡୁଥିଲା । ଅଧିକାରୀମାନଙ୍କ ସହ ନିକଟସଂପର୍କ ସ୍ଥାପିତ ହୁଏ । ଅଧୀନସ୍ଥ ପିଅନ, ଗୌଡ଼'* କୁଲକର୍ଣ୍ଣି ମାନେ ଚାକର ପରି ଆଗପଛରେ ଦୌଡ଼ନ୍ତି । ଏଇପରି ନିରଙ୍କୁଶ ଦିନରେ, ଗସ୍ତ ସମୟରେ ଯଦି ଜଣେ ଅଭିଜ୍ଞ କିରାଣୀ ପାଖରେ ଥାଏ ତେବେ ଆଉ କଣ କରିବାର ରହିଲା ?

ଏଥର ଗସ୍ତ ସମୟରେ ହେଡ୍‌କ୍ଲର୍କ ଯୋଶୀରାମ ରାୟ ସହିତ କିଟ୍ଟୀକୁ ଯିବାକୁ ପଡ଼ିଲା । ଯୋଶୀରାମରାୟଙ୍କ ଗସ୍ତ ବିଶେଷ ପ୍ରସିଦ୍ଧ । ତାଙ୍କର ପରାକ୍ରମ ରେଭିନ୍ୟୁ ବିଭାଗର ରେକର୍ଡ଼ରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରାଯାଇପାରେ । ଥରେ ଗୋଚର ପଡ଼ିଆରେ ଗୋରୁ ଚରାଉଥିବା ଏକ ଗାଉଁଲୀ ସ୍ତ୍ରୀ ଲୋକକୁ ଜୋରିମାନା କରିବି କହି ଡରାଇଦେଲା । ଆଉଥରେ ତହସିଲଦାରଙ୍କୁ ଚଉପାଢ଼ୀ ଉପରେ ବସାଇ ଦେଇ ପଛପଟ ଘରେ ପ୍ରଣୟଲୀଳା ରଚାଇଥିଲା । ତା' ସଂପର୍କରେ ଏପରି ଅନେକ କାହାଣୀ ପ୍ରଚଳିତ । ଅନେକ ଥର ରାତିରେ ତାସ୍ ଖେଳିଲାବେଳେ ତା'ର ବନ୍ଧୁମାନେ ତାର ଏଇ ସବୁ କୀର୍ତ୍ତି ବଖାଣି ବସନ୍ତି । ଏସବୁ କଥାର ଜବାବରେ ସେ ପ୍ରାୟତଃ କଥାଟିଏ

* ଉତ୍ତର ଭାରତର ଜାଠମାନଙ୍କ ପରି ଏମାନେ ମହୀଶୂରର ଏକ ମହତ୍ତ୍ୱପୂର୍ଣ୍ଣ ଜାତି ।

କହେ – 'ଏଇ, ତୁମମାନଙ୍କ ବିଷୟରେ ମଧ୍ୟ ଗୋଟିଏ ଅଧେ କାହାଣୀ ଶୁଣାଇପାରେ।' ଅଥବା 'ତୁମ କୀର୍ତ୍ତି କଥା ବା କଣ ବଖାଣିବି।' ମାତ୍ର ତାକୁ ନେଇ ଗଢ଼ିଉଠିଥିବା କାହାଣୀକୁ ସେ କେବେ ବିରୋଧ କରେ ନାହିଁ। କଥାରେ କଥାରେ ଥରେ କିଟ୍ଟୀ ତାକୁ ପରିହାସ କରି ବସିଥିଲା। ମାତ୍ର ଯୋଶୀରାମ ରାୟଙ୍କୁ କନିଷ୍ଠତମର ଏ ପରିହାସ ଭଲଲାଗିଲା ନାହିଁ। ହଠାତ୍ କିଟ୍ଟୀ ଆଡ଼େ ବୁଲିପଡ଼ି ଖଙ୍କାରି ଉଠି କହିଲା, 'ଏ କୃଷ୍ଣଜୀ, ଅନ୍ୟମାନଙ୍କୁ ଦେଖି ତୁମେ ଫୁଲିଯାଅ ନାହିଁ, ତୁମ ପେଟରେ ଭାତ ହଜମ ହେବନାହିଁ; ମୁଁ ତୁମର ଗୁମର ଖୋଲିଦେଇ ପାରେଁ। ତହୁଁ କିଟ୍ଟୀ 'ସବୁ ଆପଣଙ୍କର ହିଁ ଦୟା' ବୋଲି କହିବାରୁ ସେ ଆଗପଛ ବିଚାର ନକରି କହିଦେଲା, 'ମୁଁ ଜାଣେ, ତୁମେ ଅଣପୁରୁଷ।' ତାସ ଖେଳୁଥିବା ଲୋକ ସଭିଏଁ ହସିହସି ଗଡ଼ିଗଲେ। ଏସବୁ ରାମରାୟର ନିତିଦିନିଆଁ ପରିହାସ। କିଟ୍ଟୀର ମନେହେଲା ସେ ନିଃସନ୍ତାନ ହୋଇଥିବାରୁ ଏ ବାକ୍ୟ ସେଥିପ୍ରତି ଉଦ୍ଦିଷ୍ଟ। ତାର ମୁହଁ ଗମ୍ଭୀର ହୋଇଗଲା। ସେତିକି ନୁହଁ, ଅନ୍ୟ ଜଣେ କ୍ଲର୍କ ତାକୁ ଚିଡ଼ାଇ କରି କହିଲା, 'ଏତେ ତରବର କରୁଛ କାହିଁକି ରାମଣ୍ଣା ? ପିଲାପିଲିରେ କି ସୁଖ ଏକଥା ତୁମେ ଜାଣ ନାହିଁ ? ଦି'ଦିନ ମଉଜ କରିବାକୁ ଦିଅ, ଥରେ ଯଦି ଆରମ୍ଭ ହୋଇଯିବ, ତେବେ ତୁମକୁ ମଧ୍ୟ ପଛକୁ ପକାଇ ଦେବ।' ଅନ୍ୟଜଣେ ଭିନ୍ନ ଭାବରେ କହିଲା, 'ହଁ ହୋ କୃଷ୍ଣଜୀ, ନିଜ ଶଶୁରଙ୍କୁ ଦେଖି କିଛି ଶିଖ। ବୁଢ଼ା ହେଲା, ହେଲେ ଅଭ୍ୟାସ ଗଲାନାହିଁ। ତୁମେ ତାଙ୍କ ଜୋଇଁ ହୋଇ କଣ ନାଁ କମେଇଲ।

ଖାଲି କଥାରେ ଯେ କିଟ୍ଟୀକୁ ସିଧା କରିଦେବା କଥା ଯୋଶୀରାମରାୟ ଭାବିଥିଲା ତାହା ନୁହଁ। ସେ ଏକ ଯୋଜନା କରିଥିଲା। ତା' ଫାନ୍ଦରେ ପଡ଼ିଥିବା ସବୁ କିରାଣୀ କିଛିନା କିଛି ଭୁଲ କରି ରାମରାୟକୁ କହିବାର ସୁଯୋଗ ଦେଇଦେଉଥିଲେ। ସେମାନେ ଯେତେବେଳେ ରାମରାୟକୁ ଥଟ୍ଟା କରିବାକୁ ଆରମ୍ଭ କରନ୍ତି, ସେତେବେଳେ ସେ ସେମାନଙ୍କର ଅନ୍ଦିସନ୍ଦି ତାକୁ ମାଲୁମ ବୋଲି କହି ସେମାନଙ୍କର ମୁହଁ ବନ୍ଦକରି ଦିଏ। କିଟ୍ଟୀ ବିଷୟରେ ରାମରାୟ ନିଜର ସାଙ୍ଗମାନଙ୍କ ଆଗରେ ପ୍ରତିଜ୍ଞା କରି କହିଥିଲା, ଏ ଟୋକାର ଭାରୀ ଗର୍ଉଁ ହୋଇଗଲାଣି, ଏଇଥର ୟାର ଗର୍ଉଁ ଛଡ଼ାଇ ଦେବି।'

ଗର୍ଉଁ ଛଡ଼ାଗଲା।

ଏଇ ଭୟାନକ ଅନୁଭବ କିଟ୍ଟୀକୁ ଆମୂଳ ଦୋହଲାଇଦେଲା। କେଜାଣି କାହିଁକି ସେ ଏ ପରିହାସ ପାଇଁ ପ୍ରସ୍ତୁତହୋଇ ଥିଲା, ସେ କଥା ନିଜେ ମଧ୍ୟ ବୁଝିପାରିଲା ନାହିଁ। ଏଇ ପୂତିଗନ୍ଧମୟ ଅବସ୍ଥାକୁ ଦେଖିସୁଦ୍ଧା ସେ ଯେ କାହିଁକି ପଛକୁ ହଟିଲା ନାହିଁ! ରାଘପ୍ପାର ଜୋଇଁ ହୋଇଥିବାର ଅହଂକାର, ଅଥବା ଗପ୍ପର ପ୍ରଭାବ, କିମ୍ବା ରାମରାୟ ପଛରେ ଲାଗିଥିବା ହେତୁ ଅଥବା ନୂତନ ଅନୁଭୂତିର ଉତ୍ସୁକତା – କଣ ଯେ କାରଣ ସେ କିଛି ବୁଝିପାରିଲା ନାହିଁ। ସେ ବାରଂବାର ଭାବିଲା ଯେ ସେ ଏପରି କଲା କେମିତି ? ଏଇ ଗୋପନୀୟତା, ଏଇ ଭୟ, ଏଇ କଳୁଷ, ଏଇ

ବିସ୍ମୟ—ସବୁ ଗୋଟିଗୋଟି କରି ମନେପକାଇ ତାର ଦେହ କମ୍ପି ଉଠିଲା। ଏକ ଏକ କଥା ତା' ମନରେ ବାରଂବାର ଭାସି ଉଠିଲା। 'କୃଷ୍ଣଜୀ, ତୁମେ ଆଗେ ଯାଇକରି ଆସ, ମୁଁ ଏଇଠି ଠିଆ ହୋଇଛି।'—ଏହା ମନେପକାଇ ଥୁଥୁ କରି ଛେପ ପକାଏ। କିରାଣୀମାନଙ୍କ ମଧ୍ୟରେ ଏକଥା ରାଷ୍ଟ୍ର ହୋଇଗଲା। କିଟ୍ଟୀ ଆଗରେ ନିଜର କାଗଜପତ୍ର ଦେଖୁ ଦେଖୁ ମଧ୍ୟ ସେ ଥୁଥୁ କରେ। କିଟ୍ଟୀ ଭାବେ ଏସବୁ କଣ ? ଏସବୁ ଦୁର୍ଗନ୍ଧକୁ ସେ ସହିପାରିବ ?

ରାମରାୟର ଇଲାକାରେ କିଟ୍ଟୀର ନାଁ 'ଥୁ କୁଲକର୍ଣ୍ଣୀ' ଭାବରେ ପ୍ରସିଦ୍ଧ ହୋଇ ଗଲା।

କ୍ୟାମ୍ପ ଶେଷହେବା ଦିନ। ଏତେକଥା କରୁଥିବା, ଏତେ ଛୁଆ ଛୁଇଁ ବାରଣ ମାନୁଥିବା କିରାଣୀମାନେ ଘିଅଛଣା ପକୁଡ଼ି ଖାଇ କ୍ୟାମ୍ପ ଉଦ୍‌ଯାପନକରିବା ପାଇଁ ଇଚ୍ଛା କଲେ। ରାମରାୟ 'ଗୌଡ଼ା' ଉପରେ ହାକିମୀ ଦେଖାଇଲା, 'ଏଇ, ଗୌଡ଼ଜୀ, ଆଜି ଭଲ ମାଖନ ଆଣିବ। ଜଣକ ଘରୁ ଆଣିବ, ଦଲାଲ ପରି ଏଠୁ ସେଠୁ ଆଣି ଏକାଠି କରି ଟିକିଏ ଗାଈଠୁ, ଟିକିଏ ମଇଁଷିଠୁ, ଟିକିଏ ଛେଳିଠୁ ବା ଗଧୀଠୁ ଆଣି ମିଶାଇଦେଇ ନେଇଆସିଲେ ତହସିଲଦାର ସାହେବ ଖାଇବେ କେମିତି ? ଏକଥା ତୁମର ନିଜର ଭାବିବା କଥା।' ଅଜ୍ଞାନୁସାରେ 'ଗୌଡ଼' ତାର ବିଶ୍ୱସ୍ତ ଚାଷୀଘରୁ ମାଖନ ଆଣିଦେଲା। ତଓନସ୍ଵାର ମାଖନ ସାରା ଗାଁରେ ପ୍ରସିଦ୍ଧ। ମାଖନ ଗରମକରିବା ପାଇଁ ରଖାଗଲା। ଘିଅ ଗରମ ହୋଇ ଏକ ସୁନ୍ଦର ଗୋଲାପୀ ରଙ୍ଗ ଆସିଗଲା। ରାମରାୟ କହିଲା, ଏମିତି ଭଲ ଘିଅ ସାରା ଗସ୍ତକାଳରେ କେଉଁଠି ହେଲେ ଦେଖିନାହିଁ। ଯିବା ଆଗରୁ ଏ ମାଖନ ଦେଇଥିବା ଗଉଡ଼ଠାରୁ ଦି'ଟଙ୍କା 'ଇନାମ' ଝଡ଼ାଇବା ଦରକାର।' ଏହାଶୁଣି କଥାଟିଏ ଲଛସ୍ଵାର ମନକୁ ଆସିଲା। ସେ କହିଲା, 'ରାମର୍ଣ୍ଣା, ଏମିତି ଘିଅରେ ପାନ ଛାଣିଲେ କେମିତି ମଜା ହୁଅନ୍ତା।'* ଖୋଜି ଦେଖିଲା ବେଳକୁ ତା' ଆଗ ଦିନରୁ 'ଅମ୍ୱାଡ଼ି'** ପାନ ସରିଯାଇଛି। ରାମରାୟ ପିଅନକୁ ପାନ ଆଣିବା ପାଇଁ ଝପଟାଇ ଦେଲା। ସାରା ଗାଁ ଘୁରିଆସିଲା, କିନ୍ତୁ କେଉଁଠି ହେଲେ 'ଅମ୍ୱାଡ଼ି' ପାନ ନମିଳିବାରୁ 'ହରକରା'ଟି କଳାପାନ ଘେନି ଫେରିଆସିଲା। ଟିକିଏ ଆଗରୁ ଜାଣିଥିଲେ 'ହରକରା'କୁ ପଠାଇ ପାଖ ଗାଁରୁ ସେ ପାନ ଅଣାଯାଇପାରିଥାନ୍ତା ଏଣେ ଘିଅ ଫୁଟିବାକୁ ଲାଗିଛି।

ରାମରାୟ ପାଟିକରି ଉଠିଲା, 'ପକା, କଳା ପାନ ହିଁ ପକା। ଶଳା, ଆମର କଣ ଯାଉଛି ?' ତାର ସାଙ୍ଗମାନେ 'ମୋ ପାଇଁ ଗୋଟିଏ ମୋ ପାଇଁ ଗୋଟିଏ' କହି ଠେଲାପେଲା ହୋଇ ଘିଅରେ ପଚିଶ ତିରିଶଟି ପାନ ଛାଡ଼ିଦେଲେ। ଘିଅର

* ଘିଅ ମରାଗଲାବେଳେ ଦକ୍ଷିଣ ଭାରତରେ ପାନ ପକାଇ ତହିଁରେ ଭାଜି ନିଅନ୍ତି ଓ ସେଇ ଭଜା ପାନକୁ ଖାଆନ୍ତି।

** ଏକଜାତୀୟ ପାନ।

ସୁଗନ୍ଧ ସହ ପାନର ସୁଗନ୍ଧ ଚାରିଆଡ଼େ ଭରିଗଲା । ଚୂଲିରୁ କଡ଼େଇ ଓହ୍ଲାଗଲା । ଘିଅର ଗରମ କମି ଆସିଲା । ଫେଣ ଉଠୁଥାଏ । ଆରେ, ଏକଣ ! ଘିଅତକ ସାଗୁଆ ହୋଇଗଲା କାହିଁକି ?

ରାମରାୟ କହିଲା, 'ଘିଅ କଣ କରିବ ? ଶହେପାନ ପକେଇ ଦେଲ ? ତହୁଁ ଲଛମ୍ବା ପାଟିକରି ଉଠିଲା, 'ଆଚ୍ଛା, ମାଖନରେ ସେ ଆଉ ବିଷ ଦେଇନାହିଁତ ?'

କଥାଟା ଶୁଣିଲାମାତ୍ରେ ହିଁ ରାମରାୟ ହସରେ ଫାଟିପଡ଼ି ଚିତ୍କାର କଲା 'ଡାକ ତାକୁ !' 'ହରକରା' ଆସିଲାମାତ୍ରେ ତାକୁ କହିଲା, 'ଯା, ମାଖନ ଦେଇଥିବା ସେ ଲୋକକୁ ଡାକି ଆଣ । ସାଙ୍ଗରେ ସେ ଗୌଡ଼କୁ ମଧ୍ୟ ଡାକି ଆଣିବୁ ।'

ବିଚରା ବୋକା ଖାଇବସିଥିଲା । ହତବମ୍ଭ ହୋଇ ଖାଇବା ଜାଗାରୁ ଉଠି ଆସିଲା । ଗୌଡ଼ ଆଗରୁ ଆସି ଠିଆ ହୋଇଥାଏ । ରାମରାୟ ପଚରାଉଚୁରା ଆରମ୍ଭ କଲା ।

'ଆଚ୍ଛା ବାବୁ, ତୁମ ନାଁ କଣ ?

'ମୋ ନାଁ ତଓନମ୍ବା, ସାହେବ ।'

'ଏଇ ଗାଁରେ ଘର ?

'ଆଜ୍ଞା ହଁ ।

ତାହେଲେ, ତୁମେ ଆମକୁ ବିଷଦେବ ଭାବିଥିଲ ?'

'ଆଜ୍ଞା କଣ କହୁଛନ୍ତି ?' ତଓନମ୍ବା ବୁଝିନପାରି ପଚାରିଲା । ରାମରାୟ ଏକାବେଳକେ ରାଗିଉଠି କହିଲ ।

'ବିଷ ! ବୁଝିଲୁ ବିଷ......ତୋ ମାଇପକୁ.... । ଭାବିଛୁ ଆମେ ବିଷଖାଇ ମରିଯିବୁଁ ? ଏଇନେ ପାଗଲା କୁକୁରକୁ ଖୁଆଇ ଦେଖେଇ ଦେଉଛି ରହ । ମାଖନରେ ବିଷ ମିଶାଇ ସବୁ ଅଫିସରଙ୍କୁ ମାରିଦେବାକୁ ବସିଥିଲୁ । .....ସତ କହ.....ବଦମାସ କାହାଁକା ! ଦେଖ ସେ କରେଇକୁ ଦେଖ ।'

ଆଚମ୍ବିତ ହୋଇ ତଓନମ୍ବା କରେଇକୁ ଉଙ୍କିମାରି ଦେଖିଲା । ଘିଅର ସାଗୁଆ ରଙ୍ଗ ଦେଖି ହତବାକ୍ ହୋଇପଡ଼ିଲା ।

'ବାପ୍‌ରେ, ଏ କଣ ହୋଇଛି, ମୁଁ ତ କିଛି ବୁଝିପାରୁ ନାହିଁ ଆଜ୍ଞା ।

ତୁ ବୁଝିବୁ କେମିତି ? ତୁ-ତ ବଡ଼ ନ୍ୟାୟବନ୍ତ ଲୋକ, ନୁହଁ ? ସରକାରୀ ଅଫିସରଙ୍କୁ ବିଷ ଦେଲାବାଲା ! ହଁରେ, ଅଫିସରମାନଙ୍କୁ ମାରିପକାଇ ବଡ଼ ହେବୁ ? ଭଲ କଥା । ଦି ଦିନ ଜେଲ କାଟିଲେ ସବୁ ଠିକ୍ ହୋଇଯିବ । ଲକ୍ଷ୍ମଣ ରାଓ, ଅଭିଯୋଗ ଲେଖାଇନିଅ । ଥାନାର ଚାଟୀଲ ସାହେବ ଏଠାରେ ଅଛନ୍ତି ଗୌଡ଼ବାବୁ ତୁମକୁ ସାକ୍ଷୀ ଦେବାକୁ ପଡ଼ିବ ।'

'ବାପାରେ, ମୋତେ କାହିଁକି ଜେଲକୁ.... '

'ଗୌଡ଼ବାବୁ, ତାକୁ କହିଦିଅ ସେ କଣ କରିଛି ।'

---

ହରକାର – ପିଅନ

ଗୌଡ଼ା – ଚାଷୀ ।

ଗଉଡ଼ ତଓନପ୍ପାକୁ ବୁଝାଇ ଦେଲା,– ସରକାରୀ ଅଫିସର ଅଧିକ ଟିକସ ବସାଇଥିବାରୁ ସେ ବିଷଦେଇ ମାରିବାକୁ ଚେଷ୍ଟାକରୁଥିଲା । ତେଣୁ ତା'ଉପରେ ଫୌଜଦାରୀ ମୋକଦ୍ଦମା କରାଯାଇଛି ....। ହତବମ୍ଭ ତଓନପ୍ପା ରାମରାୟର ପାଦ ଧରି ପକାଇଲା । ରାମରାୟ ଗୌଡ଼କୁ ଆଙ୍ଗୁଳି ଦେଖାଇ ପଚିଶ ଟଙ୍କା ଜୋରିମାନା ଦେବାକୁ କହିଲା । ତଓନପ୍ପା ପବନରେ ଉଡ଼ିକରି ଗଲାପରି ଦଉଡ଼ି ଘରକୁ ଗଲା । ଏଠୁ ଦଶ, ସେଠୁ ପାଞ୍ଚ, ଘରୁ ଦଶ– ଏପରି ଆଣି ଏକାଠି କରି ଫେରି ଧାଇଁ କରି ଆସିଲା; ରାମରାୟ ପାଦତଳେ ଟଙ୍କା ରଖିଦେଇ ହାତଯୋଡ଼ିଲା । ଗମ୍ଭୀର ହୋଇ ରାମରାୟ କହିଲା, 'ଖାଲି ଦଣ୍ଡ ଦେଇଦେଲେ ଚଳିବ ନାହିଁ । ତଓନପ୍ପା, ନିଜର କୁଳଦେବତା ନାଁରେ ଶପଥ କରି କହ, ଫେର ଏକାମ କେବେ କରିବୁ ନାହିଁ ଦେ, ନିୟମ କର ।' ଛାତି ଉପରେ ଦୁଇ ହାତ ରଖି ତଓନପ୍ପା ଶପଥ କଲା, ଏବଂ ଏକ ବଡ଼ ସଙ୍କଟରୁ ଉଦ୍ଧାର ପାଇଗଲା ଭାବି ସେଠାରୁ ବାହାରି ଆସିଲା ।

ଗୌଡ଼କୁ ଘରକୁ ପଠାଇ ଦେଇ ତଓନପ୍ପାର ନାମନେଇ ତାକୁ ଆଶୀର୍ବାଦ କରୁକରୁ ଅଫିସରମାନେ ସେଇ ଘିଅ ତିଆରି ଖାଦ୍ୟରେ ଭୁରି ଭୋଜନ କଲେ । ପଚିଶ ଟଙ୍କାକୁ ଦକ୍ଷିଣା ମନେକରି ରାଜିରୁଜି ହୋଇ ସମାନ ଭାବରେ ବାଣ୍ଟିନେଲେ ।

କିଟ୍ଟୀ ହାତରେ ତିନିଟଙ୍କା ପଡ଼ିଲା । ସେ ଲାଜଛାଡ଼ି 'ଯେତିକି ମିଳୁଛି ମିଳୁ' ଭାବି ଚୁପ୍‌ଚାପ ତାକୁ ପକେଟରେ ପକାଇଦେଲା ।

ସହରକୁ ଫେରି ଆସିବା ପରେ କଚେରୀରେ ରାମରାୟ କିଟ୍ଟୀର ପିଠି ଥାପୁଡ଼ାଇଦେଇ ପ୍ରଶଂସା କରି କହିଲା, 'ତୁମେ ଯେ ପ୍ରକୃତରେ ପୁରୁଷ । ଆମ ପରି ଲୋକ ସୁଦ୍ଧା ପହିଲି ଗପ୍ପରେ ଏତେ ଗହୀରକୁ ଯାଇନଥିଲା । ତୁମେ ରେକର୍ଡ଼ ବ୍ରେକ କରି ଦେଲ ।' ଅନ୍ୟମାନେ କିଟ୍ଟୀକୁ କହିଲେ, 'ତମପରି ହିମ୍ମତ ଆମଠାରେ ନାହିଁ ।' କିଟ୍ଟୀ ଭାବିଥିଲା ଯେ ଅନ୍ୟମାନେ ଯାହା କରୁଛନ୍ତି ସେ ମଧ୍ୟ ସେଇଆ କରୁଛି । ମାତ୍ର ଏବେ ସେ ବୁଝି ପାରିଲା ଯେ ସେ ସଭିଙ୍କଠାରୁ ଆଗୁଆ ହୋଇପଡ଼ିଛି ।

କିଛି ଭୁଲ କରିପକାଇ କିଟ୍ଟୀ ଯେତେବେଳେ ଅନ୍ୟମାନଙ୍କଠାରୁ ଗାଳିଖାଏ ସେତେବେଳେ ତାର ଏକ ଗୁପ୍ତ ଅଭିମାନ ଥାଏ ଯେ ସେ ଯେତେ ଖରାପ ହେଉନାଁ କାହିଁକି ଏ ଅଫିସରେ ଜର୍ଜକୁ ଛାଡ଼ିଦେଲେ ବାକି ସଭିଙ୍କ ଅପେକ୍ଷା ସେ ଅନେକ ଭଲ । ଏ ଚିନ୍ତା ତାକୁ ନୈତିକଭାବରେ ରକ୍ଷା କରୁଥିଲା । ମାତ୍ର ଏହି ଅଭିମାନ ଯେ ମିଥ୍ୟା, ତାହା ଏବେ ସପ୍ରମାଣ ସିଦ୍ଧ ହୋଇଗଲା । ନୀତିଗତ ଭାବରେ ସେ ଯେ ରାମରାୟଠାରୁ ନ୍ୟୁନ, ଏକଥା ତାର ମନ ଏବେ ସୁଦ୍ଧା ମାନିବାକୁ ପ୍ରସ୍ତୁତ ନୁହଁ । ଅଥଚ ବାସ୍ତବରେ ଏକଥା ଅସ୍ୱୀକାର କରାଯାଇ ନପାରେ । ତା'ରି ଚାରିପାଖେ ବସିଥିବା ନୀତିହୀନ ଲୋକମାନଙ୍କର ମଧ୍ୟ ସେମାନଙ୍କର ଅଜାଣତରେ ଏକ ଏକ ନୀତି ରହିଛି । ସେଇଟି କଣ ତା' ପାଇଁ ପ୍ରଯୋଜ୍ୟ ହୋଇନପାରେ ?– ତା' ମନରେ ବାରଂବାର ଏ ପ୍ରଶ୍ନ ଜାଗିଲା । ମାତ୍ର ତାକୁ କୌଣସି ଉତ୍ତର ମିଳିଲା ନାହିଁ ।

ରତ୍ନା ପାଖକୁ ଯିବାକୁ ତାକୁ ଭୟ ଲାଗେ। ମା' ସହ କଥା କହିବାକୁ ଲାଜ ମାଡ଼େ। ଏପରି ହେଲା ଯେ ପୂଜା କଲାବେଳେ ଛୁଇଁବାଦ୍ୱାରା ଶାଳଗ୍ରାମ ମାରା ହୋଇଯିବକି ବୋଲି ସେ ଭାବିଲା। ଜୀବନ ତାକୁ ନିରସ ବୋଧହେଲା। ଭଲ ନିଦ ହୁଏନାହିଁ ନିଦରେ କଥା କହିବା ଅଭ୍ୟାସ ବଢ଼ିଗଲା। ପ୍ରାୟତଃ ଚୁପଚାପ୍ ବସିରହିବାକୁ ଇଚ୍ଛା ହୁଏ। ଏଇପରି ତାମସିକ ମୌନତାରୁ ତାକୁ ଉଠାଇ ଯଦି କେହି ତା'ସହ କଥା କହିବାର ପ୍ରୟାସ କରେ ତେବେ ତାର ରଜଗୁଣସବୁ କ୍ରୋଧରେ ପରିଣତ ହୋଇଯାଏ।

କଚେରୀରେ ତାର ପରାକ୍ରମର କୀର୍ତ୍ତି ବ୍ୟାପିବାକୁ ସମୟ ଲାଗିଲାନାହିଁ। ଅନ୍ୟମାନେ ଯେତେବେଳେ ରାମରାୟର ଶିକାର ହୋଇଥିଲେ, ସେତେବେଳେ କାହିଁକି କେଜାଣି, ଏତେଟା ଚହଳ ପଡ଼ିନଥିଲା। କିନ୍ତୁ ନୈତିକ ଦୁରାଭିମାନ ହେତୁ ବା ତାର ବୟସର ଅଳ୍ପତା ହେତୁ, ଅଥବା ପଶ୍ଚାତ୍ତାପ କରୁଥିବାର ମୂର୍ଖତା ହେତୁ ଲୋକମାନଙ୍କ ମଧ୍ୟରେ ତା' ପାଇଁ ବହୁତ କୌତୂହଳ ଦେଖା ଦେଲା।

ତାର ଭୟ ହେଲା, ହୁଏତ ଏକଥା ଜର୍ଜର କାନଯାଏଁ ଯିବ। ତେଣୁ ସେ ଭାବିଲା ପରୋକ୍ଷରେ ଯାଇ କଥାଟି ପହଞ୍ଚିବା ଅପେକ୍ଷା ସେ ଯଦି ସିଧାସଳଖ କହିଦିଏ ତେବେ ଭଲ ହେବ। ତାଛଡ଼ା ନିଜର ମନକଥା କହିବା ପାଇଁ ଜର୍ଜଛଡ଼ା ସଂସାରରେ ତାର ବା ଆଉ କିଏ ଅଛି? ଦିନେ ସେ ସବୁ କିଛି ଖୋଲି କରି ଜର୍ଜ ଆଗରେ କହିଲା। ନିଜର ତତ୍‌କାଳୀନ ମାନସିକ ଅବସ୍ଥାକୁ ଯଥାସମ୍ଭବ ସ୍ପଷ୍ଟ କରି ଦେଖାଇଲା। କଥାଟା ଅଫିସ୍‌ରେ ରାଷ୍ଟ୍ରହୋଇଯାଇଥିଲେ ସୁଦ୍ଧା ଜର୍ଜକୁ କେହି କହିନଥିଲେ। ତାର ମାନସିକ ଦୁଃଖ ନିମନ୍ତେ ଜର୍ଜ ପାଖରେ କୌଣସି ଉତ୍ତର ନଥିଲା। ତା'ଠାରେ ଉପଦେଶ ଦେବାର ସାମର୍ଥ୍ୟ ନଥିଲା। ସେ କେବଳ ଆପଣାର ନିର୍ମଳ ଚରିତ୍ରକୁ ଅନ୍ୟର ସମ୍ମୁଖରେ ଧରିରଖି ପାରୁଥିଲା। କିନ୍ତୁ ମାନସିକ ଦୁଃଖକୁ ସେ ବୁଝି ପାରିଲାନାହିଁ। ସେ ସାବଧାନ କରି ଏତିକି କେବଳ କହିଲା, 'ତୁମେ ତୁମର ସ୍ୱାସ୍ଥ୍ୟ ପ୍ରତି ନଜର ଦିଅ।'

# 24. ଦେଶାଇବାବୁଙ୍କ ସହ ସଂଘର୍ଷ

ରାଘଣ୍ଡା ପାନ ଭାଙ୍ଗୁ ଭାଙ୍ଗୁ ମଝିରେ ଅଟକିଯାଇ କହିଲା, 'ଏମିତି ଉପର ଠାଉରିଆ ହିତାକାଂକ୍ଷୀଙ୍କୁ ବାଟକୁ ଆଣିବା ଦରକାର। ପଇସାପତ୍ର ମାମଲାରେ ଢ଼ିଲା ହୋଇ କିଛି ଲାଭ ନାହିଁ। ଏବେ କାହାରି ମାନ ସଂଭ୍ରମ ଯଦି ଯାଏ ତେବେ ତମରି ଯିବ, ଦେଶାଇ ବାବୁଙ୍କର କଣ ଯିବ? ତୁମ ଘର ଟଙ୍କାକୁ ମାଡ଼ିବସିଛି। ବରପଣି ଟଙ୍କା ମଧ୍ୟ ମାଡ଼ିବସିଛି। ଏମିତି ଭାବରେ ସବୁ କିଛି ବାହାରି ଯିବ, ଆଉ ତୁମେ ଏବେ ସୁଧ ଦେଇଦେଇ ସର୍ବସ୍ୱାନ୍ତ ହୋଇଯିବ। ଏ କେଉଁ ଦେଶର ନ୍ୟାୟ? ତୁମେ କଥା ଉଠାଅ। କଥା ମୋ ଯାଏ ଆସିଲେ ଯାହା କରିବାକୁ ହେବ ଆମେ ଭାବିବା।'

କଥାଟି ହେଲା, ଗଙ୍ଗୱା ବରପଣି ଟଙ୍କାକୁ ନେଇ ଆପଣାର ଟ୍ରେଜେରୀ ରୂପୀ ଦେଶାଇବାବୁଙ୍କ ପାଖରେ ରଖିଦେଇଛି। ବରପଣିର ଭରସାରେ କିଟ୍ଟୀ କରଜ ଆଣିଥିଲା। ବାହାଘରର ଖୁସି ହେତୁ କିଟ୍ଟୀ ମା' ପାଖରେ କିଛି ଓଜର ଆପତ୍ତି ନକରି ନୀରବ ରହିଥିଲା। ଗୋଟିଏ ଦୃଷ୍ଟିରୁ ତାହା ଭଲ ହେଲା। ଭାବିଥିଲା ନିଜ ଦରମାରୁ ଅଳ୍ପ ଅଳ୍ପ କରି ଦେଇ କରଜ ଶୁଝିଦେବ ଏବଂ ଏ ଟଙ୍କାତକ ବଞ୍ଚିଯିବ। ଏଇ ଉତ୍ସାହରେ କିଟ୍ଟୀ ଆପଣାର ବୈବାହିକ ଜୀବନ ଆରମ୍ଭ କଲା। ମୂଳରୁ ପଇସାନେଇ ଗଣ୍ଡଗୋଳ ହୋଇଥିବାରୁ କିଟ୍ଟୀକୁ ଏ ବୋଝ ବଳେଇପଡ଼ିଲା। କେତେ ମାସ କଷ୍ଟ କରି ସେ କିଛି କରଜ ସୁଝିଲା। ତା'ପରେ ଆଉ କଷ୍ଟ ସହିବାକୁ ଇଚ୍ଛା ହେଲାନାହିଁ। ଲାଞ୍ଚ ପଇସାତକ ଚା ପାଣିରେ ଉଠିଯାଏ। ଏମିତି ବର୍ଷ ଦି'ଟାରେ ତାକୁ ସୁଧ ଦେବାପାଇଁ ମଧ୍ୟ ଖରାପ ଲାଗିଲା। ତିନିମାସରେ ଥରେ ସୁଧ ଦେବା ପାଇଁ ଗଲାବେଳେ ଦୁଃଖ ଓ ମନସ୍ତାପରେ ଘରୁ ବାହାରେ। ବାହାଘରର ଉତ୍ସାହ ଏବେ ମରିଗଲାଣି। ଭାବୁଥାଏ, ଅନ୍ତତଃ ତାର କଷ୍ଟ ଦେଖି ମା ନିଜେ ବରପଣି ଟଙ୍କା ଦେଇ ଦେବ। ମାତ୍ର ମା ଏ ବିଷୟରେ କଠୋର ମୌନତା ଧାରଣ କରିଛି।

ରାଘଣ୍ଡାକୁ ଏ ସବୁ ବିଷୟ ମାଲୁମ ଥାଏ। ରତ୍ନା କେବେ କେମିତି ଏ ସବୁ କଥା କହେ। ମାତ୍ର ରାଘଣ୍ଡା ନିଜେ ଏ ବିଷୟରେ ମୁହଁ ଖୋଲିବାକୁ ଚାହୁଁ ନଥିଲା। କଥାଟା କିଟ୍ଟୀ ଉଠାଉ, ସେ ତାରି ଅପେକ୍ଷାରେ ଥାଏ। ଦେଶାଇବାବୁଙ୍କର ବାହାର ଦେଖା ବଡ଼ପଣ ତା' ଆଖିରେ ଯାଏ ନାହିଁ। ତାର ମନେହୁଏ ଯେପରି ଦେଶାଇଙ୍କର ଅଜେୟ ବ୍ୟକ୍ତିତ୍ୱ ତାର ଚଞ୍ଚଳ ପ୍ରବୃତ୍ତିକୁ ପରିହାସ କରୁଛି। ଦେଶାଇଜୀ

ଗଙ୍ଗୁଆର ଇଚ୍ଛାନୁଯାୟୀ ବିବାହର ବର୍ଷକ ପରେ ରାଘଷାକୁ ଡାକି ଦତ୍ତକ ନେବା ବିଷୟରେ କଥାଉଠାଇଲେ। ବିବାହ ପରେ ରାଘଷାର ଇଚ୍ଛା ଶିଥିଳ ହୋଇଯାଇଥାଏ। ସେ କହିଲା, ସାନଝିଅର ବିବାହ ପରେ ଏ କଥା ସେ ଭାବିବ। ଦେଶାଇବାବୁ ଉତ୍ତର ଦେଲେ କଥାକଲାବେଳେ ଏପରି କଥା ହୋଇନଥିଲା। ରାଘଷା କହିଲା, ସେମିତି କହିବାଟା କେବଳ ଲୌକିକତା ମାତ୍ର। କଥାଟା ଦେଶାଇବାବୁଙ୍କୁ ଠିକ୍ ମନେହେଲା। ତଥାପି ସେ ଆଗ୍ରହ ସହକାରେ କହିଲେ, 'ଝିଅ ବାହାଘରରେ ମନଇଚ୍ଛା ଖର୍ଚ୍ଚ କରନ୍ତୁ। ମାତ୍ର 'ଦତ୍ତକ' କାମଟି ହୋଇଯିବା ଦରକାର।' ଏହା ଶୁଣି ରାଘଷା କହିଲା, 'ଆଗେ ବାହାଘର ହୋଇଯାଉ। ତା'ପରେ ସବୁ କିଛି କିଟ୍ଟୀର।' ଏହା ପରେ ଦେଶାଇବାବୁ ନିରୁତ୍ତର ହୋଇଗଲେ। ଏହା ଚାରିବର୍ଷ ତଳର କଥା। ତେଣୁ ଦେଶାଇବାବୁ ଗଙ୍ଗୁଆକୁ ସାନ୍ତ୍ୱନା ଦେଲେ।

ଏହାଦ୍ୱାରା ଦେଶାଇବାବୁଙ୍କର ପୂରା ହାର ହେଲା ନାହିଁ ସତ, ମାତ୍ର ତାଙ୍କର ସ୍ୱାଭିମାନରେ କିଞ୍ଚିତ ଆଘାତଲାଗିଲା। ତା ଛଡ଼ା ତାଙ୍କର ଟିକିଏ ସନ୍ଦେହ ମଧ୍ୟ ହେଲା। ମାତ୍ର ରାଘଷା ଆଗରେ ଗଙ୍ଗୁଆକୁ ବୁଝାଇ କହିଲେ 'ଠିକ୍ କଥା। ଆଉ ବିବାହ ପାଇଁ ଆଉ ବା କେତେ ଦିନ ବାକି! କଥାତ ପକ୍କାହୋଇ ରହିଲା।' ତଥାପି ସେ ରାଘଷାକୁ ପଚାରିଲେ, 'ଆପଣ ଯଦି କଥାଭାଙ୍ଗି ଦିଅନ୍ତି ତେବେ?'

ମନେମନେ ରାଘଷା କହିଲା, 'ଆରେ ରେ ଦେଶାଇ...ତୋର ଏତେ ହିମ୍ମତ ଯେ ତୁ ମୋତେ ଏକଥା କହୁଛୁ!' --ସେଇ ଦିନରୁ ସେ ଦେଶାଇବାବୁଙ୍କୁ ଜାଲରେ ପକାଇବା ପାଇଁ ମଉକା ଖୋଜୁଛି।

ମୂର୍ଖ ଜୋଇଁ ରାଘଷା ପାଇଁ ସୁଯୋଗଟିଏ ଆଣିଦେବାକୁ ଏତେବର୍ଷ ନେଲା! ଯା ହେଉ, ଶେଷରେ କିଟ୍ଟଣ୍ଣା ଏ ସୁଯୋଗ ଦେଲା! ଦିନେ ସେ ଶ୍ୱଶୁର ସହିତ ଦେଖା କରି ବରପଣ ଓ କରଜ ବିଷୟରେ ସବିସ୍ତାର ଶୁଣାଇଲା। କହିଲା, 'ମା'ର ବୁଦ୍ଧି ଉପରେ ମୋର ବିଶ୍ୱାସ ଅଛି, ଏହା ସତ ଯେ ସେ ଯାହା କିଛି କରୁଛି ସବୁ ମୋର ଭଲ ପାଇଁ। କିନ୍ତୁ ମୋତେ ସୁଧ ଦେବାକୁ ପଡୁଛି, ଏଣେ ଜର୍ଜ ପାଖରେ ମିଛ କହିବାକୁ ପଡୁଛି। ତାଛଡ଼ା ମା' ଯେଉଁ ଟଙ୍କା ପଇସା ରଖିଛି, ତାର କିଛି କାଗଜପତ୍ର ନାହିଁ। ଆଜିକାଲି ଯୁଗରେ ସବୁ କାଗଜପତ୍ର ଥାଇ ସୁଦ୍ଧା ଧୋକା ଖାଇଲା ଭଳି ପରିସ୍ଥିତି ଉପୁଜୁଛି। ଆମରି କଚେରିରେ ଆମେ ନିତି ଏ ଘଟଣା ଦେଖୁଛୁଁ। ଦେଶାଇଜୀ ଭାରୀ ଭଲ ଲୋକ। କିନ୍ତୁ ଆଜିକାଲି ଦିନକାଳ ଖରାପ।

କିଟ୍ଟୀକୁ ଦେଶାଇବାବୁଙ୍କ ବିରୁଦ୍ଧରେ ଠିଆ କରାଇବା କଥା ରାଘଷା ମୂଳରୁ ଭାବି ରଖିଥିଲା। ତାର ପ୍ରଥମ କାରଣ ହେଲା, ପୋଷ୍ୟ ନେବା କଥାରେ ଟାଳମଟାଳ କରୁଥିବାରୁ କିଟ୍ଟୀମନରେ ସଂଶୟ ଜାତ ହୋଇଥିବ। ଫଳରେ ଦେଶାଇଙ୍କର ପ୍ରଭାବ ଆହୁରି ବଢ଼ିଯାଇଥିବ। ତାକୁ କମାଇ କିଟ୍ଟୀଙ୍କୁ ନିଜହାତକୁ ଆଣିବାକୁ ପଡ଼ିବ। ଏଇ ମଉକାରେ ସେ ଆପଣା ସ୍ଥିତିକୁ ମଜବୁତ କଲା। କଥା ଆଗେଇନେଇ କହିଲା, 'କିଟ୍ଟଣ୍ଣା, ତୁମକୁ ମୁଁ ଧୋକା ଦେଉନାହିଁ। ମୋ ପାଖରେ ରତ୍ନା ଓ ତୁମ ଭିତରେ

କିଛି ଫରକ ନାହିଁ। ମୋ ପାଖରେ କିଛି ପାତରଅନ୍ତର ନାହିଁ। ତୁମେ ମୋର ପୁଅ ପରି। ପ୍ରଥମ କଥା ହେଲା, ଦେଶାଇବାବୁଙ୍କ ସହିତ କଳିକରି ଲାଭ ନାହିଁ। ଯଦି ସେ ଦେଇଦିଅନ୍ତି, ତେବେ ଭଲ, ନ ହେଲେ ଖୋଲାଖୋଲି କଥା ହେବାକୁ ପଡ଼ିବ।' ଏଇ ଉପଦେଶ ଦେଇ ତାକୁ ଦେଶାଇବାବୁଙ୍କ ସହ ଖୋଲାଖୋଲି କଥା ହେବାପାଇଁ ଉସୁକେଇଲା। ଏହା ପଛରେ ତାର ଆନ୍ତରିକ ଇଚ୍ଛା ଥାଏ ଯେ କରଜ ପାଇଁ ଦେଶାଇଜୀ ଏବଂ କିଟ୍ଟୀର ଯଦି କଳି ହେବ ତେବେ ସେ ମଧ୍ୟସ୍ଥ ହୋଇ ନିଜର ରାୟ ଶୁଣାଇଦେବ।

ଦି ଦିନରେ ନିଜର ସବୁ ଧୈର୍ଯ୍ୟ ଠୁଳ କରି କିଟ୍ଟୀ ଦେଶାଇଜୀଙ୍କ ଘରକୁ ଆସିଲା। ଦେଶାଇବାବୁଙ୍କ ସହ କଥାବାର୍ତ୍ତା ହେବାକଥା ମା'କୁ କହିନଥାଏ।

ଦେଶାଇବାବୁ ବସିବସି ପାଞ୍ଜି ଦେଖୁଥିଲେ। ହସହସ ହୋଇ କିଟ୍ଟୀକୁ ସ୍ୱାଗତ କଲେ। ଉପରଠଉରିଆ ବିନୟଭାବ ଦେଖାଇ କିଟ୍ଟୀ ତାଙ୍କର ଭଲମନ୍ଦ ପଚାରିସାରି ନିଜର ଋଣ ବିଷୟ ଉପସ୍ଥାପନ କଲା।

ଦେଶାଇଜୀ ପ୍ରଶ୍ନ କଲେ, 'କେତେ ଋଣ ଆଣିଥିଲ ?'

'ପାଞ୍ଚଶହ ଟଙ୍କା।'

'ମୋତେ ମାଗିଥିଲେ ମୁଁ ଦେଇ ନଥାନ୍ତି ? ଛାଡ଼। ଇଏତ ଚାରିପାଞ୍ଚ ବର୍ଷର କଥା ହେଲାଣି, କେତେ ସୁଝି ସାରିଲଣି ?'

'ପଇସା ବଞ୍ଚୁନାହିଁ। ମୂଳ ଟଙ୍କାରୁ ଚାଳିଶ ଟଙ୍କା ସୁଝିଛି। ସୁଧ ଦେଇଆସୁଛି।

ବ୍ୟଥିତହୋଇ ଦେଶାଇବାବୁ କହିଲେ, 'ଏକଥା କହିବା ପାଇଁ ତୁମକୁ ଲାଜ ଲାଗୁନାହିଁ ?'

କିଟ୍ଟୀ ବୁଝିପାରିଲାନାହିଁ ଯେ ପଣ ଟଙ୍କା କଥା କେମିତି ଉଠାଇବ। ଦେଶାଇବାବୁ ପୁଣି କହିଲେ, 'ବେଶ୍ ପିଲାତ ! ଭଲ ଗାର୍ହସ୍ଥି ସମ୍ଭାଳିବ ଭାବି ମୁଁ ମଝିରେ ହୋଇ ତୁମ ପାଇଁ ଅଦ୍ଭବହୁତ କଲି; ଆଉ ତୁମକୁ ନିଜସ୍ତ୍ରୀକୁ ସୁଦ୍ଧା ଅକ୍ତିଆରରେ ରଖି ଆସିଲାନାହିଁ। ତୁମେ ନିଜ ମା'କୁ ଦିନେ ହେଲେ ପଚାରିଛ ? —ଯେ, ମା' ଖାଇଛୁ ନାଁ ନାହିଁ ?' ଚାକିରି କରୁଚ, ପାଞ୍ଚଶହ ଟଙ୍କା ସୁଝିପାରିଲ ନାହିଁ ! ଏଥିରେ ମୁଁ ବା କଣ କହିବି ?'

ଲାଜ ଛାଡ଼ି କିଟ୍ଟୀ କହିଲା, 'ମୁଁ ଭାବିଥିଲି ପଣଟଙ୍କା ମିଳିବା ମାତ୍ରେ ଋଣ ସୁଝିଦେବି। ଅଥଚ ଏବେ ସୁଧ ଗଣି ଚାଲିଛି। ଚାକିରି ଅଛି ଭାବି ଯିଏ ଋଣ ଦେଇଥିଲେ ସେ ବା କେତେ ଦିନ ଚୁପକରି ରହିବେ।'

'ତେବେ ଚାକିରୀ କରୁଚ କାହିଁକି ? ଛାଡ଼ି ଦିଅ। କିଛି ନାଁ କିଛି ପାଇଟି କରି ତୁମ ମା' ତୁମକୁ ଆଉ ତୁମ ସ୍ତ୍ରୀକୁ ଖୁଆଇବ।'

କିଟ୍ଟୀ କଥାର ଅର୍ଥ ବୁଝିପାରି ଦେଶାଇବାବୁ ରାଗିଗଲେ। ତାଙ୍କର ରାଗଦେଖି କିଟ୍ଟୀ ବିବେକ ପାଶୋରି ଭାବିଲା, ଆଜି ଖରାପ ବେଳାରେ ଶ୍ୱଶୁରଙ୍କ ଶିକ୍ଷାର ଉପଯୋଗ କଲି।

'ଏବେ ଆପଣ ଯଦି ଚାରିଶହ ଷାଠିଏ ଟଙ୍କା ଦିଅନ୍ତେ ତେବେ କରଜ ସୁଝି ଦିଅନ୍ତି। ଦରମାରୁ ଆପଣଙ୍କୁ ଦେଇ ଦେଉଥିବି। ମଝିରେ ହୋଇଥିବା ଲୋକଟିର ଦାୟିତ୍ୱ ଛିଣ୍ଡିଯାନ୍ତା।'

'ମୂଳରୁ ଏ ଚିନ୍ତା କଲା ନାହିଁ କାହିଁକି? ତା ଛଡ଼ା ମା' ତୀର୍ଥ କରିଗଲା ବେଳର ପଇସା ତୁମେ ସୁଝିଛ? ସେକଥା ଯାଉ, ଏବେ ଏଠାରୁ ନେଇ ସେଠାରେ ଭରିବାରେ ବା ଫାଇଦା କଣ?'

'ଫାଇଦା କିଛି ନାହିଁ।'

କିଟୀର ସନ୍ଦେହ ହେଲା, ତାର ଶ୍ୱଶୁରର ଉପଦେଶ ବିଷୟରେ ଦେଶାଇବାବୁ ହୁଏତ ଅଭାସ ପାଇଯାଇଛନ୍ତି। ଦେଶାଇଜୀ ମୂଳରୁ ସିଦ୍ଧାନ୍ତ କରିଥାନ୍ତି ଯେ ପଇସାପତ୍ର ମାମଲାରେ ସେ ଏ ଶ୍ୱଶୁର ଜୋଇଁଙ୍କ ମଝିରେ ପଡ଼ିବେ ନାହିଁ। ସେ ବିଷୟରେ ଏବେ ତାଙ୍କର ଆଲୋଚନା କରିବାର ଆବଶ୍ୟକତା ନାହିଁ। ନିରୁପାୟ ହୋଇ କିଟୀ ପୁଣି କହିଲା,

'ମୁଁ ମୂର୍ଖଟିଏ ଯାହା ବାହା ହେଉଥିଲି! ବାହାଘର ପାଇଁ କରଜ କଲି, କିଛି ନ ହେଲେ ବରପଣ ଟଙ୍କାତକ ମୋ ହାତକୁ ଆସିବା ଉଚିତ ଥିଲା।'

ଦେଶାଇବାବୁ ମନେମନେ ଅସନ୍ତୁଷ୍ଟ ହୋଇ ପଡ଼ିଲେ। ଟିକିଏ ସଳଖି ବସି ଆଗକୁ କିଟୀ କଣ କହୁଛି ଅପେକ୍ଷା କଲେ।

ଟିକିଏ ଦୋଦୋପାଞ୍ଚ ହୋଇ ଶେଷରେ କିଟୀ କହିଲା, 'ଶୁଣୁଛି ବରପଣ ଟଙ୍କା ଓ ଆଗର ହଜାରେ ଟଙ୍କା ମା' ଆପଣଙ୍କ ପାଖରେ ରଖିଛି।'

'ଖବରଦାର! କଣ ଭାବିଛ?'

'ନାଁ ନାଁ, ମୁଁ ଆପଣଙ୍କୁ ମାଗୁନାହିଁ। କିନ୍ତୁ କଥାଟା ସତ, ସେ ଆପଣଙ୍କ ପାଖରେ ରଖିଛି।'

'ନାହିଁ, କିଛି ରଖି ନାହିଁ।' ...ଦେଶାଇବାବୁ ଝାଳନାଳ ହୋଇ ସିଧା ବସିରହି ପାଞ୍ଜି ଓଲଟାଇବାକୁ ଲାଗିଲେ।

ସେ ଆଉ କିଛି କହିବେ ଭାବି, କିଟୀ ଦଶପନ୍ଦର ମିନିଟ୍ ଅପେକ୍ଷା କଲା, ମାତ୍ର ସେ ସେମିତି ବସିରହି ପାଞ୍ଜି ଦେଖିବାକୁ ଲାଗିଲେ। ମୁହଁ ସୁଦ୍ଧା ହଲିଲା ନାହିଁ।

କଠୋର ମୌନତା ଭାଙ୍ଗି କିଟୀ କହିଲା 'ଆଚ୍ଛା, ମୁଁ ତେବେ ଆସୁଛି।'

'ହୁଁ।'

ରାଗରେ ଦୁମ୍ ଦୁମ୍ କରି କିଟୀ ଦୁଆର ମୁହଁଯାଏ ଗଲା। ଥରେ ଅହଙ୍କାର ଭାଙ୍ଗିଗଲାପରେ ଏଯାଏଁ କଥା କହିପାରିନଥିବା ହେତୁ ତାର ସବୁଶକ୍ତି ମୁଣ୍ଡକୁ ଗରମ କରି ଦେଉଥାଏ। ଏତିକି ବେଳେ ଆଉ କଥାଏ ମନକୁ ଆସିଲା। ଠିଆ ଠିଆ ଦୁଆର ମୁହଁରୁ କହିଲା,

'ମୋଠୁ ଆପଣ ନିୟମ କରାଇନେଇଥିଲେ ଯେ ମୁଁ ମା' ଠୁ ଅଲଗା ହେବିନାହିଁ, ମାମୁଁଙ୍କୁ ନିୟମ କରାଇ ନେଇଥିଲେ ସେ ପୋଷ୍ୟ କରି ମୋତେ ନେବେ। ଏବେ

ସଭିଙ୍କ ଆଗରେ ଆପଣ ନିୟମକରି କହନ୍ତୁ ଯେ ମା' ଆପଣଙ୍କଠି ପଇସା ରଖି ନାହିଁ।'

'ଦରକାର ପଡ଼ିଲେ କରିବି।' ଦେଶାଇଜୀ ଉତ୍ତର ଦେଲେ।

ସେମିତି ଦରକାର ପଡ଼ିଲେ ଭଗବାନଙ୍କ ସହ ମୁକାବିଲା କଲାପରି କଠୋର ସାହସ ତାଙ୍କଠାରେ ଅଛି। ଆଉ କିଛି ନକହି କିଟ୍ଟୀ ଦୁଆର ଅତିକ୍ରମ କରିବାକୁ ଯାଉଛି, ଦେଶାଇବାବୁ ତାକୁ ଡାକିଲେ ଓ ବିଷଣ୍ଣ ହସି କହିଲେ, 'କୃଷ୍ଣ, ଏଆଡ଼େ ଆସ, ତୁମକୁ ଗୋଟିଏ ପୁରୁଣା କଥା କହେଁ। ତା' ହେଲେ ତୁମେ ଜାଣିପାରିବ। ଆଗେ ଧାରୱାଡ଼ର 'ହୋସାୟଲ ପୁରରେ' ଆମର ଘରଟିଏ ଥିଲା। ମୁଁ ବାରଣ କରିବା ସତ୍ତ୍ୱେ ମଧ୍ୟ ମୋ ବାପା ତାକୁ ବିକ୍ରୀ କରିଦେଲେ। ସେଥିପାଇଁ ମୁଁ ଆଜିଯାଏଁ ତାଙ୍କର ଶ୍ରାଦ୍ଧ ଦିଏନାହିଁ। ତୁମେ ଜାଣିରଖିବା ଦରକାର, ତେଣୁ କହିରଖିଲି।'

କଥାଟିକୁ ବୁଝିବା ପାଇଁ କିଟ୍ଟୀକୁ ଦଣ୍ଡେ ଲାଗିଲା। ସେ ପୁଣି ଯିବାକୁ ବାହାରିଛି, ଦେଶାଇଜୀ ଫେର ତୀରଟିଏ ଛାଡ଼ିଲେ –

'କଥାଟା ତୁମ ଶ୍ୱଶୁରଙ୍କୁ କହିଦେବ, ତା' ହେଲେ ସେ ମଧ୍ୟ ବୁଝିପାରିବେ।'

ଦେଶାଇ ବାବୁଙ୍କର ଏକଥା ଶୁଣି ରାଘପ୍ପା କହିଲା, 'ତା ହେଲେ ଆଜିଠୁ ଦେଶାଇଜୀ ଓ ମୋ ଭିତରେ ଯୁଦ୍ଧ ଆରମ୍ଭ ହୋଇଗଲା।' କିଟ୍ଟୀର କଳିକୁ ଡର। 'ତୁମେ ଚୁପ୍‌ରହ, ମୁଁ ଯାହା ପାରିବି କରିବି। ସଭିଏଁ ଏକଥା ଜାଣନ୍ତି ଯେ ରାଘପ୍ପାକୁ ରଗେଇବା ଲୋକ ବର୍ତ୍ତିରହିନାହିଁ। ଦେଶାଇବାବୁ କଥାଟା ଜାଣିଯିବା ଉଚିତ।' ଏହା କହି ରାଘପ୍ପା ନିଶ ମୋଡ଼ି ଦେଲା।

# 25. ରାଘପ୍ପାର ଦୋ ମୁହାଁ ଚେହେରା

ଏ ପାଞ୍ଚଛଅ ବର୍ଷ ମଧ୍ୟରେ ରାଘପ୍ପା ଅନେକ ବଦଳିଯାଇଛି । ଏହାର ମୁଖ୍ୟକାରଣ ମହବୁବଜାନର ମୃତ୍ୟୁ ବୋଲି କୁହାଯାଇପାରେ । ତାର ମୃତ୍ୟୁ ପରେ ରାଘପ୍ପାର ଜୀବନପ୍ରତି ଆକର୍ଷଣ କମିଯାଇଛି । ଦେଶାଇବାବୁଙ୍କୁ କାବୁ କରିବା ପାଇଁ ସେ ଚେଷ୍ଟା କରୁଥିଲା । ତାଙ୍କୁ ଛୁଇଁ ହେଲାନାହିଁ, ଅଥଚ ଆପଣାର ମହବୁବ ଚାଲିଗଲା ।

ମହବୁବର ମୃତ୍ୟୁ ଏକ କାହାଣୀ । ଏକଥା ସଭିଏଁ ଜାଣିଥିଲେ ଯେ ଏକାଧାରରେ ମାସେ କାଳ ନାଟକ କମ୍ପାନୀରେ କାମ କରିବାର ଶକ୍ତି ତା'ଠାରେ ନଥିଲା । ରାଘପ୍ପାକୁ ଦେଇଥିବା କଥା ଅନୁସାରେ ପରମେଶ୍ୱର କେବେ ନିଜତରଫରୁ ମହବୁବକୁ ପିଇବା ପାଇଁ ଜୋର୍ କରୁନଥିଲା । କିନ୍ତୁ ଏହା ସତ, ସେ ସମୟରେ ମହବୁବ ନିଜେ ମାଗିକରି ପିଉଥିଲା । ଅନେକ ଦିନରୁ ତାର ରାତି ଜାଗିବା ଅଭ୍ୟାସ ନାହିଁ । ଯଥାପୂର୍ବ ବାନ୍ତି, ହୃଦୟଶୂଳ ଆରମ୍ଭ ହୋଇଗଲା । ଶ୍ୱାସ ଓ ରକ୍ତଚାପ ବଢ଼ିଗଲା । ହୁଏତ ନାଟକ କମ୍ପାନୀର ଅବନତି କାଳ ଆସିଯାଇଥିଲା । ତେଣୁ ପରମେଶ୍ୱର ଭଟ୍ଟର ବିଶେଷ ଲାଭ ହେଲା ନାହିଁ । ଧାଉଁଥାଡ଼ ମୃଗତୃଷ୍ଣା ପରି । କେବେ ଭଲ ରୋଜଗାର ହେବ ଏକଥା କହିବା କଠିନ । ଚିନ୍ତିତ ପରମେଶ୍ୱର ଭଟ୍ଟକୁ ଦେଖି ମହବୁବ ନିଜକୁ କଷ୍ଟ ହେଲେ ହେଁ ପୁଣିଥରେ ଚା ପିଇନେଇ କାମ ପାଇଁ ପ୍ରସ୍ତୁତ ହୋଇଯାଏ । ତାର କଷ୍ଟ ଦେଖି ଭଟ୍ଟ ତାକୁ ହାଲୁକା ଭାବରେ ଗୀତ ଗାଇବା ପାଇଁ କହୁଥାଏ । ଆଗପରି ସେ ନିତି ଯାତ୍ରାରେ ଦି'ଥର ଭାଗନେବାକୁ ଅସମର୍ଥ ହୋଇପଡ଼ିଲା । ମାସଟିଏ କୌଣସି ପ୍ରକାରେ ପାରି କରିଦେଲା ।

ଫେରିବା ମାତ୍ରେ ହିଁ ରକ୍ତଚାପ କାବୁ କରିଦେଲା । ଉଠି ଠିଆ ହେଲାମାତ୍ରେ ମୁଣ୍ଡ ବୁଲାଇଦିଏ । ଯାହା ଖାଇଲେ ଦେହରେ ଲାଗେନାହିଁ । ରାଘପ୍ପା ତାକୁ ହସ୍‌ପିଟାଲକୁ ନେଇଗଲା । ଦି'ମାସ ସେଠାରେ ରହି ଟିକିଏ ଭଲ ଆଡ଼କୁ ଆସିବାରୁ ଫେରି ଆସିଲା । ମାତ୍ର ଦିନ ପନ୍ଦରଟାରେ ପୁଣି ସେଇ ହାଲ । ଏଥର ସେ ହସ୍‌ପିଟାଲ ଯିବାକୁ ମଙ୍ଗିଲା ନାହିଁ । ଆଲ୍ଲାଙ୍କର ଯାହା ଇଚ୍ଛା ଭାବି ରାତିଦିନ ତାଙ୍କୁ ଡାକିବାକୁ ଲାଗିଲା । ଥରେ ଥରେ ଭଗବାନଙ୍କ ଧ୍ୟାନରେ ତା' ଆଖିରୁ ଅବିରଳ ଲୁହ ବୋହିପଡ଼େ । ମନପ୍ରାଣ ଦେଇ ରାଘପ୍ପା ତାର ସେବା କଲା । ମୋ'ରି ପାଇଁ ସେ କେତେ ଦୁଃଖ ନ ସହିଲା ଭାବି ରାଘପ୍ପା ଦୁଃଖରେ ତାକୁ ବଞ୍ଚାଇବା ପାଇଁ ଅଶେଷ ପ୍ରଯତ୍ନ

କଲା । ଦିନେ ଦି'ଦିନ ଛଡ଼ାରେ ହୁବଠୀ ଆସେ, ପାଖରେ ବସି ଔଷଧ ଖୁଆଏ। ଦୁଧ ବା ଫଳ ଖୁଆଏ। ଦଶବାରମାସ ପରେ ଯନ୍ତ୍ରଣା ଆଗ ଅପେକ୍ଷା ବଢ଼ିଗଲା। କଫ ଓ ପିତ୍ତର ଆଧିକ୍ୟ ଦେଖାଦେଲା। ରାଘସ୍ୱା ଧାଇଁଆସିଲା। ସେଠାରେ ମାସଟିଏ ରହିଲା। ଆଉ ତାର ସେବା ଶୁଶ୍ରୂଷା କଲା। ନିଜର ସକଳ ମନୋବଳ ଦେଇ ତାକୁ ବଞ୍ଚାଇବା ପାଇଁ ସେ ମରଣ ସହ ଯୁଝିଲା। ତାର ମନୋବଳ ଦେଖି ମରଣ ଯେପରି ଟିକିଏ ଡରିଗଲା। ପନ୍ଦରଦିନଯାଏଁ ଜୀବନ ଓ ମୃତ୍ୟୁ ମଝିରେ ଝୁଲୁଥିବା ମହବୁବ ଦିନେ ଭୋର ଚାରିଟାବେଳେ ଝାଳରେ ବୁଡ଼ିଗଲା। ତାର ଜ୍ୱର ପୂରା ଓହ୍ଲାଇ ଗଲା।

ଯିବାବେଳେ ତାର ମୁହଁ ଉପରେ ମୃତ୍ୟୁ ଆପଣାର ଛାପ ଛାଡ଼ି ଦେଇଗଲା। ସେ ସମୟରେ ମହବୁବ ଏକାବେଳକେ କୁରୂପା ହୋଇ ପଡ଼ିଥାଏ। ବୟସ ହୋଇଯାଇଥିଲେହେଁ ସୌନ୍ଦର୍ଯ୍ୟ ଓ ଶାନ୍ତିଭରା ମୁହଁ ଉପରେ ଏବେ କଳା ଦାଗ ଦେଖା ଦେଲା। ଗୋଟିଏ ଆଖି ବାହାରିପଡ଼ିଲା। କହରା ରଙ୍ଗର ଭୂର ଏଠୁସେଠୁ ବାଳ ଉଠିଗଲା। ଫାଟିଲା ଫାଟିଲା ହୋଇଗଲା।

ତାର ସ୍ୱଭାବରେ ବିଶେଷ ପରିବର୍ତ୍ତନ ହେଲା ନାହିଁ। ଅନ୍ୟମାନଙ୍କ ଉପରେ ଯଦିବା ଟିକିଏ ଚିଡ଼େ, 'ଯଜମାନ' ସହିତ ସବୁବେଳେ ଯେମିତି ସେମିତି। ମଣିଷର ସହିବା ଶକ୍ତିର ଗୋଟିଏ ସୀମା ଅଛି। ଏତେ ଦିନ ସେବା ଶୁଶ୍ରୂଷା କରିକରି ରାଘସ୍ୱା ଟିକିଏ କ୍ଳାନ୍ତ ହୋଇପଡ଼ିଥାଏ। ତା' ସହ ନିଜର ସ୍ଥିତିକୁ ଦେଖି ମହବୁବ ଡରିବାକୁ ଲାଗିଲା। କାନ୍ଦିକାଟି ରାଘସ୍ୱାର ଗୋଡ଼ଧରି କହିଲା, 'ଏତେ ଦୁଃଖ ସହି କାହିଁକି ମୋତେ ବଞ୍ଚାଇଲ ? ଏଥର ଯଦି କଷ୍ଟ ହୁଏ ତେବେ ମୋତେ ବଞ୍ଚାଇବାକୁ ଚେଷ୍ଟାକରିବ ନାହିଁ। ମୁଁ ଚୁପ୍‌ଚାପ୍ ଆଖିବୁଜି ଦେବି। ଏମିତି ବଞ୍ଚି ପାରିବି ନାହିଁ।'

ରାଘସ୍ୱାକୁ ଭାରୀ କଷ୍ଟ ଲାଗିଲା। ତା' ସହିତ ଅନୁଭବ କଲା ଯେ ମହବୁବର ବଞ୍ଚିରହିବାରେ ସୁଖ ନାହିଁ। ଆଗାମୀ କୋଡ଼ିଏ ଦିନ ଭିତରେ ଶେଷ ସମୟ ଆସି ପହଞ୍ଚିଗଲା। ଯନ୍ତ୍ରପରି ରାଘସ୍ୱା ଲାଗି ରହିଥାଏ। ମାତ୍ର ସହିବାର ମଧ୍ୟ ସୀମା ଅଛି। ଦ୍ୱିତୀୟ ଦିନହିଁ ମହବୁବର ସାନ୍ନିଧ ତାକୁ ଅସୁଖ ଲାଗିଲା। ନିଜ ମନକୁ ଶାନ୍ତ କରିବା ପାଇଁ ସେ ଆଉଜଣେ ଗାୟିକା ଘରକୁ ଯାଇ ଗୀତ ଶୁଣିବାକୁ ବସି ପଡ଼ିଲା। ସେଠାକୁ ଯିବାର ଘଣ୍ଟାକ ପରେ ତାକୁ ମନେ ପକାଇ ପକାଇ ମହବୁବ ଆଖି ବୁଜିଦେଲା।

ପରଦିନ ଏ ଖବର ଶୁଣିବା ମାତ୍ରେ ରାଘସ୍ୱାର ମନେହେଲା, ଯେପରି କିଏ ତାର ପ୍ରାଣରୁ ନିର୍ଯ୍ୟାସ ଚିପୁଡ଼ି ନେଲା। ଏତେଦିନ ଧରି ପାଖେ ପାଖେ ରହିଥିଲେ ସୁଦ୍ଧା ଶେଷ ସମୟରେ ରହିପାରିଲା ନାହିଁ ଭାବି ତାର ମୁଣ୍ଡ ପିଟିଦେବାକୁ ଇଚ୍ଛା ହେଲା। ତା'ପର ପନ୍ଦର ଦିନ ସେ ପେଟ ବେମାରୀ ହେତୁ ବିଛଣାରେ ପଡ଼ିରହିଲା। ଭଲ ହୋଇଗଲାପରେ ସେ ଆଉ ଆଗର ରାଘସ୍ୱା ହୋଇ ରହିଲା ନାହିଁ। ଭିତରେ ଭିତରେ ମାନସିକ ଭାବରେ ଦୁର୍ବଳ ହୋଇ ପଡ଼ିଲା।

ମହବୁବ ମଲାପରେ ଘରୁ ମହବୁବଠାକୁ ଯାଇଥିବା ସମ୍ପତ୍ତି ପୁଣି ଘରକୁ ଫେରିବ ଏଇ ମିଛ ଆଶା ରଖି ବସିଥିବା ଚମ୍ପାଙ୍କର ଆଶା ବିଫଳହେଲା। ମହବୁବ ସବୁ ଟଙ୍କା ନିଜ ଭଣଜାର ଦୋକାନରେ ଲଗାଇ ଦେଇଥିଲା। ଏ ବିଷୟରେ କିଛି କରିବା ପାଇଁ ରାଘପ୍ପା ପ୍ରସ୍ତୁତ ନଥିଲା। ଦ୍ୱିତୀୟଥର ଅସୁସ୍ଥତାରୁ ଭଲ ହୋଇ ଗଲାପରେ ମହବୁବ ନିଜର ଗଳାର ଚନ୍ଦ୍ରହାର ଚମ୍ପା ପାଖକୁ ପଠାଇଦେଇ କହିପଠାଇଥିଲା ଶାନ୍ତାର ବିବାହ ବେଳେ ତାହା ତାକୁ ଦେଇଦେବାକୁ। ଏତିକି ମାତ୍ର ଘରେ ପହଞ୍ଚିଲା।

ଯହୁଁ ଦିନ ବିତିବାକୁ ଲାଗିଲା ରାଘପ୍ପାର ପ୍ରତାପ କମିବାକୁ ଲାଗିଲା। ଆଗର ଉତ୍ସାହ, ଶକ୍ତି ଓ ଚଞ୍ଚଳତା କମିକମି ଗଲା। ପୂର୍ବର ଶାରୀରିକ ଶକ୍ତି ତଥା ବୁଦ୍ଧିମତ୍ତା ଏବେ କାହାଣୀ ପାଲଟିଗଲା। ସେତେବେଳେ ରାଘପ୍ପା ରାବଣପରି ଆପଣାର ପ୍ରଚଣ୍ଡ ସାମର୍ଥ୍ୟ ଦ୍ୱାରା ପୃଥ୍ୱୀକୁ ରସାତଳ କରୁଥିଲା, ଏବେ ସାଧାରଣ ନଟ ପରି ନାଚୁଛି। ଆପଣାର ଅଲୌକିକ ବ୍ୟକ୍ତିତ୍ୱକୁ ହରାଇ ସେ ନିସ୍ତେଜ ହୋଇପଡ଼ିଛି। ସେ କଥା ସେ ନିଜେ ମଧ୍ୟ ବୁଝି ପାରିଛି। କେବେକେବେ ବାଟ ଚାଲିଲାବେଳେ ଗୋଇଠିରେ ଗୋଇଠି ବାଜିଗଲେ ତା' ମୁହଁରୁ 'ଆଃ' ପଦ ବାହାରି ଆସୁଛି, ଯାହା ଆଗେ କେବେ ହେଉନଥିଲା। ଆଗେ କୌଣସି କାମରେ ପଶ୍ଚାତ୍ତାପ ନକରିବା ଲୋକ ଆଜି ପ୍ରତିକଥାରେ ଦୁଃଖିତ ହେଉଛି। ମୃତ୍ୟୁର ଶକ୍ତିହିଁ ଏପରି। ଦୁଃଖ କଣ ନଜାଣିଥିବା ଲୁହାପରି କଠିନ ହୃଦୟକୁ ମୃତ୍ୟୁ ଯେତେବେଳେ ଦୁଃଖିତ ହେବାକୁ ଶିଖାଇ ଦିଏ, ସେତେବେଳେ ସେ ମଧ୍ୟ ସମୟ ଆସିଲେ ଦୁଃଖିତ ହୁଏ। ଆଜିକାଲି ରାଘପ୍ପା କଳ୍ପଲୋକରେ ବିଚରଣ କରୁଛି। କାଳ୍ପନିକ ଦୁଃଖରେ ସୁଦ୍ଧା ଦୁଃଖିତ ହେଉଛି। ତାର ପ୍ରଥମ ଦୁଃଖ ହେଲା ତାର ବୁଦ୍ଧି ତାକୁ ସବୁଦିଗରୁ ସମାନ ଭାବରେ ଲାଭବାନ୍ କଲା ନାହିଁ। ଦ୍ୱିତୀୟ ଦୁଃଖ ହେଲା, ତାର ବୁଦ୍ଧି ତାର ସମର୍ଥ୍ୟ ହାନୀ କଲା। ତୃତୀୟରେ ତାର ବୁଦ୍ଧିର ଶକ୍ତି କ୍ରମଶଃ କ୍ଷୀଣହେବାକୁ ଲାଗିଛି। ଏବେ ସେ ଯେତିକି ବଂଚିଛି ତାହା ରାଘପ୍ପାର ଛାୟା ମାତ୍ର। ପୂର୍ବର ପ୍ରଚଣ୍ଡ 'ରାଘୋବା ଭରାରୀ' ମହବୁବ ସହିତ ଅଦୃଶ୍ୟ ହୋଇଯାଇଛି।

'ସେ ଦେଶାଇ ଯଦି ମୋ ହାତରେ ଟିକିଏ ଆଗରୁ ପଡ଼ିଥାନ୍ତା! ଏବେ ମୋର ଦେହବଳ କମିବାକୁ ଲାଗିଲାଣି। ସେତେବେଳେ ହୋଇଥିଲେ, ପନ୍ଦର ଦିନରେ ତାକୁ ଅକଲ ଶିଖାଇ ଦେଇଥାନ୍ତି!' ସ୍ତ୍ରୀ ଆଗରେ ସେ ଏମିତି ବାହାସ୍ଫୋଟ ମାରେ। ରାଘପ୍ପା ଘରେ ଦେଶାଇବାବୁ ଓ ଗଙ୍ଗୁଆ ଥିଲେ କଟୁ ପରିହାସର ବିଷୟ। ଦୁହେଁ ଗୃହଶତ୍ରୁ। ଏବେ କିଟ୍ଟୀର ଋଣ, ଦାରିଦ୍ର୍ୟ, ଏବଂ ଦେଶାଇଙ୍କଠାରେ ରଖିଥିବା ଟଙ୍କା ଆଦି ବିଷୟରେ ଖୋଲାଖୋଲି ଚର୍ଚ୍ଚା କରିବାର ଅବକାଶ ମିଳିବାରୁ ତିକ୍ତତା ଆଉରି ବଢ଼ି ଉଠିଲା।

ଶକ୍ତି ଯେତେ କମିଯାଉ ନାଁ କାହିଁକି 'ମୁରାରୀର' କରାମତି ବନ୍ଦହୋଇ ନଥାଏ। ସେ ବର୍ଷ ଦେଶାଇବାବୁଙ୍କ ଜମିରେ ବହୁତ ଚୋରି ହେଲା। ଦେଶାଇଙ୍କ ଗାଁରୁ ଧାରୱାଡ଼ର ହାଟକୁ ଆସୁଥିବା ଲୋକଙ୍କ ସହ ରାଘପ୍ପା ଭାରୀ ବନ୍ଧୁତା ଜମାଇ

ଦେଇଥାଏ। ଏବେବି ତାର ଅନେକ ଉଦ୍ଦେଶ୍ୟ ବାକୀ ଅଛି। ମାତ୍ର ଅନ୍ୟ ଏକ ବାଟ ଫିଟିବାରୁ ଛୋଟ କାମରେ ହାତଦେଲାନାହିଁ।

ଦେଶାଇଜୀଙ୍କ ପୁଅ ବସନ୍ତ ଏବେବି ଲୁଚାଚୋରାରେ ଧାନ ବିକିବା ଅଭ୍ୟାସ ଛାଡ଼ି ନଥାଏ। ଆଗେ ସେ ଏକ ନାଟକ ଦଳ ଗଢ଼ିଥିବା, ତାରି ପାଇଁ ଗାଁ ଲୋକଙ୍କୁ ଶତ୍ରୁ କରିଥିବା, ଧାଇଁକରି ଦେଶାଇଙ୍କର ଗାଁକୁ ଯିବା, ଏ ସବୁ ରାଘସ୍ବାର ଏକ ଶିଷ୍ୟ ତାକୁ କହିଥିଲା। ଏବେ ଖୋଲାଖୋଲି ଭାବରେ ବସନ୍ତ ରାଓ ଧାନ ବିକେନାହିଁ। ପକ୍କା ଗ୍ରାହକକୁ ତିନିତିନି ଦିନରେ ଥରୁଟିଏ କରି ବସ୍ତେ ଦେଢ଼ବସ୍ତା ବିକେ। ରାଘସ୍ବାର ଚତୁର ଶିଷ୍ୟ ବସଓର୍ଣ୍ଣୀ ଚତୁର୍ଥ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲା। ସେ ଭାରୀ ଉତ୍ସାହୀ। ନଅ ଛଅ କାମରେ ତାର ଭାରୀ ଆଗ୍ରହ। ତା'ରି ହାତରେ ରାଘସ୍ବା ବସନ୍ତରାଓ ପାଖକୁ ଖବର ପଠାଇଲା। ଧାରୱାଡ଼ରେ ଆପଣଙ୍କ କୁଟୁମ୍ବ ଭିତରୁ ଜଣେ ଭଲଲୋକ କିଣାକିଣି କରିବାକୁ ଚାହୁଁଛି।

ଚତୁର ବସଓଣ୍ଣୀ କଥାରେ ରଙ୍ଗ ଚଢ଼େଇ ଭାରୀ ପାରଙ୍ଗମତା ଦେଖାଇଲା। ସେ ମଧ୍ୟସ୍ଥ। ଧାନ ମିଳିଲାମାତ୍ରେ ପଇସା ଦେଇଦିଏ। ରାତାରାତି ବଳଦଗାଡ଼ିରେ ଧାନ ନେଇ ଧାରୱାଡ଼ରେ ପହଞ୍ଚାଏ, କେହି ଟେର ପାନ୍ତି ନାହିଁ। ମାସେ ଯାଏଁ ଏ ବ୍ୟବସ୍ଥା ବଡ଼ ଲାଭଜନକ ମନେହେଲା। ରାଘସ୍ବାକୁ ପନ୍ଦର ବସ୍ତା ଯବ ମିଳିଲା। ଧାରୱାଡ଼ରେ ପହଞ୍ଚାଇବା ଖର୍ଚ୍ଚ, ବସଓଣ୍ଣୀର ଦଲାଲୀ—ସବୁ ବାଦ୍ ଯାଇ ରାଘସ୍ବାର ପକେଟକୁ ବାରଶ ଟଙ୍କା ଆସିଲା।

ଏସବୁ ଛୋଟ ଛୋଟ ଧନ୍ଦା ରାଘସ୍ବାର ପସନ୍ଦ ହେଲାନାହିଁ। ମନେମନେ ଭାବିଲା, ଛି, କୋଡ଼ିଏ ଟଙ୍କା ଲାଜର ବିଷୟ। ମହବୁବ ବଞ୍ଚିଥିବା ବେଳେ ଏତକ ଟଙ୍କା ମୁଁ ଦିନକରେ ଫୁଙ୍କି ଦେଇଛି। ସେ ଯାଠୁ ସହଜ ଉପାୟ ଭାବିବାକୁ ଲାଗିଲା। ଦେଶାଇବାବୁଙ୍କ ଚୁଟି ହାତକୁ ଆଣିବାକୁ ହେଲେ ତା' ପୁଅକୁ ଧରିବାକୁ ପଡ଼ିବ। ଡାଳ ଟାଣିଲେ ବୁଦା ବଳେ ଦୋହଲିବ। ସେଥିପାଇଁ ବସନ୍ତ ସହିତ ସିଧାସଳଖ ଜଣାଶୁଣା ହେବା ଦରକାର। ଆଗେ ବସନ୍ତର ଯାତ୍ରାଦଳ ବିଷୟରେ ଭାରୀ ଉତ୍ସାହ ଥିଲା। ରାଘସ୍ବା ସେ ବିଷୟରେ ବିଶେଷ ଅଭିଜ୍ଞ। ସେଥିପାଇଁ ବସନ୍ତକୁ ନାଟକ ବିଷୟରେ ଉତ୍ସାହିତ କରିବା ପାଇଁ ତାକୁ ଡକାଇ ଆଣିବା ଲାଗି ବସଓଣ୍ଣୀକୁ ପଠାଇ ଦେଲା। ତା'ପରଦିନଠାରୁ ବସନ୍ତର ଆସିବାବାଟକୁ ଚାହିଁ ରହିଲା।

ଇଏ ଗଲା ରାଘସ୍ବାର ଗୋଟିଏ ମୁହଁ।

ଆର ମୁହଁଟି କିଟ୍ଟୀଆଡ଼େ ନଜର ରଖିଥିବା ମୁହଁ।

କିଟ୍ଟୀକୁ ପୋଷ୍ୟ କରି ନେବା ବିଷୟରେ ରାଘସ୍ବାର ମନ ବଦଳିବାକୁ ଲାଗିଥାଏ। ଏକଥାକୁ ସେ କେବେହେଲେ ଏକ ମନରେ ଭାବି ନଥିଲା। ଝିଅ ଦେଲାବେଳେ ଗଙ୍ଗୱ୍ବାକୁ କାବୁ କରିବା ପାଇଁ ସେଇଟି ଥିଲା ଏକ ଉପାୟ। ଗଙ୍ଗୱ୍ବାର ଜିଦ୍ ଯୋଗୁଁ ଚିନ୍ତାଟି ରୂପ ନେବାକୁ ଲାଗିଲା। ସେତେବେଳେ ରାଘସ୍ବାର ଯୌବନ ଥିଲା; ଦତ୍ତକ ନେବା କଥାଟି ତାକୁ ହାସ୍ୟାସ୍ପଦ ମନେ ହେଉଥିଲା। ପରିସ୍ଥିତି ବଶରୁ ଦତ୍ତକ

ନେବା କଥାକୁ ସେ ସ୍ୱୀକାର କରିଥିଲା। ସଭିଙ୍କ ଆଗରେ ନିୟମ ମଧ୍ୟ କରିଥିଲା। ତା'ଛଡ଼ା, ଚମ୍ପକା କିଙ୍ଗୀ ବିଷୟରେ ବଡ଼ ଜିଗର ଧରିଥିଲା, —ସେଇ ସବୁ କାରଣରୁ ସେ ବିବାହ ପୂର୍ବରୁ ଦତ୍ତକ ନେବା କଥାଟି ମାନିନେଲା।

ବିବାହ ହୋଇଗଲା। ତା'ପରେ ଦିନ ଗଡ଼ିବାରୁ ଦତ୍ତକ ନେବା ବିଷୟରେ ରାଘୱା ମନରେ ପରିବର୍ତ୍ତନ ଆସିଲା। ସେ ଭାବିଥିଲା, ବାହାଘର ପରେ ଗଙ୍ଗୱା ପୁରୁଣା ମନାନ୍ତରକୁ ଭୁଲିଯିବ। କିନ୍ତୁ କଥାଟି ମିଛ ପ୍ରମାଣିତ ହୋଇଗଲା। ନାଁ ଗଙ୍ଗୱା ନିଜେ ଥରୁଟିଏ ଭାଇ ଘରକୁ ଆସିଲା, ନାଁ ଭାଇକୁ ନିଜ ଘରକୁ ଡକାଇ ପଠାଇଲା! ରତ୍ନା ବିଶେଷ ସୁଖୀ ନୁହଁ। ରାଘୱା ମନେ ମନେ ଚିନ୍ତିତ, ତାର ଅସଂତୋଷଭାବ ତାରି ଝିଅଠାରେ ମୁଣ୍ଡ ଟେକିଛି। ଗଙ୍ଗୱା ଏକ ଭୟର କାରଣ ପାଲଟି ଯାଇଛି। ଏଇ ଚାରିପାଞ୍ଚ ବର୍ଷ ମଧ୍ୟରେ କିଙ୍ଗୀଠାରେ ରାଘୱାର ଉତ୍ତରାଧିକାରୀ ହେଲାଭଳି କୌଣସି ଲକ୍ଷଣ ଦେଖାଗଲା ନାହିଁ। ସେ ରାଘୱାର ସମର୍ଥକ, ମାତ୍ର ତା'ଠାରେ ରାଘୱାର ଉତ୍ତରାଧିକାରୀ ହେବାର ଯୋଗ୍ୟତା ନାହିଁ। ଏଇ କଥା ନେଇ ସେ ସ୍ତ୍ରୀ ଆଗରେ ଗର୍ଜିଲା, ମୁଁ ଯଦି କିଙ୍ଗୀ ଜାଗାରେ ଥାନ୍ତି, ତେବେ ଗଙ୍ଗୱାକୁ ମୋ ମା', ମୋ ଜନନୀ' କହି ସାଷ୍ଟାଙ୍ଗ ପ୍ରଣାମ କରି ଘରୁ ବାହାର କରିଦେଇ ଥାନ୍ତି।

ଏଇପରି ପରିସ୍ଥିତିରେ ଦେଶାଇଜୀ ତାକୁ ଡାକି ପୋଷ୍ୟ ନୋବାକଥା ଉଠାଇବାରୁ ସେ ଗୋଡ଼ରୁ ମୁଣ୍ଡଯାଏଁ ଜଳିଗଲା। ମନର ଅସନ୍ତୋଷକୁ ଦେଶାଈଙ୍କ ଆଗରେ ପ୍ରକାଶ କରି କହିଲା, ଦେଶାଇଜୀ, ବାହାଘର ହେବାର ଦେଢ଼ବର୍ଷ ହୋଇଗଲା, କିନ୍ତୁ ଥରୁଟିଏ ହେଲେ ଗଙ୍ଗୱା ମୋ ଘର ମାଡ଼ିଲା ନାହିଁ। ବାର ମାସକୁ ତେର ପର୍ବ ପଡୁଛି। ଯଦି ଏମିତି ମନ କଷାକଷି ଲାଗି ରହିବ, ତେବେ ମୋର ବିଶ୍ୱାସ ଆସିବ କେମିତି? ଏହା ଶୁଣି ଦେଶାଇଜୀ କହିଲେ, 'କଥା ନିଜେ ଦେଇ ଥିଲେ। ବିବାହ ବେଳେ ଆଗୁଆ ହୋଇ ପାଞ୍ଚ ଜଣଙ୍କ ଆଗରେ ଏକଥାତ କାହିଁ କହିନଥିଲେ ଯେ ଆମର ମନ କଷାକଷି ଏଇଠି ମେଣ୍ଟିଯିବା ଦରକାର। ସେତେବେଳେ ଆପଣଙ୍କ ମୁହଁରେ ଖଇ ଫୁଟୁ ଥିଲା। ସେତେବେଳେ କିଛି କହିଲେ ନାହିଁ।'

ଏଥିରେ ରାଘୱାର କ୍ରୋଧ ଦ୍ୱିଗୁଣିତ ହୋଇଉଠିଲା। କିଙ୍ଗୀକୁ ପୋଷ୍ୟ ନେବା ବିଷୟରେ ସେ ଆଉରି ଅନେକ ତ୍ରୁଟି ଦେଖିବାକୁ ପାଇଲା। ଦ୍ୱିତୀୟ ଜୋଇଁ ଯଦି କିଙ୍ଗୀ ଅପେକ୍ଷା ଭଲହୁଏ ତେବେ...? କିଙ୍ଗୀକୁ ପୋଷ୍ୟ କରି ନେଲା ପରେ ଗଙ୍ଗୱା ଯଦି ତାକୁ ନିଜର ବଶ କରିନେଇ ମୋର ସର୍ବନାଶ କରେ....? ଏଇ ଦ୍ୱିତୀୟ ଚିନ୍ତା ତାକୁ ଭୟଙ୍କର ମନେହେଲା। କାହାକୁ ଭୟ କରୁନଥିବା ରାଘୱା ନିଜର ଭଉଣୀକୁ ଦେଖିଲେ ଟିକିଏ ଜଡ଼ସଡ଼ ହୋଇଉଠେ। ଏବେ ତାର ମାନସିକ ଦୁର୍ବଳତା ଭୟର ରୂପନେଇଛି। ସେ ମନକୁ ମନ ଭାବେ ଯଦି 'ଗଙ୍ଗୀ' ହାତରେ ପଡ଼େ ତେବେ ସେ ମୋର ପତ୍ତା ଉଡ଼ାଇଦେବ। ଗଙ୍ଗୱା ପାଇଁ ତା' ମନରେ ସବୁବେଳେ ସଭୟ ଭକ୍ତି ରହି ଆସିଛି। ଏଇ ତିନିବର୍ଷ ହେଲା ତାର ଭଉଣୀ ହିଁ ତାର ଚିନ୍ତାର

କେନ୍ଦ୍ରସ୍ଥଳ ହୋଇଯାଇଛି । ଭଉଣୀ ବିଷୟରେ ଏକ ଗାୟତ୍ରୀ ତା' କାନରେ ଗୁଣୁଗୁଣୁ ହୁଏ; 'ଗଙ୍ଗୀ', ମୋ ବିଦ୍ୱେଷ ଏବେବି ଶେଷ ହୋଇନାହିଁ, ତୋର ଭାଗ୍ୟ ଭଲ । ତୁ ଭୂତ ହୋଇ ମୋଠାରୁ ପ୍ରତିଶୋଧ ନେବାକୁ ଆସିଲେ ଯାଇଁ ମୋତେ ଶାନ୍ତି ମିଳିବ !'

ଏବେ ଯଦି କୌଣସି ପ୍ରକାରେ ପୋଷ୍ୟନେବା କଥାଟି ଭାଙ୍ଗିଦେଇପାରେ ତେବେ ଦେଶାଇ ଓ ଗଙ୍ଗଓ୍ୱାକୁ ହଇରାଣ କରିବାର ସନ୍ତୋଷ ଆସିବ । ଏଣେ ପାଞ୍ଚ ଜଣଙ୍କ ଆଗରେ ନିୟମ କରିଛି । ଏବେ ଆଉ ବର୍ଷେ ଦି ବର୍ଷ ଟାଳି ଦେଇହେବ, ଶାନ୍ତାର ବିବାହ ହେବା ଯାଏଁ । ଫେର ମନକୁ ମନ ଭାବେ ରାଘପ୍ପା, 'ତୁ ଯଦି ସତରେ ରାଘପ୍ପା ହୋଇଥିବୁ, ତେବେ ଏକଥା ଦ୍ୱିତୀୟ ଥର ଉଠିବା ଆଗରୁ ଖତମ କରିଦେବୁ ।'

ପୋଷ୍ୟନେବା ବିଷୟରେ ରାଘପ୍ପା ରାବଣପରି ଭାବିବାକୁ ଲାଗିଲା । 'ଯଦି ମୋର ପୁଅଟିଏ ହୁଏ ତେବେ?' ଶାନ୍ତାର ଜନ୍ମପରେ ଡାକ୍ତରମାନଙ୍କ ପରାମର୍ଶ ଅନୁସାରେ ପତ୍ନୀ ସହିତ ରାଘପ୍ପାର ସଂପର୍କ ତୁଟି ଯାଇଥିଲା । ଡାକ୍ତରମାନେ ଖୋଲାଖୋଲି କହିଦେଇଥିଲେ ଯେ ଯଦି ପୁଣିଥରେ ପ୍ରସବ ହୁଏ ତେବେ ଚମ୍ପକ୍କାର ଜୀବନର ପ୍ରଶ୍ନ ଉଠିବ । ଏବେ ତାକୁ ପଚାଶବର୍ଷ ହେଲାଣି । ସ୍ତ୍ରୀକୁ ଚାଳିଶ ଛୁଇଁଲାଣି । ସେ ଭାବେ ଏବେ ମୋର ସମୟ ଅଛି, ଶାନ୍ତାର ବିବାହ ସ୍ଥଗିତ ରଖି ଲାଭ ନାହିଁ । ତାର ଯଦି ବୟସ ବେଶୀ ହୋଇଯାଏ ତାକୁ ବାହାଦେବା ମୁସ୍କିଲ ହୋଇଉଠିବ ।

ଯାହାହେଉ ପଛକେ, ଶେଷରେ ଗୋଟିଏ ପଟକୁ ଦୟାକୁ ରଖିଦେଇ ଦାନ୍ତକାମୁଡ଼ି ରାଘପ୍ପା ନିଷ୍ପୟ କଲା: ମୋ ସ୍ତ୍ରୀର ପ୍ରାଣ... ପୁଅଟିଏ ଜନ୍ମ ଦେଇ କାଟୁ ସେ ନିଜର ଟିକଟ... ।

ଡାକ୍ତରମାନେ ଜାଣନ୍ତିବା କଣ ? ତିଳକୁ ତାଳକରି କହନ୍ତି !

ପଦଟିଏ ନ କହିଲେ ସୁଦ୍ଧା ଚମ୍ପକ୍କା ସ୍ୱାମୀର ମନକୁ ଖୋଲାଥିବା ବହି ପରି ସ୍ପଷ୍ଟ ପଢ଼ିପାରେ । ଆଜିଯାଏଁ ସେ କଣ ସ୍ୱାମୀର ମନକୁ ବୁଝି ମଧ୍ୟ ନିଜର ଜୀବନ କାଟିଛି...? କିଛି ନକହି ସେ ଅନ୍ତିମ ସ୍ୱାର୍ଥତ୍ୟାଗ ପାଇଁ ପ୍ରସ୍ତୁତ ହେଲା । ରଦ୍ଧାପାଇଁ ମନରେ ନିଷ୍ଟୟ ଟିକିଏ ଦୟା ଜାତ ହେଲା, କିନ୍ତୁ ତା' ପାଖରେ ପତିହିଁ ପରମେଶ୍ୱର । ତାର ସ୍ୱାମୀ ସହିତ ଅନ୍ୟର ପ୍ରେମ ବା ଦ୍ୱେଷ ଯେପରି ତା' ନିଜ ପ୍ରତି ମଧ୍ୟ ପ୍ରେମ ବା ଦ୍ୱେଷ ବ୍ୟତୀତ ଅନ୍ୟକିଛି ନୁହଁ । ତେଣୁ ତାକୁ ପ୍ରସ୍ତୁତ ହେବାକୁ ପଡ଼ିଲା ।

# 26. ଅଚ୍ୟୁତର ଉତ୍ତର

କେତେଦିନ ପରେ ଦେଶାଇବାବୁଙ୍କ ମନକୁ କଥାଟି ଆସିଲା – ଗାଁରୁ ପନ୍ଦର ବସ୍ତା ଯବ ଆସି ଧାରୱାଡ଼ରେ ବିକ୍ରି ହୋଇଛି। ତା' ଆଗରୁ ଫସଲ ଚୋରୀ ଦୁଃଖ ଥିଲା, ଏବେ ତାଙ୍କର ସନ୍ଦେହ ଦୃଢ଼ହେଲା ଯେ ସେ ଚୋରୀ ପଛରେ ମଧ୍ୟ ରାଘପ୍ପାର ହାତ ଥିଲା। ବାପା ଥିଲାବେଳେ ଦେଶାଇଜୀ ଆପଣାର ଶକ୍ତି ଅନୁଯାୟୀ ରାଜନୀତିରେ ଭାଗ ନେଇଥିଲେ। ମାତ୍ର ଗତ କୋଡ଼ିଏ ବର୍ଷ ହେଲା ଅବସରପ୍ରାପ୍ତ ସୈନିକ ପରି ଶାନ୍ତିପୂର୍ଣ୍ଣ ଜୀବନ ବିତାଉଥିଲେ। ଏ କୋଡ଼ିଏବର୍ଷ ଭିତରେ ସେମିତି ବଡ଼ ଶତ୍ରୁ ତାଙ୍କର ମୁହାଁମୁହିଁ ହୋଇ ନଥିଲା। ସେ ନିଜ ଭିତରେ ମଦମତ୍ତ ହସ୍ତୀପରି ରହିଆସିଥିଲେ; ତେଣୁ ତାଙ୍କର ନିକଟତମ ବନ୍ଧୁ ସଂଖ୍ୟା ଥିଲା ଅତି ଅଳ୍ପ। ସେମିତି କେହି ଶତ୍ରୁ ମଧ୍ୟ ନଥିଲେ। ଆଜିକାଲି ବିନାକାରଣରେ ରାଘପ୍ପା ଉପଦ୍ରବ ଆରମ୍ଭ କରିଛି। ଏଥିରେ ସେ ଦୁଃଖୀ ହେଲେ। ବହୁଦିନରୁ ଈର୍ଷାଦ୍ୱେଷ ଠାରୁ ଦୂରରେ ରହିଆସିଥିଲେ ହେଁ ଆଜି ସେ କହିବାକୁ ଲାଗିଲେ 'ଏ ରାଘପ୍ପାକୁ ଯଦି ଉଚିତ ଶିକ୍ଷା ନ ଦେଇଛି, ତେବେ ମୁଁ ବାହାଦୂର ଦେଶାଇ ନୁହଁ!' ଏବେ ରାଘପ୍ପା ପ୍ରତ୍ୟକ୍ଷ ସଂଘର୍ଷ ପାଇଁ ଓହ୍ଲାଇ ଆସିଛି। ଚୁପ୍ ରହିଲେ କାମ ଚଳିବ ନାହିଁ। ଏହା ଭାବି ସେ ରାଗରେ ଅଚ୍ୟୁତ ପାଖକୁ ଅନୁସନ୍ଧାନ କରିବା ପାଇଁ ଚିଠି ଦେଲେ। ଯାହା ଯାହା କଥା ଘଟୁଛି ତାର ସଂକ୍ଷିପ୍ତ ବିବରଣୀ ଦେଇ ଚିଠିରେ ଅଚ୍ୟୁତକୁ ପଚାରିଥାନ୍ତି ଯେ ଭେଙ୍କଟରାଓ ରାଘପ୍ପାର ଭାଇ କି ନାହିଁ? ଏ ବିଷୟରେ ଯଦି ଆଉ କିଛି ଖବର ମିଳେ, ତେବେ ଲେଖିବ। ସେ ବିଶ୍ୱାସ କରନ୍ତି ଯେ ଏ କାମଟି କରିବା ଅଚ୍ୟୁତର କର୍ତ୍ତବ୍ୟ। ତେଣୁ ସେ ଯତ୍ନ କରି ଏହାର ଜବାବ ଦେବ। ଏପରି ସ୍ପଷ୍ଟ ଚିଠି ସେ ଅଚ୍ୟୁତକୁ କେବେ ଲେଖି ନଥିଲେ।

କାମଟି କରିବା ପାଇଁ ଅଚ୍ୟୁତକୁ ଅନେକ କଷ୍ଟ କରିବାକୁ ପଡ଼ିଲା, କାହିଁକି ନାଁ ତା'ଠୁ ଚିଠି ଆସିବାକୁ ଚାରିଦିନ ଲାଗିଲା। ଚିଠିଟି ସବିସ୍ତାର ଲିଖିତ।

କ୍ଷେମ ଶ୍ରୀ ଦେବୀଦାସ ଫ୍ଲୁମିଲ

ଲାଲବାଗ

ତୀର୍ଥରୂପ ଚରଣାରବିନ୍ଦରେ ବହୁ ସାଷ୍ଟାଙ୍ଗ ପ୍ରଣାମ। ଆପଣଙ୍କ ପତ୍ର ପାଇଛି। ମୋର ସର୍ବ କୁଶଳ। ଏଠାରେ ଭଲରେ କାମ ଚାଲିଛି। ଆଜିକାଲି ସଂପାଦକ

ମହାଶୟ ମୋତେ ଦାୟିତ୍ୱପୂର୍ଣ୍ଣ କାମ ଦେଉଛନ୍ତି। ନିକଟରେ ମୋତେ ଥରେ ଦି'ଥର ସଂପାଦକୀୟ ଲେଖିବାର ସୁଯୋଗ ଦେଇଥିଲେ। ମୋର ଲେଖା ପଢ଼ି ଅନାବଶ୍ୟକ କଥା ଗୁଡ଼ିକ ବାଦ୍ ଦେଇଦେଲେ। ଏ ତିନିଚାରି ବର୍ଷ ଏଠାରେ କାମ କରିବା ଫଳରେ ଏଠାର ଜୁନିୟର କର୍ମଚାରୀମାନଙ୍କ ମଧ୍ୟରେ ମୁଁ ସିନିୟର। ପତ୍ରିକାର ଆର୍ଥିକ ଅବସ୍ଥା ଚିନ୍ତାଜନକ ଥିବାରୁ ପ୍ରତିବର୍ଷ ଅଧା ବେତନରେ କଲେଜ ଛାତ୍ରମାନଙ୍କୁ ସହସଂପାଦକ ଭାବରେ ନିଯୁକ୍ତ କରାଯାଏ। ତେଣୁ ପ୍ରତିବର୍ଷ ନୂଆ ମୁହଁ ଦେଖିବାକୁ ମିଳେ। ସେ ସବୁଙ୍କ ଭିତରେ କେବଳ ମୁଁ ପୁରୁଣାଲୋକ ହୋଇଥିବାରୁ ସଂପାଦକ ମୋତେ ଭାରୀ ବିଶ୍ୱାସ କରନ୍ତି। ବି.ଏ. ପଢ଼ା ଭଲରେ ଚାଲିଛି। ଆପଣ କୌଣସି ବିଷୟରେ ଚିନ୍ତା କରିବେ ନାହିଁ। ଏବେ ମୁଁ ଅଟାକଳକୁ ଯିବା କମାଇଦେଇଛି। ପ୍ରେସକୁ ସପ୍ତାହରେ ଥରେ ଦି'ଥର ଯାଏ, କେବଳ ମେସିନକୁ ଭଲକରି ଜାଣିବାପାଇଁ। ସେଠାରେ ଆଜିକାଲି ଶାରୀରିକ ପରିଶ୍ରମ କରୁନାହିଁ। ଆପଣ କୌଣସିପ୍ରକାର ଚିନ୍ତା କରିବେନାହିଁ। ମାଆଙ୍କୁ ସବୁ କହି ନିଶ୍ଚିନ୍ତ ରହିବାକୁ କହିବେ।

ଏବେ ଆପଣ ଯାହା ପଚାରିଥିଲେ ସେ ବିଷୟରେ ଲେଖୁଛି। ଭେଙ୍କଟ ରାଓକୁ କିଛି ବୁଝାଇବା ମୁସ୍କିଲ। ଉଦ୍ଦେଶ୍ୟନେଇ କିଛି ପ୍ରଶ୍ନ ପଚାରିଲେ ସେ ସନ୍ଦେହ କରେ ଓ ବୁଲାଇ ବଙ୍କାଇ କହିବାକୁ ଆରମ୍ଭ କରେ। ଏହା ପୂର୍ବରୁ ଭେଙ୍କଟ ରାଓ ନିଜ ପାଖରେ ରଖିଥିବା ଚିଠିକୁ ଅନେକଥର ଦେଖାଇଥିଲା, ବହୁଥର ଚିଠି ଦେଖାଉଥିବାରୁ ଓ ତାର ଅଦ୍ଭୁତ ବ୍ୟବହାର ହେତୁ ମୁଁ କେବେ ସେ ଚିଠିପ୍ରତି ଧ୍ୟାନ ଦେଇ ନଥିଲି। କେବଳ ଥରେ ତାକୁ ପଢ଼ିଥିଲି। ଏବେ ପଢ଼ିବାକୁ ମାଗିବାରୁ ସେ ଅଯଥା ସଂଦେହ କରି ଦେଲାନାହିଁ। ତାର ଯେତେବେଳେ ଖିଆଲ ହୁଏ ସେତେବେଳେ ଯାହାକୁ ଇଛା ତାକୁ ଚିଠି ଦେଖାଇ ବୁଲେ। ଟିକିଏ କନ୍ନଡ଼ ଜାଣିଥିବା ଲୋକଙ୍କୁ, ବା ତା' ସହିତ ଉଠାବସା କରୁଥିବା ଲୋକଙ୍କୁ ସେ ଚିଠି ଦେଖାଇ 'କଣ, ମୋତେ ମୋ' ଭାଗ ମିଳିବ ତ?' ବୋଲି ପଚାରିବାଟା ତାର ଅଭ୍ୟାସ। ଯିଏ ସେ କାଗଜକୁ ଦେଖେ ସିଏ ପଚାରେ 'ଏ କଣ ତୁମର ଦାନପତ୍ର?' ତୁମକୁ ଏହା ମିଳିଲା କିମିତି? ତାଠାରୁ ସେ କାଗଜ ନେଇ ମନଦେଇ ପଢ଼ିବା ପରେ ମୋର ମଧ୍ୟ ସେମିତି ମନେହେଲା। ଏଠାକାର ଜଣେ ଓକିଲ ସାଙ୍ଗକୁ ପଚାରିବାରୁ ସେ ବି ସେଇକଥା କହିଲା। କାଗଜଟି ଏଇପରି:

ସ୍ୱାମୀ ରାୟ ଓ ଶ୍ରୀ କୃଷ୍ଣଜୀ କୁଲକର୍ଣ୍ଣୀ. ସାକିନ-ଧାରଓ୍ୱାଡ଼ଙ୍କ ନାମରେ ଭେଙ୍କଟ ରାଓ ବାମନ ବିନ୍ଦୁଗୋଠ ସାକିନ ବିନ୍ଦୁଗୋଠ ବର୍ତ୍ତମାନ ପୁନାରେ ରହୁଥିବା, ପେଶା ଚାକିରୀ। ଏହି ଦାନପତ୍ର ଲେଖିଦେଉଛି। ମୁଁ ଓ ମୋର ବଡ଼ଭାଇ ଶ୍ରୀମାନ ରାଘବେନ୍ଦ୍ର ବାମନ ବିନ୍ଦୁଗୋଠ ଦିହେଁ ଜମିବାଡ଼ିର ସମାନ ଅଂଶୀଦାର। ଆମ୍ଭର ପିତାଙ୍କର ଅନ୍ୟ କୌଣସି ପୁତ୍ର ସନ୍ତାନ ନ ଥିବାରୁ ଆମ୍ଭର ପୈତୃକ ସମ୍ପତ୍ତିର ଆମ୍ଭେ ଦୁହେଁ ହକ୍‌ଦାର ଅଟୁଁ। ମୁଁ ଅନ୍ୟତ୍ର କାମ କରୁ ଥିବାରୁ ଆମର ଅବିଭାଜିତ ସମ୍ପତ୍ତିର ଦେଖାଶୁଣା ମୋର ବଡ଼ଭାଇ ଶ୍ରୀମାନ ରାଘବେନ୍ଦ୍ର ବିନ୍ଦୁଗୋଠ ହିଁ କରନ୍ତି ଏବଂ ଜମିଜମା

ତାଙ୍କ ଅଧୀନରେ ଥାଏ। ଆମେ ଭାଇମାନେ ଏଇ ଜମିବାଡ଼ିର ଭାଗବାଣ୍ଟ କରିନାହୁଁ। ଏହି ସମୟରେ ମୋ ଉପରେ ବିପଦଟିଏ ଆସିଥିଲା। ଆପଣ ସ୍ୱେଚ୍ଛାରେ ସେ ବିପଦକୁ ସମ୍ଭାଳି ନେଲେ। ସେଇ ଉପକାରର ବଦଳରେ ମୁଁ ନିଜ ଅଂଶରେ ପଡୁଥିବା ପୈତୃକ ସମ୍ପତ୍ତିକୁ ନିଜ ଖୁସିରେ ଆପଣଙ୍କ ନାମରେ ଦାନପତ୍ର ଲେଖିଦେଉଛି। ଏହା ଉପରେ ମୋର କୌଣସି ବଂଶଜର ଦାବୀ ସାବ୍ୟସ୍ତ ହେବନାହିଁ ଓ ଆପଣ ଏହାକୁ ଭୋଗ କରିପାରିବେ। ମୁଁ ଅବିବାହିତ ଥିବାରୁ ଏ ସମ୍ପତ୍ତି ଉପରେ କାହାରି ଅଧିକାର ରହିବ ନାହିଁ। ମୋ ଅଂଶରେ କେତେ ସମ୍ପତ୍ତି ଆସିବ ତାହା ଆପଣ ପଞ୍ଚାୟତ ଡାକି ସ୍ଥିର କରିନେବେ। ବର୍ତ୍ତମାନ ଜମିଜମା ବଡ଼ଭାଇଙ୍କ ତତ୍ତ୍ୱାବଧାନରେ ଅଛି; ଆପଣ ଯେତେବେଳେ ଇଚ୍ଛାକରିବେ ନିଜ ତତ୍ତ୍ୱାବଧାନକୁ ନେଇପାରିବେ। ଏହି ଦାନପତ୍ର ରାଘବେନ୍ଦ୍ର ବାମନ ବିନ୍ଦଗୋଠ ଆଗରେ ଲେଖାଗଲା, ଯାହାକୁ ଆପଣ ସ୍ୱୀକାର କରି ଆପଣାର ନାମ ସଇ ଦେଇଛନ୍ତି। ଏହା ହେଉଛି ସମୁଦାୟ ଦାନପତ୍ର।

ହସ୍ତାକ୍ଷର ତା।୧୫।୫ — ଭେଙ୍କଟେଶ ବାମନ ବିନ୍ଦଗୋଠ
ସାକ୍ଷୀ — ଓ
ଶାନ୍ତପ୍ପା ଶିବପ୍ପା ଶେଟ୍ଟୀ — ସ୍ୱାମୀରାଓ ଓ କୃଷ୍ଣଜୀ କୁଲକର୍ଣ୍ଣୀ
ରାଘବେନ୍ଦ୍ର ବାମନ ବିନ୍ଦଗେଠ।

ଏ ଚିଠି ଉପରେ ରେଜିଷ୍ଟ୍ରେସନର କୌଣସି ଚିହ୍ନନାହିଁ। ଏହାକୁ ପଢ଼ିଥିବା କିରାଣୀମାନେ ଏହାକୁ ଠିକ୍ ମନେ କଲେ ସୁଦ୍ଧା, ମୋ ମନରେ ଏକ ସଂଦେହ ଦେଖା ଦେଉଛି। ଦାନପତ୍ର ଗାଢ଼ କଳା କାଳିରେ ଲେଖା ଯାଇଛି ଓ ତାହା ପୁରୁଣା ହୋଇଗଲାଣି। ତେଣୁ ତାହା ମୂଳ କାଗଜର ନକଲ, ମାତ୍ର ମୁଁ ହସ୍ତାକ୍ଷରକୁ ମନଦେଇ ଯାଞ୍ଚ କରି ଦେଖିଲି, ସଇ କରାଯାଇଥିବା ଅକ୍ଷର ଅଲଗା ଅଲଗା ହୋଇଥିବା ହେତୁ ମୋର ମନେହେଉଛି ମୂଳର ନକଲ ନୁହଁ, ଏଇଟି ମୂଳ କାଗଜ। କାଳି ଗାଢ଼ କଳା ହୋଇଥିଲେହେଁ ହସ୍ତାକ୍ଷର ଜଣଙ୍କର ପରି ଦିଶୁଥିଲେ ସୁଦ୍ଧା ଭଲକରି ଦେଖିଲେ ଅଲଗା ଅଲଗା ଜଣା ପଡୁଛି।

ଏହା ଯଦି ମୂଳ କାଗଜ ହୋଇଥାଏ, ତେବେ ଗୋଟିଏ ସଂଦେହ ହେଉଛି, ପ୍ରକୃତରେ ଏ କାଗଜଟି ସ୍ୱାମୀରାୟ ଓ କୃଷ୍ଣଜୀ କୁଳବର୍ଣ୍ଣୀ ପାଖରେ ନରହି ଭେଙ୍କଟ ରାଓ ପାଖକୁ କାହିଁକି ଓ କିପରି ଆସିଲା ? କାଗଜଟି ଏ ପର୍ଯ୍ୟନ୍ତ ରେଜେଷ୍ଟ୍ରି ହୋଇନାହିଁ। ଏ କାଗଜକୁ ସ୍ୱାମୀରାୟ କୁଲକର୍ଣ୍ଣୀ ବହୁ ଯତ୍ନରେ ନିଜ ପାଖରେ ରଖିବା କଥା।

ଏସବୁ ପ୍ରଶ୍ନୋତ୍ତର ଆପଣଙ୍କ ପାଖକୁ ଲେଖିବାର ଆବଶ୍ୟକତା ନାହିଁ। ଭେଙ୍କଟ ରାଓ ପାଖରୁ ଅନ୍ୟାନ୍ୟ କଥାର ଖୋଜ ଖବର ନେବା ବଡ଼ କଠିନ କାମ। ସେ କାଗଜକୁ ପଢ଼ି ମୁଁ ତାକୁ କେତେକ କଥା ପଚାରିଥିଲି। ତାର କଣ ବିପଦ ପଡ଼ିଥିବା ବିଷୟରେ ଲେଖିଛି ପଚାରିଲେ କଥା ଏଡ଼ାଇ ଯାଏ, ନହେଲେ ରାଗିଉଠେ। କାଗଜଟିକୁ

ମୁଁ ମନଦେଇ ପଢ଼ିବାଟା ସେ ସହିପାରିଲା ନାହିଁ। ତାର ସ୍ୱଭାବ କଥା ଆପଣ ପାଞ୍ଚ ମିନିଟର ପରିଚୟ ଭିତରେ ନିଶ୍ଚୟ ଜାଣିଯାଇ ଥିବେ।

ଏ ବିଷୟରେ ଆପଣ ଯଦି ଆଉ କିଛି ଜାଣିଥାନ୍ତି ଓ ସେ ବିଷୟରେ ବେଶୀ କିଛି ଜାଣିବାକୁ ଚାହୁଁଥାନ୍ତି, ତେବେ ମୋତେ ସବୁକିଛି ଲେଖିବେ। ତା' ହେଲେ ମୁଁ ମୋର ଓକିଲ ବନ୍ଧୁ ସହ ପରାମର୍ଶ କରି ଆପଣଙ୍କୁ ଜଣାଇବି। ଏ ବିଷୟରେ ମୁଁ ମଧ୍ୟ ଯଥାଶକ୍ତି ଭାବିବି।

ପୂଜ୍ୟା ମା' ଓ ଭାଇମାନଙ୍କୁ କୁଶଳ ସମାଚାର ଜଣାଇଦେବେ ।ଇତି।

ଆପଣଙ୍କର ପ୍ରିୟ

ଅଚ୍ୟୁତ ରାଓ

ଚିଠି ପଢ଼ି ଦେଶାଇଜୀଙ୍କ ମନରେ ଦ୍ୱିଧା ଜାତ ହେଲା। ସେ ଯାହା ଯାହା ଜାଣିଥିଲେ ତା' ସହିତ ଏସବୁ କଥାକୁ ମିଳାଇ ଦେଖିଲା ପରେ ସବୁ ସ୍ପଷ୍ଟ ହୋଇଗଲା, ମାତ୍ର ପୁଣି ସନ୍ଦେହର ଅନ୍ଧକାର ଘୋଟିଗଲା। ଏ ଚିଠି କୂଳରେ ଠିଆହୋଇଥିବା ଦେଶାଇବାବୁଙ୍କୁ ପାଣିକୁ ପଶିବାକୁ ଆମନ୍ତ୍ରଣକଲା। ତା' ସହିତ ପୁଅର ତୀକ୍ଷ୍ଣ ବୁଦ୍ଧିର ଆକର୍ଷଣ। ତାଙ୍କ ମନରେ କଥାଟିଏ ସ୍ଥିର ହୋଇଗଲା, ଯେ ତାଙ୍କୁ ଓ ଅଚ୍ୟୁତକୁ ଏ ମାମଲାରେ ମୁଣ୍ଡ ଖେଳାଇ ଏହାର ରହସ୍ୟକୁ ଖୋଲିବାକୁ ପଡ଼ିବ। ପ୍ରଥମେ ଏ ବିଷୟ ପାଖରୁ ଦୂରେଇ ରହିବାର ଯେଉଁ ଇଚ୍ଛା ଥିଲା, ଏ ଚିଠି ପାଇଲା ପରେ ସେ ଇଚ୍ଛା ଦୂର ହେଇଗଲା। ତା' ସ୍ଥାନରେ ଦେଶାଇବାବୁଙ୍କ ଜୀବନରେ ଏକ ପ୍ରଚଣ୍ଡ କର୍ମତତ୍ପରତା ଉତ୍ପନ୍ନ ହେଲା। ଏଥିରେ କେବଳ ତାଙ୍କ ଉପରେ ଭରସା ରଖିଥିବା ଏକ ଅସହାୟା ବିଧବାର ମଙ୍ଗଳାମଙ୍ଗଳ ପ୍ରଶ୍ନ ବା ଗୋଟିଏ ସାଦାସିଧା ପିଲାର ହିତାକାଂକ୍ଷା ମାତ୍ର ନଥିଲା, ଏଥିରେ ଥିଲା ତାଙ୍କର ପ୍ରତାପ ସହିତ ବାଜି ରଖିଥିବା ଏକ ଚତୁର ପ୍ରତିଦ୍ୱନ୍ଦ୍ୱକୁ ତଳକୁ ଖସାଇଦେବାର ପ୍ରଶ୍ନ। ଏପରି ପ୍ରତିଦ୍ୱନ୍ଦ୍ୱ, ଯାହା ସହିତ ନିଜ ପିତାଙ୍କର ମୃତ୍ୟୁ ପରଠାରୁ ଆଜିଯାଏଁ ଭେଟ ହୋଇ ନଥିଲା। ଦେଖୁଁ ଦେଖୁଁ ସେ ଆଖଡ଼ାକୁ ଓହ୍ଲାଇ ଆସିଲେ। ଅଜାଣତରେ ସେ ହାତ ଉଠାଇ ସାରିଛନ୍ତି, ଏବେ ଆଉ କଣ ଆଗପଛ ଚିନ୍ତା।

ଦେଶାଇବାବୁ ପୁଣି ଯୁବକ ପାଲଟି ଗଲେ।

# 27. ବସନ୍ତ ରାଓ ସମ୍ବାଦ

ରାଘପ୍ପାର ପରାମର୍ଶକ୍ରମେ ବାସଓଣ୍ଣୀ ଧାରୱାଡ଼ ଯାଇ ବସନ୍ତକୁ ରାଘପ୍ପା ସହିତ ଦେଖା କରିବା ପାଇଁ ଫୁସୁଲାଇଲା । 'ମୁଁ ତାଙ୍କୁ କହିଲି, ଆମ ଗୌଡ଼ବାବୁ ନାଟକ ପାଇଁ ପ୍ରାଣ ଦେଇଦେବେ। ଶୁଣିସେ କହିଲେ 'ଗୌଡ଼' ଏଡ଼େ ଉତ୍ସାହୀ, ତେବେ ତାଙ୍କର ମୋର ଦୋସ୍ତି ଜମିଯିବ। ଆଗେ ତାଙ୍କର ନାଟକ କମ୍ପାନୀ ଥିଲା । ସେ ନିଜେ ଅନେକ ସମୟରେ ଅଭିନେତାମାନଙ୍କୁ ଅଭିନୟ କରିବା ଶିଖାଇଛନ୍ତି। ସେ ଏକଥା ମଧ୍ୟ କହିଲେ, 'ତମ ଗୌଡ଼ ଯଦି ମିଶନ୍ତି ତେବେ ଆଉ ଗୋଟିଏ ନାଟକ କମ୍ପାନୀ ଖୋଲାଯାଇପାରେ। ସେ ଯଦି ଆପଣଙ୍କୁ ଦେଖନ୍ତି, ତେବେ ମୋର ବିଶ୍ୱାସ, ରାଜା ପାର୍ଟଟି ଆପଣଙ୍କୁ ଦେବେ। ଆପଣଙ୍କୁ ଦେଖିଲାମାତ୍ରେ ମୋ ମନରେ ଏଇ ବିଶ୍ୱାସ ଆସିଛି। ଆପଣ ରାଜା ପରି ମନେହୁଅନ୍ତି। ବସଓଣ୍ଣୀ ଏଇପରି ବଡ଼ମୁହଁ କରି କହିବାରୁ ଦିନେ ବସନ୍ତ ନିଜେ ତାକୁ କହିଲା, 'ଚାଲ ବସଓର୍ଣ୍ଣୀ, ଦିନେ ଧାରୱାଡ଼ ଘୁରି ଆସିବା। ଅନେକ ଦିନରୁ ସହରକୁ ଯାଇନାହିଁ।'

ବଦନାମ ଭୟରେ ଧାରୱାଡ଼ ଛାଡ଼ି ଆସିବା ଦିନରୁ ବସନ୍ତ ଗାଁର କାରବାରରେ ଏତେ ବୁଡିଯାଇଥିଲା ଯେ ସେ ଧାରୱାଡ଼କୁ ଏକାବେଳକେ ଭୁଲିଯାଇଥିଲା । ଗାଁର ଆକର୍ଷଣ କିଛି କମ୍ ନୁହଁ। ଗୋରୁ ଗାଈ, ଜମିବାଡ଼ିର ଆକର୍ଷଣ ହେତୁ ଗାଁ ଛାଡ଼ି ଆସିବା ବସନ୍ତ ପକ୍ଷରେ କଠିନ ହୋଇପଡ଼ିଥିଲା। ଛୋଟ ଛୋଟ କଥାରେ ଗାଁ ଛାଡ଼ି ଯିବାକୁ ସେ ପ୍ରସ୍ତୁତ ନଥିଲା। କିନ୍ତୁ ନାଟକରେ ରାଜାପାର୍ଟ କରିବାର ମଉକା ଯଦି ମିଳିଯାଏ ତେବେ ତା'ଠୁ ବଡ଼ କଥା ଆଉ କଣ ହୋଇପାରେ। ପ୍ରଥମଥର ସେ ଯେତେବେଳେ ନାଟକ ପ୍ରତି ଆସକ୍ତ ହୋଇପଡ଼ିଥିଲା, ସେତେବେଳେ ବାପା ଆସି ବସାଇଲାଘର ଉଜାଡ଼ି ଦେଇଥିଲେ। ଏବେ ସେଇ ଅପୂର୍ଣ୍ଣ ଆଶା ଯଦି ଅନାୟାସରେ ପୂର୍ଣ୍ଣ ହେବାକୁ ଯାଉଛି ତେବେ ଯତ୍ନକରିବା ଉଚିତ ନୁହଁ କି? ଏହା ଭାବି ବସନ୍ତ ଧାରୱାଡ଼ ଯିବାଲାଗି ପ୍ରସ୍ତୁତ ହେଲା। କାଳେ ବାପା ଜାଣିଯିବେ ଏଇ ଭୟରେ ସେ ବସଓର୍ଣ୍ଣୀ ସହିତ ରାତି ବସରେ ଯାଇ ଧାରୱାଡ଼ରେ ପହଞ୍ଚିଲା। ବସଓଣ୍ଣୀ ତାକୁ ସିଧା ରାଘପ୍ପା ଘରକୁ ନେଇଗଲା।

ରାଘପ୍ପା ପ୍ରଥମେ ତାକୁ ଭାରୀ ଆଦର କରି ଚା ପିଆଇଲା ପରେ ଭଲ କରି ଖୁଆଇଲା। କାଜୁ କିସମିସ୍, ବମ୍ୱେଇ ପେସ୍ତା ଓ ଆଠଦଶ ରକମର ଫଳ

ସେବନ କଲାପରେ ବସନ୍ତ ରାଓର ଖୁସିର ଠିକଣା ରହିଲାନାହିଁ। ବସନ୍ତଘର ଭାରୀ ଚଳପକ୍ଷ। ବିଶୁବାଈଙ୍କ ରନ୍ଧାରେ ସ୍ୱାଦୁ ଅପେକ୍ଷା ପରିମାଣ ହିଁ ଅଧିକ। ଆପଣା ଘରର ଫଳେପୁଷ୍ପେ ଖାଦ୍ୟ ଆଗରେ ରାଘସ୍ପା ଘରର ଫଳ ସମାହାର ଦେଖି ମନରେ ଏକପ୍ରକାର ଶାନ୍ତି ଆସିଲା। ଖାଇଲାବେଳେ ରାଘସ୍ପା ବଳେଇ ବଳେଇ ଭୀମସେନ ପରି ଖୁଆଉଥାଏ ଓ ତା' ସହ ଥଟ୍ଟା ତାମସା ମଧ୍ୟ କରୁଥାଏ। ବସନ୍ତ ଘରେ ଖାଇବାକୁ ବସିଲା ପରେ ହସଖୁସିର ଅନ୍ତ ନାହିଁ।

ଖାଇସାରିଲା ପରେ ଦାଣ୍ଡଘରେ ବସି ରାଘସ୍ପା କଥା କହି ରାତି ଦିଟା ଯାଏଁ ବସନ୍ତ ମନକୁ ମଜେଇଦେଲା। ନିଜ ଜୀବନରେ ନାଟକ କମ୍ପାନୀରୁ ଲାଭ କରିଥିବା ବିଚିତ୍ର ଅନୁଭୂତି ସବୁ ବର୍ଣ୍ଣନାକଲା। ପ୍ରସିଦ୍ଧ ମହବୁବଜାନ ଏହାଙ୍କ ରକ୍ଷିତା ଥିଲା, ଏକଥା ଜାଣି ରାଘସ୍ପା ପ୍ରତି ବସନ୍ତର ଶ୍ରଦ୍ଧା ଆଉରି ବଢ଼ିଗଲା। ରଙ୍ଗମଞ୍ଚ ଉପରେ ସ୍ୱପ୍ନରେ ଦେଖାଗଲାପରି ଦେଖାଦେଇ ପୁଣି ଉଭେଇ ଯାଉଥିବା ଅଭିନେତାଗଣ ଏବଂ ପ୍ରଚାରପତ୍ର ଦ୍ୱାରା ପରିଚିତ ହେଉଥିବା ବ୍ୟକ୍ତିମାନେ ଏବେ ବସନ୍ତ ଆଗରେ ସଜୀବ ହୋଇ ଉଠିଲେ। ଯେତେବେଳେ ଶୁଣିଲା ମହବୁବଜାନର ଭୁଲ ଉଚ୍ଚାରଣକୁ ରାଘସ୍ପାହିଁ ସୁଧାରି ଥିଲା, ସେତେବେଳେ ବସନ୍ତ ଅବାକ୍ ହେଲା, ବଡ଼ବଡ଼ ଅଭିନେତାମାନେ ମଧ୍ୟ ଭୁଲ୍ ଉଚ୍ଚାରଣ କରନ୍ତି। ବିଭିନ୍ନ ଗାଁରେ ହୋଇଥିବା ଗଣ୍ଡଗୋଳ, ତମ୍ବୁ ଛିଣ୍ଡାଛିଣ୍ଡି, ମାତାଲମାନଙ୍କୁ ବାହାରକୁ ବାହାର କରାଇବା, ମିଛ କହି ଭୟ ଦେଖାଇ ଲାଇସେନ୍ସ କରାଇବା, ରଙ୍ଗମଞ୍ଚ ଉପରେ ଜିନିଷ ଭୂଲିଯାଇଥିବା ହେତୁ ହୋଇଥିବା ଗଣ୍ଡଗୋଳ, ଠିକ୍ ସମୟରେ ବେତନ ନପାଇଲେ 'ଆମେ ବେଶ ହେବୁ ନାହିଁ' କହି ଅଭିନେତାମାନଙ୍କର ଅଡ଼ିବସିବା ଅଭ୍ୟାସ ଇତ୍ୟାଦି କଥାରେ ଅଳ୍ପବହୁତ ସତ୍ୟତା ଥିଲେ ସୁଦ୍ଧା ତା' ଉପରେ ଅନେକ ରଙ୍ଗ ଚଢ଼ାଇ ରାଘସ୍ପା ବଖାଣିଗଲା। ତା' କଥା ଶୁଣି ହସି ହସି ବସନ୍ତର ପେଟ ବଥା ହୋଇଗଲା।

ରାଘସ୍ପାର ଏ ଆୟୋଜନ ପଛରେ ଆଉ ଏକ ଗୋପନ ପ୍ରେରଣା କାମ କରୁଥିଲା। ବସନ୍ତ ସୁନ୍ଦର। ତାକୁ ଦେଖିବାମାତ୍ରେ କନ୍ୟାପିତା ହୋଇଥିବା ହେତୁ ରାଘସ୍ପା ମନରେ ନିଶ୍ଚୟ ଥରେ ଏଇ ଚିନ୍ତା ଦେଖାଦେଇଥିବ ଯେ 'ଶାନ୍ତା ପାଇଁ ଇଏ ଭଲ ହୁଅନ୍ତା ନାହିଁ?' କ୍ରମେ ବସନ୍ତ ରାଘସ୍ପାର ହାତମୁଠାକୁ ଆସିବାକୁ ଲାଗିବାରୁ ରାଘସ୍ପା ମନରେ କଥାଟିଏ ଦୃଢ଼ହେବାକୁ ଲାଗିଲା – ଯାକୁ ଜୋଇଁ କରିନେବାକୁ ହେବ। ଦେଶାଇଙ୍କ ଉପରେ ଜନ୍ମିଥିବା କ୍ରୋଧ ଯଦି ତାକୁ ଏକ ଅମୀର ଜୋଇଁ ପ୍ରାପ୍ତ ହେବାରେ ସହାୟତା କରୁଛି, ତେବେ ତହିଁରେ ଦୋଷ ରହିଲା କେଉଁଠି ?

'ଶୁଣିଥିଲି ଆପଣ ଗାଁରେ ନାଟକ କରୁଥିଲେ। ଗାଁର ଯାତ୍ରା ମାରୁଆଡ଼ିର ପଗଡ଼ିପରି – ଯେମିତି ବାନ୍ଧୁଛ ବାନ୍ଧ, ଚଳିଯିବ! ଗାଁ ଲୋକଙ୍କୁ ଦି'ପଦ ଶିଖାଇବାକୁ ଗଲେ, ଶିଖାଇବା ଲୋକର ଇତିଶ୍ରୀ ହୋଇଯିବ। ସହରରେ ହେଉଥିବା ନାଟକହିଁ ଅସଲ ନାଟକ। ଗୋଟିଏ ହେଣ୍ଡବିଲ ଜାଗାରେ ଦି'ଟା ଛାପିଦେଲେ ନାଟକର ରଙ୍ଗ ବଦଳିଯିବ। ପ୍ରକୃତ କଥା ହେଲା...ଅଭିନେତା ଅନୁଭବୀ ହେବା ଦରକାର। ସ୍ତ୍ରୀ ଭୂମିକାରେ ସ୍ତ୍ରୀଲୋକ

ଅଭିନୟକରିବା ଆବଶ୍ୟକ। ଭଲ ଗୀତ, ପୁଣି ଗୀତ ଗାଇବା ପାଇଁ ତିନିଚାରିଜଣ ଲୋକ ଥିବା ଦରକାର। ବେଶ୍ କିଛି ଚାନ୍ଦା ମଧ୍ୟ ଜମାଇବା ଦରକାର। ଆଉ ଯଦି ଏସବୁ ହୁଏ, ତେବେ ବସନ୍ତ, ଖୁସିରେ ଟିକଟର ଦାମ ଆଠଆଠଣା କରି ରଖ, ଲୋକେ ଦୌଡ଼ି ଆସିବେ। ନାଟକରେ ବେଶପଟାର ଗୁରୁତ୍ୱ ମଧ୍ୟ ଅନେକ ବେଶୀ। ମୁଠାମୁଠା କରି ପଇସା ବିଞ୍ଚିଦେବାକୁ ପଡ଼ିବ, ପୁଣି ସଂଗ୍ରହ ମଧ୍ୟ ସେମିତି ହେବା ଦରକାର। ତେବେଯାଇ ନାଟକ ହେବ। ଖାଲି ମୁଢ଼ି ପିଆଜ ଖୁଆଇ ଷ୍ଟେଜ ଉପରେ ନଚାଇଲେ ପଇସାକୁ ପଇସା ଯିବ, ନାମକୁ ନାମ ମଧ୍ୟ ଯିବ।'

ରାଘବାର ଚିନ୍ତାଧାରାସହ ବସନ୍ତ ସଂପୂର୍ଣ୍ଣ ଏକମତ ହେଲା, ତା' ସହ ସେ ଆପଣାମନର ସଂଶୟଟିଏ ମଧ୍ୟ ବ୍ୟକ୍ତକଲା। 'ରାଜା ଭୂମିକାରେ ଅଭିନୟ କରିବା ପାଇଁ ଚେହେରାବାଲା ଲୋକ ଦରକାର ହବ, ନାଁ କଣ ରାଘବାଜୀ ?'

ବସନ୍ତର ମନକଥାକୁ ଯାଞ୍ଚ କରି ରାଘବା କହିଲା, 'ନାଇଁ, ସେମିତି ଜାଣିବା ଶୁଣିବା ଲୋକର ବିଶେଷ ଦରକାର ନାହିଁ। ବେଶ କରି ପାରିଲେ ଗଧକୁ ମଧ୍ୟ ରାଜା ବନାଇ ଦିଆଯାଇପାରେ। ଟିକିଏ ଲମ୍ବା ହୋଇଥିବ, ସ୍ପଷ୍ଟ ଉଚ୍ଚାରଣ କରିପାରୁଥିବ, ସ୍ୱର ଗମ୍ଭୀର ହୋଇଥିବ– ଏସବୁ ଆପେ ଆପେ ହୁଏ ନାହିଁ, ବୁଝିଲ ବସନ୍ତ ରାଓ, ଯାକୁ ଶିଖିବାକୁ ପଡ଼େ। ଅଭିଜ୍ଞ ଲୋକର ପାଦତଳେ ବସି ଶିଖିବାକୁ ହୁଏ। ନାଟକ ହେଲା ଏକ କଳା। ଅଭିନୟ କଳା ଅତି କଠିନ। ତୁମପରି ହୁସିଆର ପିଲାକୁ ଶିଖିବାକୁ ହେଲେ କମ୍‌ରେ ପନ୍ଦର ଦିନ ନିୟମିତ ଅଭ୍ୟାସ କରିବାକୁ ପଡ଼ିବ। ଦିନକୁ ଛଅଘଣ୍ଟା କରି। ଅଭିନୟ ସେମିତି ହୁଏନାହିଁ। ଆଉ ଏସବୁ କଥା ସହିତ ଅଭିନେତା ଯଦି ଚେହେରାବାଲା ଲୋକ ହୋଇଥାଏ ତେବେ ତ 'ସୁନାରେ ସୁଆଗା' ମିଶିଲାପରି କଥା। ଏବେ ଏଇ ତୁମରି କଥା ଦେଖ– ତୁମେ ଯଦି ଏବେ ମୋତେ ଆସି କହ ଯେ ମୋର ଚେହେରା ଅଛି, ମୋତେ ରାଜା ପାର୍ଟ ଦିଅ, ତାହେଲେ ମୁଁ ସଫା ନାହିଁ କରିଦେବି। ମାତ୍ର ତୁମର ବୁଦ୍ଧି, ଶକ୍ତି, ଶିଖିବାର ଇଚ୍ଛା, ଏସବୁ ଜାଣିଲାପରେ କହିବାକୁ ପଡ଼ିବ ଯେ 'ହଁ ପିଲାଟାର ରୂପ ଅଛି, ଆଜି ନ ହେଲେ କାଲି ଶିଖିଯିବ।'

'ମୁଁ ଶିଖିବା ପାଇଁ ପ୍ରସ୍ତୁତ। କିନ୍ତୁ ଆପଣ କଣ ଭାବୁଛନ୍ତି ମୁଁ ଶିଖି ପାରିବି?'

ତେବେ କୁହ, ଭାଇ ମୁଁ ଶିଖିବାକୁ ପ୍ରସ୍ତୁତ। ଏମିତି କେଉଁ ବିଦ୍ୟା ଅଛି ଯାହା ତୁମପରି ଲୋକକୁ ଆସିବନାହିଁ? ମୁଁ ଓ ତୁମେ ଏକାଠି 'ଆର୍ଭାଟ ନାମ ଦେଇ କମ୍ପାନୀଟିଏ ଗଢ଼ିବା। ଯଦି ଏଠାକୁ କିଛିଦିନ ଯିବାଆସିବା କର ତେବେ ତାର ଆକର୍ଷଣ ତୁମେ ବୁଝିପାରିବ। ଅଭିନୟ ଏକ ବିଦ୍ୟା। ସାଧାରଣ ଅଭିନୟରୁ ଯାଇ କିପରି ମିଶ୍ର ଅଭିନୟରେ ପହଞ୍ଚି ହୁଏ, ପୁଣି ମିଶ୍ରରୁ ଯାଇ କିପରି 'ତଶର'ରେ ପହଞ୍ଚି ହେବ, କେତେବେଳେ ଭ୍ରୂକୁଟୀ ପ୍ରକାଶ କରାଯିବା ଉଚିତ, କେମିତି ମଞ୍ଚରେ ପ୍ରବେଶ କରିବ, ରୂପସଜ୍ଜା ଖରାପ ହେବନାହିଁ, ଅଥଚ କି ଉପାୟରେ କପାଳ ଉପରେ ଆଙ୍ଗୁଠି ରଖିହେବ, ନିଶ ଖସିବନାହିଁ, ଅଥଚ ନିଶରେ 'ତାଓ' ଦେଇହେବ,

ଆଖିକୁ କେମିତି ଲୁହ ଆଣିହେବ, ଅଭିନେତାର ମୁଣ୍ଡରେ ଆଘାତ ନଦେଇ କେମିତି ଗଦା ବୁଲାଯିବ, ଏସବୁ ଛୋଟ ଛୋଟ କଥା ହେଲେହେଁ ତିଳେତିଳେ ମିଶି ତାଳ ହୁଏ ବୁଝିଲ ଭାଇ। ଏଇ ହେଲା କଥା। ଏସବୁ କଥାପାଇଁ ତୁମେ ବାହାଦୂର ଦେଖାଇ ଟାଣୁଆହୁଅ।'

'ଆପଣ ଯେମିତି ନଚାଇବେ ମୁଁ ସେମିତି ନାଚିବାକୁ ତିଆର। ବିଦ୍ୟା କଣ କାହାରି ବାପା ସଂପତ୍ତି?' ବସନ୍ତ ରାଓ ଶିଷ୍ୟଭାବ ଦେଖାଇ କହିଲା। ଭିତରେ ଭିତରେ ସେ ନିଜକୁ ରାଜା ଭୂମିକାରେ କଳ୍ପନା କରିବାକୁ ଲାଗିଲା।

ପରଦିନ କାଳି ଅନ୍ଧାରରୁ ବସନ୍ତ ବସଓର୍ଣ୍ଣୀ ସହ ଯିବାପାଇଁ ବାହାରିଲା। ଚା' ପିଇଲାବେଳେ ଶାନ୍ତା ସହ ପ୍ରଥମ ଦର୍ଶନ ହୋଇଗଲା।

ଏହାପରେ ବସନ୍ତ ସପ୍ତାହରେ ଥରେ ଦି'ଥର କରି ଗୋପନରେ ଧାରୱାଡ଼ ଯିବା ଆସିବା କରିବାକୁ ଲାଗିଲା। 'ମଦର ବେଙ୍କାସାନୀ' ହିରୋଇନ 'ସୁନ୍ଦରସାନୀ', ହାସ୍ୟ ଶିରୋମଣି 'ତୁଲଦାରାମ', ଖଳ ନାୟକ ରାଜଶେଖରପ୍ପା, ହୀରା ଉଦ୍‌ଦୁରାଓ, ଡବଗଲ୍ଲି, ସଙ୍ଗୀତମାର୍ତ୍ତଣ୍ଡ ଗଣ୍ଠୁଆ ଆଦିଙ୍କ ସହିତ ରାଘପ୍ପା ବସନ୍ତର ପରିଚୟ କରାଇଦେଲା। ଆସନ୍ତା ବର୍ଷକୁ ଦେଶାଇବାବୁ କମ୍ପାନୀ ଖୋଲୁଛନ୍ତି, ସେଥିପାଇଁ ଆପଣମାନଙ୍କୁ ଆସିବାକୁ ପଡ଼ିବ ଇତ୍ୟାଦି କଥାବାର୍ତ୍ତା ସେମାନଙ୍କ ସହ କଲା। ସୁନ୍ଦରସାନୀ ଘରେ ଏକ ଛୋଟିଆ ବୈଠକ ବସିଲା। ସେଠାରେ ବସନ୍ତ ତା'ଠାରୁ ପାନ ନେଇ ତା'ହାତରେ ପାଞ୍ଚଟି ଟଙ୍କା ଦେଲା। ପାଦ ହାରମୋନିୟମ ବଜାଇଲାବାଲା ଚନ୍ଦ୍ରପ୍ପା ସହ ଦେଖାକରି ଖୋଜଖବର ନେଲା, କେଉଁ ହାରମୋନିୟମ କମ୍ପାନୀର ହାରମୋନିୟମ ଭଲ। ତାର ଦାମ କେତେ, ତାର ଦୋଷ ଗୁଣ କଣ ସେ ବିଷୟରେ ଆଲୋଚନା ହେଲା। ଏଇସବୁ କଥା ମଧ୍ୟରେ ଟିକିନିଖି ସବୁଥିରେ ରାଘପ୍ପାର ଅଧିକ ଜ୍ଞାନ ଥିବାର ଦେଖି ବସନ୍ତର ଗୁରୁ ପ୍ରତି ଅଧିକ ଆସ୍ଥା ଆସିଲା। ଫକୀରପ୍ପା ସହ ଦେଖାକରି ରାଘପ୍ପା ଖବର ନେଲା, ସାମ୍ନାର ପରଦା, ଘର, ରାସ୍ତା ଓ ଜଙ୍ଗଲ ଆଦି ଦୃଶ୍ୟର ଆଠଖଣ୍ଡ ପରଦାର ଦାମ କେତେ ପଡ଼ିବ, ଚାରି ଓ ଛଅଖଣ୍ଡ ପରଦାର କେତେ ଦାମ ପଡ଼ିବ। ସବୁ ହିସାବ ମିଳାଇ – ଅଭିନେତାମାନଙ୍କର ବେତନ, ଖାଇବା ଖର୍ଚ୍ଚ ଆଦି ନିତିଦିନିଆଁ ଖର୍ଚ୍ଚର ଅତିରିକ୍ତ କେବଳ ଜିନିଷପତ୍ର ପାଇଁ ଦି'ହଜାର ଟଙ୍କା ଆବଶ୍ୟକ। ଏ ଅଙ୍କକୁ ଦେଖି ବସନ୍ତର ଆଖି ବିସ୍ଫାରିତ ହୋଇଗଲା। ଗାଁରେ ଶହେ ଟଙ୍କାରେ ପୂରା ନାଟକ ହୋଇସାରି କିଛି ବଳିପଡ଼େ। ଏଠାରେ ଶହେ ଟଙ୍କା କେବଳ ମୁକୁଟରେ ଉଡ଼ିଯିବ!

ତାହା ଦେଖି ରାଘପ୍ପା ତାକୁ ଉତ୍ସାହ ଦେଇ କହିଲା, 'ଆରେ ଦେଶାଇବାବୁ, ତମର ହେଲା କଣ? ତମଠି ଯେତିକି ସମ୍ପତ୍ତି ଅଛି ମୋ'ଠି ସହରରେ ଯଦି ସେତିକି ଥାଆନ୍ତା, ତେବେ ଦେଖାଇଦେଇଥାନ୍ତି ଯେ ମୁଁ କଣ କରିପାରେଁ।'

ଘରର ଚାଉଳ ବସ୍ତା ଓ ପୁଞ୍ଜିପଟା ବିକ୍ରିକଥାରେ ରାଘପ୍ପା ବିଶେଷ ଆଗ୍ରହ ଦେଖାଇଲାନାହିଁ। କାହିଁକି ନାଁ, ତହିଁରୁ କେତେ ବା ମିଳିବ? ଏହା ସତ ଯେ

ବର୍ତ୍ତମାନ ତହିଁରୁ କିଛି ସାହାଯ୍ୟ ମିଳିପାରେ। ମାତ୍ର ଏ ସବୁ ଛୋଟ ଛୋଟ କାମ ପେଶାଦାର ଲୋକଠାରେ ଶୋଭାପାଏ ନାହିଁ।

ସେଥିରେ କିଛି ହୋଇପାରେ, ମାତ୍ର ଦେଶାଇବାବୁ, ଏକଥା ଆପଣ କେତେଦିନ ଯାଏଁ ମୁରବୀମାନଙ୍କ ଆଖିରୁ ଲୁଚାଇ ରଖି ପାରିବେ? ଆପଣ ଏବେ ସାବାଳକ ହେଲେଣି। ପୁଣି ଏଥିରେ ଆପଣ ପଇସା ନଷ୍ଟ କରିବାକୁ ଯାଉନାହାନ୍ତି। ଏ ମଧ୍ଯ ଏକ ବ୍ୟବସାୟ। ପଇସା ଖଟାଇବ, ପଇସା ଟାଣିବ। ଏଥିରେ ଲାଜ କରିବାର କଣ ଅଛି? ଲାଜ ସଂକୋଚ଼ କରିବା କାଳ ଚାଲିଗଲାଣି। ହଁ, କିଛି ଲୋକ ଯାକୁ ବଦନାମ କରିବେ: କିନ୍ତୁ ଏ ବ୍ୟବସାୟରେ ଆପଣ ଯେତିକି ହୁସିଆର ଓ ନିଷ୍ଠାରେ ଚଳିବେ ସେତେ ଅଧିକ ଲାଭ ହେବ। ଯଦି ଆପଣ ବଦଅଭ୍ୟାସ କରନ୍ତି ଓ ଅନ୍ୟ ହାତର କଣ୍ଢେଇ ପାଲଟିଯାଆନ୍ତି, ତେବେ ସେମାନେ ଆପଣଙ୍କୁ ଧୋକା ଦେବେ। ଆଉ ନହେଲେ, ଏମିତି ଦେଖିଲେ ଘରେ ଥାଇ ସୁଦ୍ଧା ଖରାପ ବାଟରେ ଯାଉଥିବା ଲୋକ ଲୋକସାନରେ ପଡୁଛି। ମୋର ସବୁରକମର ସଉକ ଥିଲା, ମୋର ବା କଣ କ୍ଷତିହୋଇଯାଇଛି କହିଲ ଭାଇ? ମଣିଷ ସଉକ କରି କିଛି କରୁ, ମାତ୍ର ତହିଁରେ ବୁଡ଼ିଯିବା ଉଚ଼ିତ ନୁହଁ। ବୁଡ଼ି ଯଦି ଗଲା, ତେବେ ଗଲା। ଆପଣଙ୍କ ପାଖରେ ଯଦି ଏତିକି ବିବେକ ଅଛି ତେବେ କାହାକୁ ଭୟ ବା ସଂକୋଚ଼ କରିବା ଅନାବଶ୍ୟକ। ଗୋପନ ରଖିବାର ମଧ୍ୟ ଆବଶ୍ୟକତା ନାହିଁ। ନାଟକ ଏକ ବ୍ୟବସାୟ।

ଏଇ ଅର୍ଦ୍ଧଗମ୍ଭୀର, ଅତିପରିଚ଼ିତ ଏକ ବଚ଼ନ ଓ ବହୁବଚ଼ନ ମିଶ୍ରିତ ଉପଦେଶକୁ ମନକୁମନ ଦୋହରାଇ ବସନ୍ତରାଓ ବସରେ ବସି ଗାଁରେ ପହଞ୍ଚିଲା।

# ୨୪. ଚମ୍ପକ୍କାର ଚିନ୍ତା

ଚମ୍ପକ୍କା ମନରେ ନାନା ରକମର ଚିନ୍ତା ଦେଖାଦେଲା। ଘରେ ଏବେ ଆଗପରି ଗହଳଚହଳ ନାହିଁ। ଏ ପରିବେଶର ତୀବ୍ର ଅନୁଭବ ଯଂତ୍ରଣାରେ ପେଶିହୋଇ ଯାଉଥିବା ଚମ୍ପକ୍କା ବ୍ୟତିତ ଆଉ କାହାର ବା ଥାଇପାରେ? ତାର ବୟସ ଏବେ ସଇଁତ୍ରିଶ ବର୍ଷ ହେବାକୁ ଯାଉଛି। ଗତ କୋଡ଼ିଏ ବର୍ଷର ଘରକରଣା ଭିତରେ ସେ ଅନେକ କିଛି ଦେଖିଛି। ଦୁଃଖ ସୁଖ ଉଭୟକୁ ସେ ଦେଖିଛି। ମାତ୍ର ଏବେ ଦେଖୁଥିବା ଶୂନ୍ୟତା ଟିକିଏ ଭିନ୍ନ ପ୍ରକାରର। ସ୍ୱାମୀଙ୍କୁ ସେ ପ୍ରିୟତମ ପରି ଅତିନିକଟରୁ ଦେଖି ଆସୁଛି। ସେ ତାଙ୍କର ଅନ୍ତର ପର୍ଯ୍ୟନ୍ତ ଚିହ୍ନେ। ତାଙ୍କର ଖୁସିବାସିଆ ସ୍ୱଭାବ ପଛରେ ଲୁଚିରହିଥିବା ଦ୍ୱନ୍ଦ୍ୱକୁ ସେ ଜାଣେ। ଆଜିକାଲି ସ୍ୱାମୀଙ୍କଠାରେ ଯେଉଁ ପରିବର୍ତ୍ତନ ଆସିଛି ସେ କଥା ଆଉ କାହାକୁ ନଦିଶୁ, ତାକୁ ସ୍ପଷ୍ଟ ଦିଶୁଛି। ତାଙ୍କର ମନର ପାଚେରୀରେ ଯେଉଁ ଫାଟ ଦେଖା ଦେଇଛି, ତାହାକୁ ଦେଖି ସେ ନିତି ମୂକ ବ୍ୟଥାରେ ବ୍ୟଥିତ ହୋଇ ଦିନ କାଟୁଛି। ତାର ସ୍ୱାମୀ ହାରିବାକୁ ଲାଗିଛନ୍ତି।

ସେ କଣ ବୁଢ଼ା....? ଖାଦ୍ୟ କମି ଯାଉଛି। ଲୁଗାରେ ଟିକିଏ ଧୂଳି ଲାଗିଗଲେ ତାକୁ ଦୂରକୁ ଫୋପାଡ଼ିଦେଇ ଅଲଗା ଲୁଗା ପିନ୍ଧୁଥିବା ରାଘପ୍ପାର ଶାର୍ଟ କଲରରେ ଇଞ୍ଚେ ବହଳର ମଳି ସ୍ପଷ୍ଟ। ଦେହ ଆଗପରି ବଳିଷ୍ଠ, ମାତ୍ର ମୁହଁରୁ ପୂର୍ବର ଆନନ୍ଦଭାବଟି ହଜିଯାଇଛି। ମୁହଁ ରେଖା ଏତେ ଗଭୀର ହୋଇଯାଇଛି, ଯେମିତିକି କିଏ ଗାର ଟାଣିଦେଇଛି। ବାହାର ଲୋକଙ୍କୁ ଏହା ଦିଶୁ ନଥାଇପାରେ, ମାତ୍ର ଚମ୍ପକ୍କା ପାଇଁ ଏହା ଭୟର ପୂର୍ବ ସୂଚନା। ଏମିତି ସମୟ ଯାଇଛି, ଯେତେବେଳେ ଘରେ ଆଗାମୀକାଲି ପାଇଁ ଦାନାଟିଏ ସୁଦ୍ଧା ନାହିଁ, ତଥାପି ଚିନ୍ତାକୁ ଠଣାରେ ଟେକିରଖି ମିନିଟକ ଭିତରେ ନିଘୋଡ଼ହୋଇ ଶୋଇଯିବା ଲୋକ ଆଜିକାଲି ରାତି ଦିଟା ଯାଏଁ ପାର୍ଶ୍ୱ ବଦଳାଉଛନ୍ତି।

ଆଉରି କଥାଟିଏ। ଆଜିଯାଏଁ ସ୍ୱାମୀର ଚିନ୍ତାଧାରାକୁ ବୁଝିବା ପାଇଁ ଚମ୍ପକ୍କାକୁ ତାଙ୍କର କାମ ଉପରେ ନିର୍ଭରକରି ରହିବାକୁ ପଡୁଥିଲା। ସଦା ହସହସ ସ୍ୱାମୀ କିଛି କାମ କରିସାରିବା ପରେ ହିଁ ସେ ବୁଝୁଥିଲା ଯେ – ଆଚ୍ଛା, ତାହେଲେ କଥା ହେଉଛି ଏଇଆ। ମାତ୍ର ଆଜିକାଲି ସ୍ୱାମୀ ନିଜେ କହିହେଉଛନ୍ତି। ଆଗେ ମନକୁ ଯେଉଁ ଭାବନା ଆସୁଥିଲା, ତାର ଛାୟା ମୁହଁ ଉପରେ ଆଦୌ ପଡୁ ନଥିଲା, ଏବେ ମୁହଁ ଦେଖିଲାମାତ୍ରେ କଥା ଜଣାପଡ଼ିଯାଉଛି ଓ ତାଙ୍କ ଓଠ ବଳେବଳେ ହଲୁଛି।

ଶେଷରେ ଦିନେ ଚା' ପିଉପିଉ ସ୍ପଷ୍ଟ ଭାବରେ ଗୁଣୁଗୁଣୁ କରି କହିଲା, 'ଜୀବନ ଯାଏ ଯଦି ଯାଉ, କିନ୍ତୁ ତାଙ୍କ ହାତରେ ପଡ଼ିବି ନାହିଁ।'

ଶାନ୍ତା ଓ ଚମ୍ପକ୍କା ଦୁହେଁ କଥାଟି ଶୁଣିଲେ। ଏତେ ସ୍ପଷ୍ଟ କଥା ଶୁଣି ସ୍ୱାମୀ ତାକୁ କିଛି କହୁଛନ୍ତି ଭାବି ଚମ୍ପକ୍କା କହିଲା, 'କାହିଁକି, କଣ ହେଲା ?' ରାଘୱା ଆଶ୍ଚର୍ଯ୍ୟ ହୋଇ ପଚାରିଲା 'କେଉଁ କଥା ?'

'ତୁମେ କଣ କହୁଥିଲ ?'

'କଣ କହୁଥିଲି ? ତୋ ମୁଣ୍ଡରେ ଭୂତ ଚଢ଼ିନାହିଁ ତ ?'

ଥାକରେ ଚିନିଡ଼ବା ରଖିଦେବା ପାଇଁ ଶାନ୍ତା ଉଠିଥିଲା, ବାପାଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ହୋଇ ଯେମିତି ଠିଆ ହୋଇଥିଲା, ସେମିତି ଠିଆହୋଇ ରହିଲା।

'ତୁ ଶୁଣିଲୁ ନାହିଁ ଶାନ୍ତା ?'

ଶାନ୍ତା ସାକ୍ଷୀଦେଲା 'ହଁ, ଆପଣ କଣ କହୁଥିଲେ...କହୁଥିଲେ କଣ କାହା ହାତରେ ପଡ଼ିବେ ନାହିଁ।'

ରାଘୱା ବିରକ୍ତ ହୋଇ ପାଟିକଲା 'ମୁଁ କାହାକୁ କିଛି କହିନାହିଁ। ତୁମେମାନେ ପାଗଳପରି କଥାବାର୍ତ୍ତା କରି ମୋତେ ରଗାଅନାହିଁ କହୁଛି।'

'ଆରେ, ତୁମର ହେଲା କଣ ? ଏମିତି କାହିଁକି...?'

'ଖବରଦାର,' କହି ରାଘୱା ଢକଢକ କରି ଚା' ତକ ଢୋକିଦେଇ ସେଠାରୁ ଉଠିଗଲା।

ତା'ପରଠାରୁ ରାଘୱାର ସ୍ୱଗତୋକ୍ତି ଶୁଣି ମଧ୍ୟ ଚମ୍ପା ନଶୁଣିଲା ପରି ବ୍ୟବହାର କରେ। ଏଇପରି ନିର୍ବାଧ ଭାବରେ ରାଘୱାର ସ୍ୱଗତୋକ୍ତି ଆଉରି ବଢ଼ିଗଲା। ଚମ୍ପକ୍କାକୁ ଡର ଲାଗିଲା। ସ୍ୱାମୀ ବାର୍ଦ୍ଧକ୍ୟ ଆଡ଼େ ମୁହାଁଇଛନ୍ତି। ଦିନେ ସେ ଶାନ୍ତାକୁ କହିଲା, 'ମୁଁ ଭଗବାନଙ୍କୁ ପ୍ରାର୍ଥନା କରୁଛି, ତୋର ବାହାଘର ପରେ ସେ ଯେମିତି ମୋତେ ତୋ ବାପାଙ୍କ ଅପେକ୍ଷା ଆଗରୁ ତାଙ୍କଠାକୁ ଡାକିନିଅନ୍ତି। ଆଉ ବେଶୀଦିନ ରହିବାକୁ ଇଚ୍ଛା ନାହିଁ। ତୋର ଜନ୍ମ ସମୟରେ ଯଦି ମରିଯାଇଥାନ୍ତି, ତେବେ ଏତେବେଳକୁ ମୋର ପନ୍ଦର ଥର ଶ୍ରାଦ୍ଧ ହୋଇସାରନ୍ତାଣି।' ଏହା କହୁ କହୁ ତାର ଆଖି ଛଳଛଳ ହୋଇ ଆସିଲା।

ଏଇ ତାର ଚିନ୍ତା।

ତାର ଅନ୍ୟ ଚିନ୍ତାଟିଏ ମଧ୍ୟ ଅଛି। ଏ ବୟସରେ ସେ ଯଦି ଗର୍ଭବତୀ ହୁଏ ତେବେ ? ପ୍ରଥମ କଥା ମରଣର ଭୟ, ଦ୍ୱିତୀୟ କଥା ଯନ୍ତ୍ରଣାର ଭୟ, ସାରାଜୀବନ ସେ ଦୁଃଖ ଭିତରେ ଦିନ କାଟିଛି। ଏବେ ସେଇ ଦୁଃଖ ଭିତରେ ସବୁକିଛିକୁ ସ୍ୱୀକାର କରିବା ପାଇଁ ପ୍ରସ୍ତୁତ ହେଲା। 'ଡାକ୍ତରମାନେ ସ୍ପଷ୍ଟ କରି କହି ଦେଇଛନ୍ତି, ତେଣୁ ମୃତ୍ୟୁ ନିଶ୍ଚିତ। ଏମିତିରେ ପନ୍ଦରବର୍ଷ ବିତିଗଲାଣି, ହଏତ ମରିବି ନାହିଁ; ମାତ୍ର ପୁଅ ଯେ ହେବ ଯାର କି ନିଶ୍ଚିତତା ଅଛି ? ଯଦି ପୁଅ ହୁଏ ଆଉ ମୁଁ ମରିଯାଏ ଏତେ ଆଶାରେ ଜନ୍ମ ଦେଇ ପିଲାକୁ ଅନାଥ କରିଦେଇ

ମରିଯାଏଁ ଯଦି....?'। ଏଇପରି ଜୀବନମରଣ ପ୍ରଶ୍ନ ତାକୁ ଘେରି ରହିଥିଲା। ତଥାପି ସନ୍ତାନ ଆଶାରେ ସ୍ୱାମୀ ପାଖକୁ ଆସିଲେ, ସେ ବା କଣ କରିବ? ଏହା ଭାବି ଚୁପ୍ ହୋଇଯାଏ ଯେ ଏ ସବୁ ଭାବିବା ମୋର କାମନୁହଁ। ତଥାପି ସେଇ ଚିନ୍ତା ପୁଣି ଘୋଟିଯାଏ।

ଆଉରି ଚିନ୍ତାଟିଏ ଥିଲା। ରତ୍ନାର ପିଲା ନାହିଁ। ତା ଆଗରେ ଏଇ ବୁଢ଼ୀ ବୟସରେ ଗର୍ଭବତୀ ହେଲେ ସେ ଦୁଃଖ ପାଇପାରେ। ସେତିକି ନୁହଁ, ତା ମୁହଁରୁ ଆହାର କାଢ଼ିନେଲା ପରି କଥା ହେବ! ହାୟ ହାୟ...।

ମହାଭାରତ ଓ ଭାଗବତ ପାରଣା କରୁଥିବା ଚମ୍ପାର ଭୟ ହେଲା, ଏଇ ସବୁ ଦ୍ୱାରା ତା ସ୍ୱାମୀ ନିଜକୃତ ଅଧୋଗତିର ଫଳ ଭୋଗୁନାହାନ୍ତି ତ? ମାତ୍ର ଏ ସବୁପାଇଁ ସ୍ତ୍ରୀ ଲୋକଟିଏ ହୋଇ ସେ ବା କଣ କରିପାରିବ?

ମହବୁବଜାନ୍ ସହ ସ୍ୱାମୀର ସଂପର୍କ କଥା ସେ ଯେତେବେଳେ ଜାଣି ପାରିଲା, ସେତେବେଳେ ତାକୁ ସହିବାପରି ଶକ୍ତି ତାର ଥିଲା; ମାତ୍ର ଏବେ ଯେଉଁ ନୈତିକ ପ୍ରଶ୍ନ ଉଠୁଛି ତାହା ଟିକିଏ ଅନ୍ୟ ଧରଣର। ତା'ଛଡ଼ା ଆଗେ ଅଭେଦ୍ୟ ଦୁର୍ଗପରି ରହିଥିବା ତାର ସ୍ୱାମୀ ଏବେ ତାରି ଆଖି ଆଗରେ ଭୁଷୁଡ଼ି ପଡୁଥିବାର ଦେଖି ତାର କଳିଜା ପାଣି ହୋଇଗଲା।

କାନ୍ଥରେ ପଡ଼ିଥିବା ଫାଟ ଦେଖିଲେ ମନରେ ଯେଉଁ ବ୍ୟଥା ହୁଏ ତା'ଠାରୁ ହଜାରେ ଗୁଣ ବେଶୀ ବ୍ୟଥା ହେଉଛି ଏକ ଲୁହାର ପୁରୁଷ ଭାଙ୍ଗି ପଡୁଥିବାର ଦେଖି। କାଳିଦାସ ଅଜରାଜଙ୍କର ବାର୍ଦ୍ଧକ୍ୟ ବର୍ଣ୍ଣନା କାଳରେ 'ପ୍ଲକ୍ଷ ପ୍ରରୋହ ଇବ ସୌଂଧତଳଂ ବିଭେଦ' (ବରଗଛର ଛାୟା ଯେପରି ପ୍ରାସାଦର କାନ୍ଥକୁ ଜୀର୍ଣ୍ଣ କରିଦିଏ ସେହିପରି ଇନ୍ଦୁମତୀର ବିରହ ଅଜଙ୍କ ହୃଦୟକୁ ଜୀର୍ଣ୍ଣ କରିଛି)।

ଏତିକିରେ ଚମ୍ପାର ଚିନ୍ତା ଶେଷ ହେଲାନାହିଁ। ଆହୁରି ଚିନ୍ତାଟିଏ ଥିଲା। —ଶାନ୍ତାର ଚିନ୍ତା।

ଶାନ୍ତା ଦିନୁଦିନ ଲମ୍ବା ହୋଇଯାଉଛି। ଗୋଲାପକଢ଼ିପରି ପତଳା ଓ ନହକା। ରତ୍ନାଠାରୁ ସେ ଅଧଫୁଟ ଲମ୍ବା ହୋଇଗଲାଣି। ପନ୍ଦରବର୍ଷରେ ସେ ଏଡ଼େ ସୁନ୍ଦର ହୋଇଯିବ ବୋଲି କାହାରି ମନେହେଉନଥିଲା। ବାପା ମା' ଦିହେଁ ସୁନ୍ଦର। ମାତ୍ର ଶାନ୍ତାର ଗୌରବର୍ଣ୍ଣ ଓ ଲମ୍ବା ଦେହଯଷ୍ଟିର ସୌନ୍ଦର୍ଯ୍ୟ ଅନ୍ୟଧରଣର। ଯେଉଁମାନେ ତାକୁ ଜାଣନ୍ତି, ପ୍ରାୟତଃ କହନ୍ତି ଯେ ତାକୁ ଯିଏ ବାହାହେବ ସେ ସୌଭାଗ୍ୟଶାଳୀ ହେବ। ଝିଅର ସୌନ୍ଦର୍ଯ୍ୟକୁ ନେଇ ଚମ୍ପାଙ୍କର ମନରେ ଅହଂକାର ଥିଲେହେଁ ସବୁ ସୌନ୍ଦର୍ଯ୍ୟ ସଂପର୍କରେ ଚମ୍ପାଙ୍କ ମନରେ ଏକପ୍ରକାର ଭୟ ଓ ସନ୍ଦେହ ଲାଗି ରହିଥାଏ। ସେ ନିଜେ ସୁନ୍ଦରୀ ଥିଲା ଓ ସେଇ ସୌନ୍ଦର୍ଯ୍ୟ ପାଇଁ ସେ ଅନେକ ଦୁଃଖ ଦେଖିଛି। ସେଥିପାଇଁ ଶାନ୍ତା ଆଗରେ ବା ପଛରେ ଭୁଲରେ ମଧ୍ୟ ସେ ତାର ସୌନ୍ଦର୍ଯ୍ୟକୁ ନେଇ ପ୍ରଶଂସା କରେନାହିଁ।

ଝିଅ ସୁନ୍ଦରବୋଲି ତାକୁ ତ ଆଉ ପେଡ଼ିରେ ପୂରାଇ ରଖି ହେବ ନାହିଁ! ମା'ର

ହଜାର ଯତ୍ନ ହେତୁ ଝିଅଠାରେ ଆପଣା ସୌନ୍ଦର୍ଯ୍ୟ ନେଇ ଅହଂକାର ନାହିଁ ସିନା, ହେଲେ ବାହାରର ବାତାବରଣରୁ ତାଠାରେ ଅଳ୍ପ ସ୍ୱଚ୍ଛ ଅଭିମାନ ଜାତହେବା ସ୍ୱାଭାବିକ।

ଶାନ୍ତା ରତ୍ନା ଅପେକ୍ଷା ଦି' ତିନିକ୍ଲାସ ଅଧିକା ପଢ଼ିଛି। କଥା ବେଶୀ ପଢ଼ିବା ବା କମ୍ ପଢ଼ିବା ନେଇ ନୁହଁ, ବରଂ ସେ କେଉଁ କାଳରେ ପଢ଼ିଥିଲା ତାହାହିଁ ହେଉଛି ମହତ୍ତ୍ୱପୂର୍ଣ୍ଣ। ରତ୍ନାର ପାଠପଢ଼ାକାଳ ଓ ଶାନ୍ତାର ପାଠପଢ଼ାକାଳ ମଧ୍ୟରେ ଆକାଶ ପାତାଳ ପ୍ରଭେଦ; ଦିହିଙ୍କ ମଧ୍ୟରେ ପାଞ୍ଚ ବର୍ଷର ବ୍ୟବଧାନ ହେଲେହେଁ ସାମାଜିକ ରୀତିନୀତି ଅନେକ ବଦଳିଛି। ଲବଣ ସତ୍ୟାଗ୍ରହ ସମୟରେ ସ୍କୁଲ କଲେଜରେ ହରତାଳ ହେଲାବେଳେ ଶାନ୍ତା ସେଥିରେ ଭାଗ ନେଉଥିଲା। ସାରା ସ୍କୁଲରେ ସମୁଦାୟ ବାରଜଣ ଝିଅ ଥିଲେ। ତାଙ୍କ ଭିତରୁ କେତେଜଣ ଷୋଳ ବର୍ଷରୁ ବେଶୀ ବୟସର ହୋଇଥିବାରୁ ଲଜ୍ଜାବଶତଃ ଶୋଭାଯାତ୍ରା ଆଦି କାର୍ଯ୍ୟକ୍ରମରେ ଭାଗନେବାକୁ ବାହାରୁ ନଥିଲେ। ତା'ଛଡ଼ା କେତେଜଣ ଝିଅ ପୁରୁଣାକାଳିଆ ରକ୍ଷଣଶୀଳ ପରିବାରରୁ ଆସିଥିଲେ। 'ଆମେ ଯଦି ଏମିତି କରିବୁଁ ତେବେ ମା' ବାପା ସ୍କୁଲରୁ ଆମର ନାଁ କଟାଇ ନେବେ'—ଏଇ ଭୟରେ ସେମାନେ ଭାଗ ନିଅନ୍ତିନାହିଁ। ଶାନ୍ତା ଘରେ ଥିଲା ସ୍ୱାଧୀନ। ତାର ବୟସ ଅଳ୍ପ, ମାତ୍ର ବାରବର୍ଷର ପିଲା। ତେଣୁ ସବୁପ୍ରକାର କାର୍ଯ୍ୟକ୍ରମରେ ଭାଗନେବାପାଇଁ ତାକୁ ଲାଜଲାଗୁନଥିଲା। ସେ ଓ ଉତ୍ତର କର୍ଣ୍ଣାଟକ ଜିଲ୍ଲାର ଆଉ ଗୋଟିଏ ଝିଅ ଛାତ୍ରମାନଙ୍କର ଶୋଭାଯାତ୍ରାରେ ସବା ଆଗରେ ପତାକା ଧରି 'ଝଣ୍ଡା ଉଁଚା ରହେ ହମାରା' ଗାଇ ସ୍ଲୋଗାନ ଦେଲାବେଳେ କେହି ଯଦି କହେ, 'ଆମର ଏ ସଂଘର୍ଷରେ ନାରୀମାନେ ମଧ୍ୟ ଭାଗନେଇ ସ୍ୱତନ୍ତ୍ରତା ପାଇଁ ଲଢୁଛନ୍ତି' —ତେବେ ଶାନ୍ତା ତା'ରି ପ୍ରଶଂସା କରାଯାଉଛି ଭାବି ପ୍ରସନ୍ନ ହୋଇପଡୁଥିଲା।

ସମୟକାଳ ଅନୁସାରେ ଆପଣାର ଅଳ୍ପ ବୟସରୁ ସ୍ୱତନ୍ତ୍ରତାକୁ ଅନୁଭବ କରି ଆସିଥିବା ଶାନ୍ତା, ରତ୍ନାପରି ନଇଁ ନଇଁ ଚାଲିବା ସମ୍ଭବ ନୁହଁ। କେତେ ବର୍ଷ ହେଲା ଶାନ୍ତା ଛୋଟ ଯୁବତୀଟିଏ ପରି ଦିଶୁଛି। ଘାଘରା ଓଢ଼ଣୀ ଛାଡ଼ି ଶାଢ଼ୀ ପିନ୍ଧୁଛି। ଫଳରେ ଆଉରି ସୁନ୍ଦର ଦିଶୁଛି। ପାଖ ପଡ଼ୋଶୀ, ସାଙ୍ଗସାଥୀ ସଭିଏଁ ତାର ସୌନ୍ଦର୍ଯ୍ୟର ପ୍ରଶଂସା କରନ୍ତି। ସୌଭାଗ୍ୟବଶତଃ ମା ଏକଥାକୁ ଉପେକ୍ଷା କରୁଥିବା ହେତୁ ତା'ଠାରେ ଅହଂକାର ଜନ୍ମିନାହିଁ। ଗୋଟିଏ ଘଟଣା ତାର ମନକୁ ବଦଳାଇଦେଲା। ତା'ଠାରେ ଆତ୍ମସମ୍ମାନ ଆଣିଦେଲା ଓ ପିଲାଳିଆପଣ ଯାଇ ତାର ଚାଲିଚଳଣରେ ଗାମ୍ଭୀର୍ଯ୍ୟ ଆଣିଦେଲା।

ତାଙ୍କ ସ୍କୁଲରେ ପଢ଼ାଉଥିବା ଜଣେ ଦେଶଭକ୍ତ ତରୁଣ ଶିକ୍ଷକ ଶାନ୍ତାର ସୌନ୍ଦର୍ଯ୍ୟ ଦେଖି ତଥା ଦେଶପ୍ରେମ ସମ୍ବନ୍ଧୀୟ ପ୍ରବନ୍ଧ ପଢ଼ି ତାକୁ ବିବାହ କରିବା ପାଇଁ ଆଗ୍ରହୀ ହେଲେ। ଦିନେ କିଛି ନଭାବି ନଚିନ୍ତି କାହାକୁ ମଝିରେ ନରଖି ସ୍ୱୟଂ ଶାନ୍ତାର ପ୍ରୋଗ୍ରେସ ରିପୋର୍ଟ ନେଇ ରାଘପ୍ପା ଘରେ ପହଞ୍ଚିଲେ। ତାର ପାଠପଢ଼ାର ପ୍ରଶଂସା ପରେ, ଆପଣାର ଇଚ୍ଛା ବ୍ୟକ୍ତକରି ରାଘପ୍ପାକୁ କହିଲେ 'ଆଉ କିଛି ନହେଉ, ଅନ୍ତତଃ ଦେଶର ମଙ୍ଗଳକୁ ଆଖିରେ ରଖି ଆପଣ ଆମର ବିବାହ କରିଦିଅନ୍ତୁ।'

ଏହାକହି ସେ କାନ୍ଦି ପକାଇଲେ। ମାତ୍ର ରାଘବା ନାହିଁ କରିଦେଲା। ପ୍ରଧାନ ଅଧ୍ୟାପକଙ୍କୁ ରିପୋର୍ଟ କରିଦେବ ବୋଲି ଧମକାଇବାରୁ ଅଧ୍ୟାପକ ଜଣକ ଲୋକଲଜ୍ଜା ଭୟରେ ଚାକିରୀରୁ ଇସ୍ତଫା ନେଇ ଅନ୍ୟତ୍ର ପଳାଇଗଲେ। ଏ କଥାରେ କେହି ମଧ୍ୟସ୍ଥି କରି ନଥିବାରୁ କଥାଟା ସହରରେ କେହି ଜାଣିପାରିଲେ ନାହିଁ। ମାତ୍ର ଶାନ୍ତା ମନରେ ଥରେ ଥରେ ଅହଂକାର ଜାତହୁଏ, ତା'ରିପାଇଁ ଜଣେ ଶିକ୍ଷକ ଚାକିରି ଛାଡ଼ିଦେଲେ। ରତ୍ନାପରି ସବୁକଥାରେ ସେ ମା' ଉପରେ ନିର୍ଭର କରେନାହିଁ। ମା ସହିତ ସେ ସାଙ୍ଗ ସୁଖ ପରି ବ୍ୟବହାର କରେ। ପୁଣି ଚମ୍ପା ଭାରୀ ନିଶକ୍ତ ହୋଇ ପଡ଼ିଥିବାହେତୁ ଶାନ୍ତା ଘର ସମ୍ଭାଳିଛି। ସେଥିପାଇଁ ସେ ଘରର ମାଲିକାଣୀ ହୋଇପଡ଼ିଛି।

ରାଘବା ଶାନ୍ତାର ବିବାହ ବସନ୍ତ ସହ କରିବାକୁ ଚାହେଁ, ଏହା ଚମ୍ପାଙ୍କ ଦିନ ଦି'ଟାରେ ଜାଣି ନେଇଛି। ଏଥିରେ ସେ ମନେମନେ ଖୁସି। ବସନ୍ତ ରାଓ ଯେ ତା ଝିଅକୁ ପସନ୍ଦ କରିବ, ଏଥିରେ ଚମ୍ପାଙ୍କର ସନ୍ଦେହ ନାହିଁ, କାରଣ ଶାନ୍ତାର ସୌନ୍ଦର୍ଯ୍ୟ ସେଇପରି। ହୋଇପାରେ ବସନ୍ତ ରାଓର ବାପା ଏଥିରେ ରାଜି ହେବେନାହିଁ। ମାତ୍ର ସେକଥା ତାର ଭାବିବା କଥା ନୁହଁ। ଶହେ ମିଛ କହି ତାର ସ୍ୱାମୀ କାମ କରିନେବେ, ଏ ବିଶ୍ୱାସ ତାର ଅଛି। ତାକୁ ଆଉରି କଥାଟିଏ ଖୁସି ଲାଗୁଥାଏ ଯେ ବସନ୍ତ ଥିଲାବାଲା। ଭଗବାନଙ୍କ ଦୟାରୁ ସେ ଯଦି ଗର୍ଭବତୀ ନହୁଏ ତେବେ ତାର ନାମମାତ୍ର ଜମିବାଡ଼ିର ଲୋଭରେ ବସନ୍ତ କିଙ୍ଗୀକୁ ହଟାଇଦେଇ ରତ୍ନା ମୁହଁରୁ ଆହାର ଛଡ଼ାଇ ନେବ ନାହିଁ। ଏ ଭାବନା ତାକୁ ଟିକିଏ ଶାନ୍ତି ଦେଲା। ଚମ୍ପାଙ୍କ ଜୀବନରେ ଅନେକ ଦୁଃଖ ଦେଖିଛି। ତେଣୁ ତା ମନରେ ସମୟସମୟରେ ଅକାରଣ ସନ୍ଦେହ ଦେଖାଦିଏ। ବସନ୍ତ ଅମୀର। କିଙ୍ଗୀ ଘରକୁ ଆସିଲାବେଳେ କୌଣସି କଥାକୁ ଭୟ ନଥିଲା। କିନ୍ତୁ ରାଘବାର ଅନୁମତି ନେଇ ବସନ୍ତ ଯେତେବେଳେ ଘରକୁ ଯିବାଆସିବା କରିବାକୁ ଲାଗିଲା, ସେତେବେଳେ ସେ ଟିକିଏ ହତଚକିତ ହୋଇଗଲା। ସେ ଭାବେ ଏତେ ଧନୀଲୋକ ଆମର ଜୋଇଁ ହେବ, ତା' ଉପରେ ମୁଁ ବିଶ୍ୱାସ ରଖିବି ?

ଚମ୍ପାଙ୍କର ବିବାହ ଧାରୱାଡ଼ରେ ସର୍ବପ୍ରଥମ ପ୍ରେମବିବାହ ଭାବରେ ଯୁଗଟିଏ ପ୍ରସିଦ୍ଧ ହୋଇ ରହିଲା। ଚମ୍ପା ବିଷୟ ନେଇ ଲୋକଙ୍କର ଭୁଲ ଧାରଣା ଥିଲା। ଅନ୍ୟମାନଙ୍କ ବିଷୟରେ କଠୋର ସମାଲୋଚନା କରିବା ସାରଙ୍ଗ ରାଓ ପରି ଲୋକମାନଙ୍କର ଅଭ୍ୟାସ। ତାର ସଂଯମଶୀଳ ଚାଲିଚଳଣକୁ ଦେଖି ନୀଚମନା ପ୍ରୌଢ଼ମାନେ ସୁଦ୍ଧା କହିବାକୁ ଛାଡ଼ିନାହାନ୍ତି, 'ହାଣ୍ଡିରେ ଖାଏ ନାଁ ଲୁଗାରେ ପଡ଼ିଲେ ଗାଧୋଇଯାଏ'। ମାତ୍ର ତାର ମାର୍ଜିତ ସ୍ୱଭାବ କ୍ରମେ ସଭିଙ୍କୁ ଶିକ୍ଷା ଦେଇଥିଲା। ତାର କ୍ଷଣିକ ଅସାବଧାନତା ଫଳରେ କୁମାରୀତ୍ୱ ନଷ୍ଟହେବା ଫଳରେ ସମାଜରେ ଚହଳ ପଡ଼ିଯିବା, —ମା'ର କୂଅକୁ ଡେଇଁପଡ଼ିବାକୁ ବାହାରିବା, —ସ୍ୱାମୀ ବିବାହ କରିବାକୁ ନାହିଁ କରିଦେବା, —ମନରେ ଭୟଙ୍କର ପଶ୍ଚାତ୍ତାପ ଜନ୍ମିବା, —ଶେଷରେ ଏଇ କଥାରେ ଘାରି ହୋଇ ମା' ଜୀବନ ହାରିବା, —ଏଇସବୁ କଥାକୁ ସହିଆସିଥିବା ଚମ୍ପା ଆପଣା ପିଲାଙ୍କ କଥା ଭାବିଭାବି ଧନ୍ଦି ହୋଇଯାଏ।

# 29. ପ୍ରତ୍ୟକ୍ଷ ଓ ପରୋକ୍ଷ ସଂଘର୍ଷ

ରାଘପ୍ପା ଓ ଦେଶାଇଜୀଙ୍କ ମଧ୍ୟରେ ମୁହାଁମୁହିଁ ଦେଖା ହେବାର ବହୁଦିନ ବିତିଗଲାଣି । ଦେଶାଇଜୀ ପରୋକ୍ଷରେ ରାଘପ୍ପାର ଅସ୍ତିତ୍ୱକୁ ବାରମ୍ବାର ଅନୁଭବ କରିବାକୁ ଲାଗିଲେ । ବସନ୍ତର ଧାରୱାଡ଼ ଆସିବା ଓ ଘରଲୋକଙ୍କ ସହ ସାକ୍ଷାତ ନ କରି ଫେରିଯିବା ଖବର ଉଡ଼ିଉଡ଼ି ତାଙ୍କର ଜଣାଶୁଣା ଲୋକଯାଏଁ ଆସିଲା ଓ ତାଙ୍କ ପାଖରୁ ବିଣୁବାଇଙ୍କ ପର୍ଯ୍ୟନ୍ତ ପହଞ୍ଚିଗଲା । ବିଣୁବାଇ ଏକଥା ଦେଶାଇବାବୁଙ୍କୁ କହିଲେ । ଦେଶାଇବାବୁ କିଛି ନକହି ଗମ୍ଭୀର ହୋଇ ବସିରହିଲେ । ଚିଠି ଲେଖି ବସନ୍ତକୁ ଡକାଇବା ପାଇଁ ବିଣୁବାଇ ବିନତି କଲେ ସୁଦ୍ଧା ସେ ଶୁଣିଲେ ନାହିଁ । ଏ ସବୁ ସହି ନପାରି ଦିନେ ବିଣୁବାଇ ଦେଶାଇବାବୁଙ୍କୁ କହିଲେ ।

'ସେ ରାଘପ୍ପା କେମିତି ଖଳୁଆ ! ଗଙ୍ଗୱା ତାର ଛାୟା ସୁଦ୍ଧା ଦେଖିବାକୁ ଚାହୁଁ ନଥିଲା । ତୁମେ ତା ସହିତ କାହିଁକି କଳି କଲ ? ତା' ଜିନିଷ ତାକୁ ଦେଇଦିଅ । ଯଦି ପିଲାଟାର ମୁଣ୍ଡ ବିଗାଡ଼ି ଦିଏ ? ଦି' ହଜାର ଟଙ୍କା ପାଇଁ ସେ ଏତେକଥା କରୁଛି ତ ? ତା' ଜିନିଷ ତାକୁ ଦେଇଦିଅ । ଅନ୍ତତଃ ତୁମ ଚିନ୍ତା ଶେଷ ହୋଇଯିବ ।'

'ରାଘପ୍ପାକୁ ଆସି ଗୋଡ଼ ଧରିବାକୁ ଦିଅ । ଦେଇଦେବି । ତାମସା ଲାଗିଛି ନାଁ କଣ ? ମୋ ସହ ମୁକାବିଲା କରିବ ? କରୁ ! ବାଜିଏ ଦେଖିନେବା । କିଟୀକୁ ପଠେଇ ସେ ମୋତେ ଅକ୍କଲ ଶିଖାଉଛି । ଥରେ ମୁହାମୁହିଁ ହୋଇଯାଉ, ତାକୁ ଖମ୍ବରେ ବନ୍ଧେଇଦେବି !'

'ଆଗେ ସେମାନଙ୍କ କଳି ଦେଖି ଅତିଷ୍ଠ ହୋଇପଡୁଥିଲ, ଏବେ ଏ ବିଚାର କାହିଁକି ? ଏବେ ଏସବୁ ମଜାଲାଗୁଛି ?'

'ସେ ସବୁ କଥା ଥାଉ । ମୁଁ ଚୁପ ରହିଲାପରେ ସେ ଯଦି ମୋତେ ଉତ୍ତେଜିତ କରୁଛି, ତେବେ ଥରେ ଫଇସଲା ହୋଇଯାଉ !'

'ତୁମେ ଯଦି ଚାହୁଁଛ ତେବେ ତା' ସହ ଫଇସଲା କର । ମାତ୍ର ବସନ୍ତକୁ ଚିଠି ଲେଖି ଡକାଇପଠାଅ । ନହେଲେ ମୋତେ ଅନ୍ତତଃ ତା' ପାଖକୁ ପଠାଇଦିଅ । ତୁମେ ଯେତେ ହେଳା କରୁଛ, ସେ ସେତେ ରାଘପ୍ପାର ଜାଲରେ ଛନ୍ଦିହୋଇଯାଉଛି । ବିଚାରୀ ଏବେବି ପିଲା । ମୁଁ ଦି'ଦିନ ସେଠାରେ ରହିକରିଆସିବି... ।'

ଦେଶାଇବାବୁ ନିଜକୁ ରୋକି ପାରିଲେ ନାହିଁ; କାହିଁକି ଚୁପ ରହିଛନ୍ତି ଏକଥା

ଏବେ ସ୍ତ୍ରୀଙ୍କୁ କହିବା ଉଚିତ ଭାବି ଉଠିଯାଇ ଦି'ଦିନ ଆଗେ ବସନ୍ତଠାରୁ ଆସିଥିବା ଚିଠିଟିକୁ ସିନ୍ଦୁକରୁ କାଢ଼ି କହିଲେ, 'ତୁମ ପୁଅ ଏବେବି ପିଲା,...ସେ ବାପକୁ ଚିଠି ଲେଖିଛି ଦେଖ !' ଏହା କହି ଚିଠି ପଢ଼ି ଶୁଣାଇଲେ ।

ଶ୍ରୀ ଇନାମଗ୍ରାମ, ଧଳାଘର ।

ପୂଜ୍ୟତୀର୍ଥ ଶ୍ରୀ ଗୋପାଳରାଓ ଦେଶାଇଜୀଙ୍କ ସେବାରେ ଏ ପତ୍ର ଲେଖିବାର କାରଣ ଏହିକି ଯେ ମୁଁ ଦି' ବର୍ଷ ହେଲା ସାବାଳକ ହୋଇଯାଇଥିଲେ ମଧ୍ୟ ଆପଣ ସମ୍ପତ୍ତିରୁ ମୋ ଭାଗ ମୋତେ ନ ଦେଇ ନିଜେ ତାହାକୁ ଭୋଗକରୁଛନ୍ତି । ଆପଣଙ୍କର ତିନିପୁଅ । ତନ୍ମଧ୍ୟରୁ ମୁଁ ମଝିଆଁ । ଆଇନ୍ ଅନୁସାରେ ପିତୃଅର୍ଜିତ ସମ୍ପତ୍ତିରୁ ମୋତେ ଯେତିକି ଅଂଶ ମିଳିବା ଉଚିତ ସେତକ ଯଥାଶୀଘ୍ର ମୋ ନାଁରେ କରିଦିଆଯାଉ । ଯଦି ଆପଣଙ୍କର ସମ୍ମତି ଥାଏ ତେବେ ପାଞ୍ଚଜଣ ପୁରୁଣା ଲୋକଙ୍କ ଆଗରେ ବିଚାର କରି ମୁଁ ନିଜର ଅଂଶ ନେଇନେବାକୁ ଚାହୁଁଛି । ମୋର ବଡ଼ଭାଇ ଅଚ୍ୟୁତ ରାଓ, ବୟୋକନିଷ୍ଠ ଭାଇ ପୁରୁଷୋତ୍ତମ ଚାହିଁଲେ ନିଜର ଭାଗ ନେଇପାରନ୍ତି ବା ଆପଣଙ୍କ ପାଖରେ ରଖିପାରନ୍ତି ତା' ସହିତ ମୋର କୌଣସି ସଂପର୍କ ନାହିଁ । ପାଞ୍ଚଜଣଙ୍କ ଆଗରେ ଏକଥାର ଫଇସଲା ହୋଇଯିବା ଦରକାର । ମୋର ମୋ'ଭାଗ ଦରକାର । ଯେ କୌଣସି କାରଣରୁ ମୋ ଚିଠି ପହଞ୍ଚିବାର ତିନିମାସ ମଧ୍ୟରେ ଆପଣ ଯଦି ମୋ ଭାଗ ମୋତେ ଦେବାର ବନ୍ଦୋବସ୍ତ ନକରନ୍ତି ତେବେ ଆପଣ ଏହାର ଦାୟିତ୍ୱ ନେବେ । ବିଳମ୍ବର ଉଚିତ ମୂଲ୍ୟ ଆପଣଙ୍କୁ ଦେବାକୁ ପଡ଼ିବ । ସେଥିପାଇଁ ଏକାମ ସହଳ ହୋଇଯିବାରେ ସଭିଙ୍କର ମଙ୍ଗଳ । ଆପଣ ଯଦି ରାଜି ହୁଅନ୍ତି ତେବେ ମୁଁ ମୋର ହିତାକାଂକ୍ଷୀମାନଙ୍କୁ ନେଇ ଆପଣଙ୍କ ସହିତ ସାକ୍ଷାତ କରିବାକୁ ଆସିବି । ଆପଣଙ୍କଠାରେ ମୋର ବିନୀତ ପ୍ରାର୍ଥନା ଯେ ଆପଣ ସ୍ୱ ବିଚାର ପ୍ରକାଶ କରିବାରେ ଦ୍ୱିଧାବୋଧ ନକରି ଶୀଘ୍ର ସୂଚନା ଦେବେ । ଅନ୍ୟାନ୍ୟ କଥାପାଇଁ ମୋତେ କ୍ଷମା କରିବେ । ମୋର ପ୍ରାର୍ଥନା ଯେ ଏ ପତ୍ର ନୋଟିସ ନହେଲେ ସୁଦ୍ଧା, ଏହାକୁ ନୋଟିସ ମନେକରି ପନ୍ଦର ଦିନ ଭିତରେ ଉତ୍ତର ପଠାଇବେ । ଆପଣଙ୍କର କୁଶଳ ସମାଚାର ଜଣାଇବେ । ଇତି ।

ଆପଣଙ୍କର ଦ୍ୱିତୀୟ ଚିରଞ୍ଜୀବ ପୁତ୍ର
ବସନ୍ତରାଓ ଦେଶାଇ ।

ପୁଅର ଚିଠି ଶୁଣି ବିଶୁବାଇ ଏହାଭାବି ଅସଂତୋଷ ହେଲେ ଯେ ଏଇଥିପାଇଁ ସ୍ୱାମୀ ଏତେ ଧନ୍ଦି ହେଉଛନ୍ତି । ତାଙ୍କ ଆଖିରେ ଲୁହ ଆସିଗଲା ।

'କେତେ ବୁଝାଇଲି ''ବାପାରେ, ଏମିତି କରନାହିଁ, ଖରାପ ଅଭ୍ୟାସ କରନାହିଁ, ...ଖରାପଲୋକ ପାଖକୁ ଯାଆନାହିଁ, ବାପା ଦେବତା ସମାନ'' – ତଥାପି ଏଇ ଅବସ୍ଥା ଶେଷକୁ ହେଲା । ଏ ଯେମିତି ପଥରକୁ ଅକଲ ଶିଖାଇବା କଥା ! ସେ ଗତଜନ୍ମର ଶତ୍ରୁ, ଏ ଜନ୍ମରେ ପୁଅ ହୋଇ ଜନ୍ମିଛି । ଏ ପୁଅ ତୁମକୁ ସୁଖ ଦେବନାହିଁ ।'

'ମୋର କଣ କରିପକାଇବ ? ନିଜେ ଭୋଗିବ । ଏ ଚିଠି ଲେଖିବା ପାଇଁ

କିଏ ମତେଇଛି ତାହାକଣ ମୁଁ ବୁଝିନାହିଁ?... ସେ ଗୁରୁର କବଜା ଢିଲା କରି ଦେଉଛି ! – ଏଥର କିଙ୍ଗୀ ଫିଙ୍ଗୀ ସଭିଏଁ' ଠିକ୍ ବାଟକୁ ଆସିଯିବେ ।'

ମନ ସ୍ଥିର କରି ସେ ତୁରନ୍ତ ଏକ ଚିଠି ଲେଖିଲେ ।

କ୍ଷେତ୍ର ଶ୍ରୀ ଧାରଓ୍ଵାଡ଼ ।

ଚିରଂଜୀବୀ ବସନ୍ତ ରାଓକୁ ଆଶୀର୍ବାଦ । ତୁମ ଚିଠି ପାଇଲି । ଆମେ ସଭିଏଁ ଭଲ ଅଛୁଁ । ତୁମେ ମୋ ପୁଅ । ଏକଥା ମୁଁ ଭୁଲି ନାହିଁ । ନିଜର ହିତାକାଂକ୍ଷୀ ସହିତ ଆସିବ ।

ଇତି ଆଶୀର୍ବାଦ

ଗୋପାଳ ରାଓ ।

ଏ ଚିଠି ପଢ଼ି ବସନ୍ତରାଓକୁ ଡରଲାଗିଲା । କାହିଁକିନା ଚିଠିରେ ମୁଖ୍ୟ କଥାର ଉଲ୍ଲେଖ ସୁଦ୍ଧା ହୋଇନାହିଁ । ବାପାଙ୍କୁ ସେ ଯେଉଁ ଚିଠି ଲେଖିଥିଲା, ତାହାକୁ ଅପର୍ଣ୍ଣା ଭଟ୍ଟଠାରୁ ଲେଖାଇନେଇ ତା'ରି ନକଲ ପଠାଇଥିଲା । ସେ ବାପାଙ୍କଠାରୁ ଏତେ ଶୀଘ୍ର ଉତ୍ତର ଆଶା କରିନଥିଲା । ଏବେ ଅପର୍ଣ୍ଣା ଭଟ୍ଟକୁ ଡକାଇବାକୁ ପଡ଼ିବ । ଏ ପର୍ଯନ୍ତ ସବୁକାମ ସେ ନିଜ ବୁଦ୍ଧି ଅନୁସାରେ କରିଆସିଛି; ମାତ୍ର ଆଗକୁ ରାଘପ୍ପା ସହିତ ପରାମର୍ଶ କରିବାକୁ ପଡ଼ିବ । ଏହାଭାବି ସେ ନିଜ ଚିଠିର ନକଲ ଓ ବାପାଙ୍କ ଚିଠି ଦୁଇଟିଯାକ ଯତ୍ନରେ ପକେଟରେ ରଖି ରାଘପ୍ପା ସହ ସାକ୍ଷାତ କରିବାକୁ ବାହାରିଲା ।

ରାଘପ୍ପା କଳ୍ପନା ସୁଦ୍ଧା କରିନଥିଲା ଯେ ସେ ବୁଣିଥିବା ବୀଜ ଏତେଶୀଘ୍ର ଫଳିବ । ଦେଶାଇଙ୍କ ସହିତ ସେ ଖୋଲାଖୋଲି ବୈରତା କରିବାକୁ ଚାହୁଁ ନଥିଲା । ଛପିରହି ଚୋଟ ହାଣିବାର ସୁଯୋଗ ଉଣ୍ଡୁଥିଲା । ମୁହଁରେ କିଛି ନକହି ସେ ଦୁଇଟିଯାକ ଚିଠିକୁ ପଢ଼ିଲା । ଅପର୍ଣ୍ଣା ଭଟ୍ଟ ଦ୍ୱାରା ଲିଖିତ ପତ୍ରର ପ୍ରଶଂସା କରି କହିଲା, 'ବ୍ରାହ୍ମଣ ବଡ଼ ହୁସିଆର । ଲେଖାରେ ସଂଯମ ଅଛି ।' ଦେଶାଇଜୀଙ୍କର ଉତ୍ତରକୁ ସେ ପୁଣି ମନଦେଇ ପଢ଼ିଲା । ତହିଁରେ ସେ ଏକ ସୂକ୍ଷ୍ମ ବିଷୟ ଦେଖି ପାରିଲା, ଯାହା ବସନ୍ତର ବୁଦ୍ଧିର ବାହାରେ । ବସନ୍ତର ଚିଠିରେ 'ମୁଁ ନିଜର ହିତାକାଂକ୍ଷୀମାନଙ୍କୁ ନେଇ ସାକ୍ଷାତ କରିବାକୁ ଯିବି' କଥାଟି ବହୁବଚନରେ ଲେଖା ହୋଇଥିଲା; ଦେଶାଇଜୀ 'ହିତଚିନ୍ତକ'କୁ ଏକ ବଚନରେ ସାମିଲ କରିଦେଇଛନ୍ତି । ରାଘପ୍ପା ଯାର ଅର୍ଥ ବୁଝିପାରିଲା । ଦେଶାଇବାବୁଙ୍କ ସହ ପ୍ରତ୍ୟକ୍ଷ ବୈରତା କରିବାକୁ ତାର ଆଦୌ ଇଚ୍ଛା ନଥିଲା । ତେଣୁ କହିଲା, 'ବସନ୍ତ ରାଓ, ତୁମ ବାପାଙ୍କ ଚିଠିରୁ ଏମିତି ଜଣାପଡୁଛି ଯେ ସେ ଏତେ ସହଜରେ ମାନିବେ ନାହିଁ ।

'କାହିଁକି ? ଯିବାକୁ ଲେଖିଛନ୍ତି ।'

'ତୁମକୁ ଏତେ ସହଜ ଡକାଇଛନ୍ତି ଏଥିରୁ ମନେ ହେଉଛି ତାଙ୍କ ଉପରେ ତୁମ କଥାର କୌଣସି ପ୍ରଭାବ ପଡ଼ିନାହିଁ । ତୁମ ବାପା ଏତେ ଢିଲା ଦେଲା ଲୋକ ନୁହଁନ୍ତି । ମୁଁ ତାଙ୍କୁ ଜାଣେ ।

'କିନ୍ତୁ ଡାକିଛନ୍ତି ଯେତେବେଳେ ଶୁଣିଆସିବାରେ କ୍ଷତି କଣ ?'

'ହଁ ଯାଅ, ଘୁରିଆସ।'

'ଆପଣ ସାଙ୍ଗରେ ଯିବା ଦରକାର।' ବସନ୍ତ ରାଓର ସନ୍ଦେହ ହେଲା, ଏବେ ରାଘସ୍ବା ଏଡ଼େଇଯିବାକୁ ଚାହୁଁଛି।

'ବାପପୁଅର କଥାରେ ଆମର ପଶିବାଟା ଠିକ୍ ହବନାହିଁ।' ଶୁଣି ବସନ୍ତ ମୁହଁରୁ ପାଣି ମରିଗଲା। ତାହା ଦେଖି ରାଘସ୍ବା ସାନ୍ତ୍ବନା ଦେଇ କହିଲା, 'ବସନ୍ତ ରାଓ, ମୁଁ ଆପଣଙ୍କ ସାଥି ଛାଡୁନାହିଁ। ସେମିତି ଭାବ ନାହିଁ। ମୁଁ ସବୁବେଳେ ଆପଣଙ୍କ ପଛରେ ଅଛି।... ନାଟକ କମ୍ପାନୀ ଖୋଲିବା ବିଷୟ ଥରେ ହୋଇଗଲା ପରେ ଆପଣଙ୍କୁ ମୁଁ ସାହାଯତା କରିବି ବୋଲି କଥା ଦେଇଛି। ପ୍ରତିଜ୍ଞା ସ୍ଥିର କରୁଛି। ...କିନ୍ତୁ ମୁଁ ଯିବା ଦ୍ୱାରା ଆପଣଙ୍କର ଲାଭ ହେବନାହିଁ। ମୁଁ ତ ଶେଷ ଅସ୍ତ୍ର। ଆପଣ ପ୍ରଥମେ ନିଜର ସାନ ସାନ ହତିଆର ବ୍ୟବହାର କରନ୍ତୁ। ଏ ଚିଠି ଲେଖିଦେଇଥିବା ଭଟ୍ଟକୁ ସାଙ୍ଗରେ ନେଇ ଆଗେ ଯାଆନ୍ତୁ। ସେ ଭାରୀ ହୁସିଆର ଲୋକ ମନେହେଉଛି। ବାପାଙ୍କର ଅଭିପ୍ରାୟ କଣ ଆଗ ବୁଝନ୍ତୁ। ସେ ଯଦି ରାଗନ୍ତି ଆପଣ ରାଗିବେ ନାହିଁ। ସେ ଆପଣଙ୍କୁ ଫୁସୁଲାଇବାକୁ ଚାହିଁଲେ ଆପଣ ନିଜକୁ ଶକ୍ତ କରିବେ। ଆପଣଙ୍କ ବାପାଙ୍କର ବ୍ୟକ୍ତିତ୍ୱ ଫମ୍ପା ନୁହଁ। ପହିଲେ ଆପଣଙ୍କୁ ଲୋଭ ଦେଖାଇବେ। ଚିକ୍କଣିଆ କଥା କହିବେ, ଭୟ ଦେଖାଇବେ, ଏମିତି ସବୁ ଉପାୟ କରିବେ। ଏସବୁ ପରୀକ୍ଷାକୁ ପାରହୋଇ ନିଜ କଥାରେ ମନ ସ୍ଥିର ରଖିପାରିବେ ଯଦି ତେବେ ମୋତେ ଡାକିବେ। ଏମିତି ଭାବରେ ଫଇସଲା କରିବି, ଆପଣଙ୍କର ଲୋକସାନ ହେବନାହିଁ। ଯେଡ଼େ ଓକିଲ ଆସିବ ଆସୁଆପଣଙ୍କୁ ଠକି ଦେଇ ପାରିବ ନାହିଁ। କିନ୍ତୁ ଆପଣ ଆଗ ଖୋଜଖବର ନିଅନ୍ତୁ ଯେ ଆପଣଙ୍କ ବାପାଙ୍କର ଉଦ୍ଦେଶ୍ୟ କଣ। ସେ ବିଷୟରେ ମୋତେ ଟିକିଏ ଆଭାସ ମିଳୁ। ଆଗକୁ ଯାହା କରିବା କଥା ମୁଁ କରିବି; କାମ ଆରମ୍ଭ କଲାପରେ ଭାଗଭାଗ ହୋଇଯିବାଟା ଉଚିତ, ବୁଝିଲେ ନାଁ ?'

ଏକଥାରୁ ବସନ୍ତକୁ ପର୍ଯ୍ୟାପ୍ତ ସାହସ ମିଳିଲା ନାହିଁ। ମାତ୍ର କିଞ୍ଚିତ ଉତ୍ସାହ ନିଶ୍ଚୟ ବଢ଼ିଲା। ରାଘସ୍ବାର ପରାମର୍ଶ ଠିକ୍ ମନେହେଲା। କାମର ଅଲଗା ଅଲଗା ସ୍ତର ଥାଏ। ଆଉ ସେଇ ସ୍ତର ଅନୁସାରେ ବ୍ୟକ୍ତିକୁ ଉପଯୋଗ କରିବା ଉଚିତ। ତଥାପି ନିଜର ସାହସର ଅଭାବ ହେତୁ ତା ମନରେ ଏକ ସନ୍ଦେହ ଦେଖାଦେଲା। ସେ କହିଲା, 'ଅପର୍ଣ୍ଣା ଭଟ୍ଟ ଚାଲାକ, କିନ୍ତୁ ବଡ଼ ଡରୁଆ। ଧମକାଇଦେଲେ ଡରିଯାଏ। ଯଦି ଯିବାକୁ ନାହିଁ କରିଦିଏ ?'

'ଟଙ୍କା ଦଶଟା ତା ମୁହଁକୁ ଫୋପାଡ଼ିଦେବ। ଯିବ ନାହିଁ କାହିଁକି ? ନାଟକ ଦଳର ଲୋକ, ଦଉଡ଼ି କରି ଆସିବ।'

ବସନ୍ତ ବୁଝିପାରିଲା ନାହିଁ ଯେ ରାଘସ୍ବା ଏଡ଼େଇ ଯିବାଲାଗି ଏପରି କହୁଛି ନାଁ ଠିକ୍ ପରାମର୍ଶ ଦେଉଛି। ସେ ତା'ଠାରୁ ନିୟମ କରାଇନେଲା ଯେ ଯଦି ଅପର୍ଣ୍ଣା ଭଟ୍ଟ ସାଙ୍ଗରେ ନଯାଏ ତେବେ ରାଘସ୍ବା ସାଙ୍ଗରେ ଯିବ। ତା'ପରେ ଅପର୍ଣ୍ଣାକୁ

ଖୋଜିବା ପାଇଁ ରାଘସ୍ବା ଘରେ ଖାଇବା ପାଇଁ ନରହି ଗାଁକୁ ବାହାରିଗଲା।

ଅସ୍ବଷ୍ଠା ଭଟ୍ଟ ବେଦାନ୍ତୀ। ପିଲାକାଳରୁ ସେ ବେଦପାଠ ଶିଖିବାର ପ୍ରୟାସ କରିଥିଲା। ଏବେ ତାହାହିଁ ତାର ଜୀବିକାର ସାଧନ ହୋଇଛି। ସେ ଗୀତ ଲେଖେ। ତାର ଲିଖିତ 'ହେ ମାନବ ମମତାକୁ କର ତ୍ୟାଗ' ଗୀତଟି ଗାଁରେ ବହୁତ ଲୋକପ୍ରିୟ ହୋଇପଡ଼ିଥିଲା। କୀର୍ତ୍ତନରେ ସେ 'ଅହଂକାରକୁ ମହାଯୋଗୀ ତ୍ୟାଗ କଲାପରି, ରାମସୀତାଙ୍କୁ ତ୍ୟାଗ କଲେ' ଭଜନଟି ଗାଇ ଖୁବ୍ ବାହବା ପାଇଥିଲା। ଦେଶାଇବାବୁଙ୍କ ପାଖକୁ ଯିବାକଥା ଶୁଣି ତା'ର ହାତଗୋଡ଼ ପାଣିହୋଇଗଲା। ବଡ଼ ଦେଶାଇଙ୍କ ନାଁକୁ ଏଇ ବେଦାନ୍ତୀ ବ୍ରାହ୍ମଣର ଦେବତାଠାରୁ ଅଧିକ ଭୟ। ଦଶଟଙ୍କା ଦକ୍ଷିଣାଲୋଭରେ 'ସ୍ୱଧର୍ମବ ଚାବେକ୍ଷ ନ ବିକପିତୁ ମର୍ହସି' କହି ମନରେ ଧୈର୍ଯ୍ୟ ଧରିଲା। ଚାରିବର୍ଷ ଆଗେ ଅଭିନୟ ଶିଖାଇବା ପାଇଁ ଯେତେବେଳେ 'ଧଳାଘରକୁ' ଯାଇଥିଲା ସେତେବେଳେ ତାକୁ ପୁଅଠାରୁ ପନ୍ଦର ଟଙ୍କା ମିଳିଥିଲା। ଆଉ ଶିଖାଇବା ଛାଡ଼ିଦେବାପାଇଁ ବାପଠାରୁ ମଧ୍ୟ ପନ୍ଦର ଟଙ୍କା ମିଳିଥିଲା। ଏଇପରି ଆଠଦିନ ଭିତରେ ଅଧବସ୍ତା ଯବ ଓ ତିରିଶଟଙ୍କା ସେ ପାଇଥିଲା। ସେତେବେଳର ବଢ଼ିଆ ଖିଆପିଆ କଥା ମନେପଡ଼ିଲା। ତେଣୁ ଲୋଭରେ ପଡ଼ି ବସନ୍ତ ସହ ଯିବାପାଇଁ ତିଆର ହୋଇଗଲା।

ଏଇପରି ଭାବରେ ବସନ୍ତ ଓ ତାର ହିତୈଷୀ ଧାରୱାଡ଼ରେ ପହଞ୍ଚିଲେ। ହୋଟେଲ ଯାଇ ପେଡ଼ା, ହାଲୁଆ, ସୁଜି ଲଡୁ ଇତ୍ୟାଦି ଖାଦ୍ୟ ସେବନ କରିବା ଦ୍ୱାରା ଭଟ୍ଟର ଭୟ କିଞ୍ଚିତ ଦୂର ହୋଇଗଲା ଓ ବସନ୍ତ ରାଓର କାମ କରିବା ପାଇଁ ଅନ୍ତଃପ୍ରେରଣା ମିଳିଲା। ରାଘସ୍ବା ସହିତ ଦେଖା ହେବାରୁ ଟିକିଏ ସାହାସ ବାନ୍ଧିଲା। ସେଠାରୁ ଦେଶାଇଜୀଙ୍କ ଘରକୁ ଯିବାପାଇଁ ଟାଙ୍ଗା ଧରିଲେ। ଅଧାବାଟରେ ଭଟ୍ଟ ଟାଙ୍ଗା ଘୁରାଇ ଉଡୁପୀ ହୋଟେଲରେ ନୂଆ ବାହାହୋଇଥିବା ବରଫପରି ଫଳମିଶା ଦୁଧ ପିଇଲା, ତା' ସହିତ ବସନ୍ତ ଲେମ୍ବୁ ସର୍ବତ ପିଇଁପିଇଁ ଅନ୍ତିମ ଆଶ୍ୱାସନା ଦେଇ କହିଲା, 'ଭଟ୍ଟଜୀ, ଯଦି କାମ ଠିକ୍‌ଭାବରେ କରିଦେବ, ତେବେ ତୁମକୁ ଘୋଡ଼ାରେ ବସାଇ ଶୋଭାଯାତ୍ରାକରି ବୁଲାଇବି।' ଶେଷରେ ପୁଣି ଟାଙ୍ଗା ନେଇ ଦେଶାଇଜୀଙ୍କ ଘର ଆଗରେ ପହଞ୍ଚିଲେ।

ଘରର ଫାଟକ ବନ୍ଦଥାଏ। ବାହାରେ କେହି ଚାକରବାକର ଦିଶୁନାହାନ୍ତି। ବସନ୍ତ ବାପାଙ୍କୁ ଡାକିବ କି ନାହିଁ ବୁଝିପାରିଲା ନାହିଁ। ଏଇଟା ଦେଶାଇବାବୁଙ୍କର ଶୋଇବାବେଳ। ସେ ଭାଗ ନେବାକୁ ଆସିଛି, କିନ୍ତୁ ତାଙ୍କର ନିଦ ଖରାପ କରିବା କଠିନ କାର୍ଯ୍ୟ। ବସନ୍ତ ଫୁସୁରୁଫୁସୁରୁ କରି କଥାବାର୍ତ୍ତା କରୁଥାଏ। ବାରିପଟ ଦେଇ ଯାଇ ମା' ସହିତ ସାକ୍ଷାତ କରିଆସିବାକୁ ମନ ହେଉଥାଏ। ତାହା ଶୁଣି ଅସ୍ବର୍ଣ୍ଣା ଭଟ୍ଟ କହିଲେ, 'ରାୟସାହେବ, ସେମିତି କଲେ କାମ ବିଗିଡ଼ିଯିବ। ଆସିଛୁ, ଏଇ ଉତ୍ତେଜନାରେ ଯଦି ଦି'ପଦ କଥା ହୋଇଯିବା ତେବେ କମ୍‌ରେ ଟଙ୍କାରୁ ଦିଅଣାର କାମ ହୋଇଗଲା ବୋଲି ଜାଣ। ମୋର ସେମିତି ମନେ ହେଉଛି। ଆଉ ତୁମେ ଯଦି ସେପଟେ ମା ସହିତ କଥା କହିବ, ସାନଭଉଣୀ ସହିତ ପାରମର୍ଶ କରିବ, ବଡ଼ ଭଉଣୀ

ସହ ସ୍ନେହଡ଼ୋର ଛନ୍ଦିବାକୁ ବସିବ ତେବେ କାମହୋଇଗଲା।' ଆଉକିଛି ଉପାୟ ନଦେଖି ବସନ୍ତ କବାଟ ଖଡ଼ଖଡ଼ କଲା।

ଖଡ଼ଖଡ଼ ଶବ୍ଦରେ କାଳେ ଦେଶାଇଜୀଙ୍କ ନିଦ ଭାଙ୍ଗିଯିବ ଏଇ ଡରରେ ଭରମା ଦଉଡ଼ି ଆସିଲା। କିନ୍ତୁ ସେ କବାଟ ଖୋଲିଲାବେଳକୁ ଦେଶାଇବାବୁ ଉଠି ପଡ଼ିଥାନ୍ତି। ସେ ଆଖି ମଳିମଳି ବାହାରି ଆସିଲେ। ଅସ୍ଥିର ହୋଇ ଓଠକାମୁଡ଼ି ଠିଆ ହୋଇଥିବା ପୁଅ ଓ ତା'ପଛକୁ ବାହାରେ ବଙ୍କାଚନ୍ଦନଗାର, ଆଣ୍ଠୁଲୁଚା ଧୋତିପିନ୍ଧା ଛଳବିନୟ ହସରେ ବିଭୂଷିତ ଅପର୍ଣ୍ଣା ଭଟ୍ଟକୁ ଦେଖିଲେ। କମ୍ପିତ ବସନ୍ତ ଭିତରକୁ ଯିବ କି ଯିବନାହିଁ, ଦ୍ୱିଧାରେ ପଡ଼ି ଦୁଆରମୁହଁରେ ଠିଆହୋଇ ରହିଲା। ତାକୁ ଭିତରକୁ ନଡ଼ାକି ଦେଶାଇଜୀ ନିଜେ କବାଟ ପାଖକୁ ଆସିଲେ। ବସନ୍ତ ଉପରେ ଥରେ ଆଖି ବୁଲାଇନେଇ ଅପର୍ଣ୍ଣା ଆଡ଼େ ମୁହଁ ଫେରାଇଲେ। ଅପର୍ଣ୍ଣା ଭଟ୍ଟକୁ ନିଜର ପରିଚୟ ଦେବାର ଅବସର ଏତିକିବେଳେ ମିଳିଲା।

'କ'ଣ ରାୟସାହେବ ମୋତେ ଚିହ୍ନିପାରିଲେ ନାହିଁ?...ମୁଁ ଅପର୍ଣ୍ଣା ଭଟ୍ଟ। ପାହାଡ଼ୀ ବ୍ରାହ୍ମଣ। ଆଗେ ଆପଣଙ୍କ ପୁଅକୁ ନାଟକ ଶିଖାଇବା ପାଇଁ 'ଧଳା ଘରକୁ' ଆସିଥିଲି। ଆପଣ ପାରିତୋଷିକ ଦେଇ ଫେରାଇ ଦେଇଥିଲେ।'

ଦେଶାଇଜୀ ନିର୍ବିକାର ଭାବରେ ସବୁ ଶୁଣିଲେ। ଭରମାକୁ ଡାକି କହିଲେ, ୟାଙ୍କୁ ମୁଠେ ଯବ ଦେଇ ବିଦା କରିଦେଲୁ।'

'ନାହିଁ ନାହିଁ ରାୟସାହେବ, ମୁଁ ଭିକମାଗି ଆସିନାହିଁ....।'

'ବୁଝିଲି, ବୁଝିଲି, ଆପଣ ବସନ୍ତର ହିତୈଷୀ। ବସନ୍ତ, ତୋର ଅସଲି ହିତୈଷୀକୁ ଡାକିଆଣ। .....ଏ ବେଦାନ୍ତୀକୁ ଆଣିଛୁ କାହିଁକି?'

ଦେଶାଇଙ୍କର ଗୋଟିଏ ଗୋଟିଏ କଥା ଶୁଣି ବସନ୍ତର ହାତଗୋଡ଼ ପାଣି ହୋଇଗଲାଣି। ଏବେ ମୁହଁରୁ କଥା ବାହାରୁ ନାହିଁ। ହଉ, ଘୋଡ଼ାରେ ଶୋଭାଯାତ୍ରା ବାହାର ନକରୁ, ଟଙ୍କାଦଶଟି ତ ରୋଜଗାର ହବ—ଏହା ଭାବି ଅପର୍ଣ୍ଣା ଭଟ୍ଟ ପାଦେ ଆଗେଇଯାଇ କହିଲା, 'ରାୟସାହେବ, ଆପଣ ଆପଣଙ୍କ ପୁଅକୁ ଭାଗ ନେଇଯିବାପାଇଁ କହି ଚିଠି ଦେଇଥିଲେ, ...ପୁଅ ଉପରେ ଏତେ ରାଗ କାହିଁକି ଆଜ୍ଞା? ବାପ ପୁଅ ଭିତରେ ଭିନେଭାଗ କଣ ଏଇ ପ୍ରଥମ ହେଉଛି? ଆପଣଙ୍କୁ ଟିକିଏ ଶାନ୍ତ କରିବା ପାଇଁ ବସନ୍ତ ରାଓ ଏ ଗରିବ ବ୍ରାହ୍ମଣକୁ ସାଙ୍ଗରେ ନେଇକରି ଆସିଛି। ଆପଣଙ୍କଠାରୁ କିଛି ମିଳୁ ବା ନମିଳୁ—ସେଇଟା ବଡ଼କଥା ନୁହଁ। କଥା ହେଲା, ଘରର କଳିତକରାଳ ଏଇଠି ଛିଣ୍ଡିଯାଉ। ଏହାହିଁ ଆମପରି ଆଶ୍ରିତ ଲୋକଙ୍କର...' ଅପର୍ଣ୍ଣା ଭଟ୍ଟର ନାଟକୀୟ ଭାଷଣ ସବୁ ଶୁଣୁଥିବା ଭରମା ଆଡ଼େ ଚାହିଁ ଦେଶାଇଜୀ ପାଟକିର ଉଠିଲେ, କାଲା ହୋଇଗଲୁ ନାଁ କଣ? ଏ ବ୍ରାହ୍ମଣକୁ ଯବ ମୁଠେ ଦେଇ କମ୍ପାଉଣ୍ଡ ବାହାରକୁ ନିକାଲି ଦେ।'

ଡରରେ ଭରମା ଯବ ଆଣିବା ପାଇଁ ତରତର ହୋଇ ଭିତରକୁ ପଶିଗଲା। ଏତେବେଳକେ ବସନ୍ତ ମୁହଁ ଖୋଲିଲା, 'ମୁଁ ଅପର୍ଣ୍ଣା ଭଟ୍ଟକୁ ସାଙ୍ଗରେ ଆଣି ଆସିଛି।'

'ଯାହାକୁ ତାହାକୁ ସାଙ୍ଗରେ ନେଇ ଆସିବୁ, ଏଇଟା କଣ ଧର୍ମଶାଳା ? ଆଣିବା କଥା ଯଦି ତେବେ ନିଜର ହିତୈଷୀ ରାଘୁଆକୁ ନେଇକରି ଆ।' ଏହା କହି ରାଗରେ କମ୍ପି ଉଠିଲେ। 'ଭାଗ ଦରକାର ତୋର ନାଁ, ନେ ଭାଗ ନେ' – କହି ବସନ୍ତ ଆଡ଼େ ମୁହାଁଇଁ ଆସି ତା'ଗାଲରେ ସଜୋରରେ ଏକ ଥାପଡ଼ କଷିଦେଲେ। ସେ ଚାପଡ଼ାର ଚୋଟ ଖାଇ ବସନ୍ତର ମନେହେଲା ଯେମିତି ଭୂତଚ୍ୟାପୁଡ଼ା ଖାଇଛି। ସେ ନିର୍ବାକ ହୋଇ ଧପ୍ କରି ଭୂଇଁରେ ବସିପଡ଼ିଲା।

ଏ କାଣ୍ଡକାରଖାନା ଦେଖି ଅପର୍ଣ୍ଣା ଭଟ୍ଟ ସେତେବେଳକୁ ଗେଟ୍‌ର ଅଧାବାଟରେ ହେଲାଣି। ଗୌଡ଼ ସାହେବଙ୍କର ଆଜ୍ଞାଧୀନ ଭରମା, ଯିଏକି କେବେ ଗାଳିଶୁଣି ନଥିଲା, ସହଳ ତା'ପଛେପଛେ ଆସି ତାକୁ ରୋକି ତାର ଧୋତି କୁଞ୍ଚରେ ମୁଠାଏ ଯବ ପକାଇଦେଇ ଗଣ୍ଠି ପକାଇଦେଲା ଓ ତାକୁ ଗେଟ୍ ପର୍ଯ୍ୟନ୍ତ ନେଇ ଛାଡ଼ିଦେଲା।

ଏସବୁ ପାଟିତୁଣ୍ଡ ଶୁଣି ବିଶୁବାଈ ବାହାରି ଆସିଲେ। ପାହାଚ ଉପରେ ଗଣ୍ଠିଲିଟିଏ ପରି ପଡ଼ିଥିବା ପୁଅକୁ ଝାଡ଼ିଝୁଡ଼ିଦେଇ ଉଠାଇବାକୁ ଚେଷ୍ଟା କଲେ। ସେ ଉଠିବାକୁ ରାଜି ହେଲାନାହିଁ। ବାଁ ଗାଲ ଉପରେ ସେ ଚାପି ଧରିଥିବା ହାତକୁ ବିଶୁବାଈ ଟାଣି କରି ଘୁଞ୍ଚାଇଦେଲେ। ଗାଲ ଉପରେ ଦେଶାଇଜୀଙ୍କର ପ୍ରଥମ ତିନି ଆଙ୍ଗୁଠିର ସ୍ପଷ୍ଟ ଛାପ ବସିଯାଇଥାଏ। କାଣି ଆଙ୍ଗୁଠିର ଛାପ ଟିକିଏ କମ୍। ତୃତୀୟ ଆଙ୍ଗୁଠିରେ ପିନ୍ଧିଥିବା ଅଷ୍ଟକୋଣ ମୁଦିର ଦାଗ ମଧ୍ୟ ବସିଯାଇଛି। ଜଡ଼ସଡ଼ହୋଇ ବସିଥିବା ବସନ୍ତ ମା'କୁ ଦେଖି କାନ୍ଦିବାକୁ ଲାଗିଲା। ଭରମା ସହାୟତାରେ ବେଣଙ୍କା ତାକୁ ଭିତରକୁ ନେଇଯାଇ ଆପଣା ବିଛଣାରେ ଶୁଆଇଦେଲେ। ଭରମାର କଥାନୁସାରେ ବସନ୍ତ ଗାଲରେ ଡିଳ ତେଲ ମାଲିସ କଲେ। ପାଣି ଗରମ କଲେ। ତାଙ୍କ ପାଟିରୁ କଥା ବାହାରୁ ନଥାଏ। ଆଖିରୁ ଅବିରଳ ଲୁହ ଝରିପଡୁଛି।

ତା'ରି ପ୍ରତିଧ୍ୱନି ଭାବରେ ବସନ୍ତ ପହିଲେ କଇଁ କଇଁ ହୋଇ କାନ୍ଦୁଥିଲା। ପରେ ସଙ୍କୋଚ ଛାଡ଼ି ଭାଙ୍ଗିପଡ଼ି ସ୍ୱର ଲମ୍ବେଇ କାନ୍ଦିଉଠିଲା।

ଉଦ୍ଧତ ବସନ୍ତ ମାଡ଼ଖାଇ ଚୁପ୍‌ଚାପ୍ କାନ୍ଦିଲା କାହିଁକି ? ପାଠକେ ଏକଥା ମୋତେ ପ୍ରଶ୍ନ କରିବାର କୌଣସି କାରଣ ନାହିଁ। ଭୁଲ ରାସ୍ତାରେ ଯାଉଥିବା ଉଦ୍ଧତ ଯୁବକ, ଧନୀ ପୁଣି ବିଚାରଶୂନ୍ୟ ଲୋକ ଶାରୀରିକ ପୀଡ଼ାକୁ କେତେ ଡରନ୍ତି, ତାହା ଏମିତି ସେମିତି ନୁହଁ ଯେ, ଅନୁଭବୀକୁ ଜଣାପଡ଼ିବ ନାହିଁ।

ମା' କୋଳରେ ମୁଣ୍ଡ ରଖି ଦି'ତିନିଘଣ୍ଟା ସେବା ଶୁଶ୍ରୁଷା ପାଇଲାପରେ ବସନ୍ତ ରାଓର ଡର ଟିକିଏ କମିଲା। ଥରା କମିଗଲା। ଗାଲରେ ଏବେବି ବ୍ୟଥା। ଥାପଡ଼ ଖାଇ ତାର କାନ ବନ୍ଦ ହୋଇଗଲାପରି ହୋଇଥିଲା। ମାନସିକ ଆଘାତ ଟିକିଏ କମି ଆସିଲା। ଏଭିତରେ ଭରମା ବସନ୍ତର ଉପର ମହଲାର ଘର ଠିକ୍ ଠାକ୍ କରିଦେଇଥାଏ। ମା'ର ଉପଦେଶମୁତାବକ ବସନ୍ତ ନିଜର ଉପରଘରକୁ ଯିବା ଆଗରୁ ଦେଶାଇଙ୍କ ଶୋଇବା ଘରକୁ ଯାଇ ତାଙ୍କ ପାଦ ଛୁଇଁ କ୍ଷମାମାଗିଲା ଓ 'ମୋର ଭୁଲ ହୋଇ ଯାଇଛି' ବୋଲି କହିଲା। 'ମୋର ତୋ ଉପରେ ବିଶ୍ୱାସ ନାହିଁ।

ଭୂଲ ହୋଇଯାଇଛି ଯଦି କହୁଛୁ ତେବେ ଠିକ୍ ଆଚରଣ କରି ଦେଖା' କହି ସେ ଚୁପ୍ ହୋଇଗଲେ।

ଏ ବିଷୟରେ ଆଉ ଅଲୋଚନା ହେଲାନାହିଁ। ଏତେସବୁ କିଛି କଲାପରେ ବାପା କିଛି ନକହି ତାକୁ ସ୍ୱୀକାର କରିନେଲେ, ଏହା ଦେଖି ବସନ୍ତ ସନ୍ତୁଷ୍ଟ ହେଲା। ଦ୍ୱିତୀୟଥର ପାଇଁ ବାପା ରାଘୱାର ନାଁ ଧରିଲେ ନାହିଁ। ବସନ୍ତ ଆଉ ଗାଁକୁ ଯିବା କଥା ଉଠାଇଲା ନାହିଁ। ପୁଣି ସୁଖର ଦିନ ଲେଉଟି ଆସିଲା। ସୁଖପାଇଁ ମୂଲ୍ୟ ଦେବାକୁ ପଡ଼େ ଏକଥା ବସନ୍ତ ସହଳ ପାଶୋରି ପକାଇଲା। ସେ ଏବେବି ପିଲାଳିଆମୀ ଛାଡ଼ି ନଥାଏ। ଆଗାମୀ ପଚାଶ ବର୍ଷ ପର୍ଯ୍ୟନ୍ତ ଛାଡ଼ିବାର ସମ୍ଭାବନା ମଧ ନାହିଁ। ସେଇ ଦିନର ମାଡ଼ ହେତୁ ରାଘୱା ଘରେ ପାଦପକାଇବା ଅଭ୍ୟାସ ଛାଡ଼ିଦେଇଛି।

# 30. ରାଘପ୍ପାର ବିଜୟ

ଦେଶାଈଜୀଙ୍କଠାରୁ ମୁଠାଏ ଯବ ପାଇ ସେଠାରୁ ବଂଚି କରି ଯେତେବେଳେ ଅପର୍ଣ୍ଣା ଭଙ୍ଗ ବାହାରିଆସିଲା, ସେତେବେଳେ ନିଜକୁ ଏହା କହି ସାନ୍ତ୍ୱନା ଦେଲା ଯେ, 'ସେ ଯେ ମୋତେ ଜୀଅନ୍ତା ଛାଡ଼ିଦେଲେ, ଏଇ ଭଗବାନଙ୍କର ଅଶେଷ ଦୟା !' ୟାପରେ ଯେ ସେ କଣ କରିବ ଏହା ବୁଝିପାରିଲା ନାହିଁ। ବସନ୍ତର ଆଶ୍ରୟରେ ସେ ଧାରଓ୍ୱାଡ଼ ଆସିଥିଲା। ତେଣୁ ନିଜ ସାଙ୍ଗରେ ପଇସାଟିଏ ସୁଦ୍ଧା ଆଣି ନାହିଁ। ଏଣେ ବସନ୍ତ ତାକୁ ମଝି ନଈରେ ଛାଡ଼ିଦେଲା। ତହିଁରେ ପୁଣି ରାଘପ୍ପା ଘରର ଠିକଣା ତାର ମନେ ନାହିଁ କି ତାର ସାଙ୍ଗିଆ ମଧ୍ୟ ମନେ ନାହିଁ। କେବଳ ଏତକ ମନେ ଅଛି ଯେ ତା' ଘର ଆଗରେ ଗୋଟିଏ 'ଅଞ୍ଜିର' ଗଛ ଥିଲା। ସୌଭାଗ୍ୟକ୍ରମେ ସକାଳେ ଦେଶାଈଜୀଙ୍କ ଘରେ ପହଞ୍ଚାଇ ଦେଇଥିବା ଟାଙ୍ଗା ଆଗପଟରୁ ଆସୁଥିବାର ସେ ଦେଖିଲା। ଏଇଟି ଉଦ୍ଧାର ପାଇବା ବେଳ ଭାବି ଅପର୍ଣ୍ଣା ଜୀବନକୁ ପରୁଆ ନକରି ସିଧା ଟାଙ୍ଗା ଆଗରେ ଠିଆ ହୋଇଯାଇ ପାଟିକଲା। ଟାଙ୍ଗା ଅଟକି ଗଲା। ଟାଙ୍ଗାବାଲାଠାରୁ ରାଘପ୍ପା ଘରର ରାସ୍ତାପଚାରି ବୁଝି ଘୂରିଘୂରି ଶେଷରେ ଅତିକଷ୍ଟରେ ସେଇ 'ଅଞ୍ଜିର' ଗଛ ପାଖରେ ପହଞ୍ଚି ରାଘପ୍ପା ଘରକୁ ଖୋଜି ପାଇଲା। ସେଠାରେ ଦି'ଗୁଣ୍ଡା ଖାଇଲା, ଘଟିଥିବା ଘଟଣା ଆଦ୍ୟପ୍ରାନ୍ତ ବର୍ଣ୍ଣନା କଲା; ଗାଡ଼ି ଭଡ଼ା ଓ ଅନ୍ୟାନ୍ୟ ଖର୍ଚ୍ଚ ପାଇଁ ରାଘପ୍ପା ପାଖରୁ ଛଅ ଅଣା ପଇସା ମାଗିନେଇ ଭଗବାନଙ୍କ ନାମ ସ୍ମରଣ କରି ଗାଁକୁ ଯାଉଥିବା ବସ୍ ଧରିଲା।

ପନ୍ଦରଦିନ ଯାଏଁ ରାଘପ୍ପା ବସନ୍ତ ଆସିବା ବାଟକୁ ଚାହିଁ ରହିଲା, ହେଲେ ବସନ୍ତର କିଛି ସୋରଶବ୍ଦ ମିଳିଲା ନାହିଁ। ହାଟ ବଜାରକୁ ଆସୁଥିବା ଗାଁ ଲୋକେ କହିଲେ ଯେ ବସନ୍ତ 'ଧନୀଘରକୁ' ଫେରିନାହିଁ। ବସଂତ କୁଆଡ଼େ ଯାଇପାରେ ରାଘପ୍ପା ସେକଥା ଭାବିବାକୁ ଲାଗିଲା। ଧାରଓ୍ୱାଡ଼ରେ ବାପ ପାଖରେ ଥାଇ ଭୟ ବା ଲାଜରେ ମୁହଁ ଛପାଇ ରହିନାଇଁତ ? ନାଟକ ଗଲା ଚୂଲିକୁ। ଏମିତି ଢ଼ିଲମ୍ ଢ଼ିଲା କଲେ ବସନ୍ତ ବାପର ବଶ ହୋଇଯିବ। ଆଉ ମୋ ଝିଅର ତା ସହିତ ବିବାହ ସ୍ୱପ୍ନ ହୋଇ ରହିଯିବ। ଭୁଲଭଟକାରେ ମଧ୍ୟ ବାଟଘାଟରେ ଦେଖା ହେଉନାହିଁ। ବାହରେ ବାପର ଦର୍ପ।

ଯେହୁଁ ଦିନ ଗଡ଼ିବାକୁ ଲାଗିଲା, ରାଘପ୍ପାର ଆତୁରତା ବଢ଼ିବାକୁ ଲାଗିଲା। ଭାବିଲା ବସନ୍ତ ସହିତ ବାହାରେ ଯଦି ଭେଟ ନହୁଏ ତେବେ ଦେଶାଈଙ୍କ ଘରେ

ଚଢ଼ଉ କରିବାକୁ ପଡ଼ିବ। ଯେମିତି ହେଉ ତାକୁ ଥରେ ଭେଟିବା ଦରକାର। ତା'ପରେ କଣ କରାଯିବ? ସେକଥା ସେଇଠି ଭାବିବ। ସେ ଦେଶାଇଜୀଙ୍କ ଘରକୁ ଯିବାପାଇଁ ବାହାନା ଖୋଜୁଛି, ଏତିକି ବେଳେ ଭଲ ସୁଯୋଗଟିଏ ଆସି ବଳେବଳେ ମିଳିଗଲା।

ଦିନେ ଚମ୍ପକ୍କା ଯାହା ଖାଇଥିଲା ସବୁ ବାନ୍ତି କରିଦେଲା। ରାଘସ୍ତା ଏକାବେଳକେ ନାଚିଉଠିଲା। ପଚାରିଲା, 'ବାନ୍ତି କେତେଦିନହେଲା ହେଉଛି?' ଲୁହଭରା ଆଖିରେ ଚମ୍ପକ୍କା କହିଲା 'ତିନିମାସ ହୋଇ ଗଲାଣି।'

ସେଇ ଦିନ ଦିପହରେ ରାଘସ୍ତା ଟାଙ୍ଗାରେ ତାକୁ ନେଇ ସିଭିଲ ହସପିଟାଲକୁ ଗଲା। ସେଠାରେ ଲେଡ଼ିଡ଼ାକ୍ତରଙ୍କୁ ଦେଖାଇ ତାଙ୍କ ସହିତ ପରାମର୍ଶ କଲା। ଜଣାପଡ଼ିଲା ପ୍ରାୟ ତିନି ମାସ ପୂରିଗଲାଣି।

ରାଘସ୍ତା ମନକୁ ମନ ସ୍ଲୋଗାନ ଦେଲା, 'ରାଘସ୍ତାଭରାରୀର ଜୟ।'

ଏ ଖବର ଦେଶାଇଜୀଙ୍କ ଯାଏଁ ପହଞ୍ଚାଇ ନ ଦେଲେ ରାଘସ୍ତାକୁ ଶାନ୍ତି ମିଳିବ କେମିତି? ପରଦିନହିଁ ସେ ଦେଶାଇଜୀଙ୍କ ଘରେ ଚଢ଼ଉ କଲା।

ରାଘସ୍ତା କାହିଁକି ଆସିଛି ଦେଶାଇଜୀ ବୁଝିପାରିଲେ ନାହିଁ। ସେ ଭାବିଲେ ରାଘସ୍ତା ଯଦି ବସନ୍ତ ବିଷୟରେ କିଛି କଥା ଉଠାଏ ତେବେ ସେ ତାକୁ ଉଚିତ ଶିକ୍ଷା ଦେବେ। ତାକୁ ବୈଠକଖାନାକୁ ଡ଼ାକିନେଇ ଆପଣାର ନରମ ଗଦି ଉପରେ ବସାଇ ଆଦର କରି ପାନଗୁଆ ଧୂଆଁପତ୍ର ଦେଇ ତାର କୁଶଳ ପ୍ରଶ୍ନ କଲେ ଓ ତା'କଥା ଶୁଣିବା ପାଇଁ ସଜହୋଇ ବସିଲେ। ପାଖ ତକିଆ ଉପରେ ହାଲକାଭାବରେ ଭରା ଦେଇ ରାଘସ୍ତା ବଡ଼ ବିନୀତ ଭାବରେ ଦେଶାଇଜୀଙ୍କ ଆଡ଼େ ଚାହିଁ ଏମିତି ଭାବରେ କଥା ଆରମ୍ଭ କଲା, ସତେଯେମିତି କାନରେହିଁ କହିବାକୁ ଚାହୁଁଛି। କହିଲା,

'ରାୟସାହେବ, ଆପଣଙ୍କ କୃପାରୁ ସବୁ କୁଶଳ। ତଥାପି ଦୁର୍ଭାଗ୍ୟ ଦେଖନ୍ତୁ। ଭଗବାନ ନ କରନ୍ତୁ, ଆପଣଙ୍କ ଆଗରେ ମୁଁ ଅସତ୍ ହୋଇ ନଯାଏଁ। ସେଇ ଚିନ୍ତାରେ ମୋତେ ଦିନରାତି ନିଦନାହିଁ। ମଣିଷର ଦାମ୍ ହେଲା ତାର କଥା। ଥରେ କଥା ଦେଇ ଅସତ୍ ହେବା ଉଚିତ ନୁହଁ। ଏଇଟି ସନାତନ ଧର୍ମ।....ଯଦି ଦେଇଥିବା କଥାରେ ବିଘ୍ନ ଘଟାଇବା ପାଇଁ ଭଗବାନହିଁ ଓହ୍ଲାଇ ଆସନ୍ତି, ତେବେ ମଣିଷ କଣ କରିବ?....ସେତିକିବେଳେ ଅସଲ ଧର୍ମସଙ୍କଟ ଜାତହୁଏ। ମୁଁ ସବୁବେଳେ ହାତଯୋଡ଼ି ଭଗବାନଙ୍କୁ ପ୍ରାର୍ଥନା କରୁଛି ଯେମିତି ମୋ ବଚନ ମିଥ୍ୟା ନ ହେଉ, ....କିନ୍ତୁ ଭଗବାନହିଁ ବାଦ ସାଧୁଛନ୍ତି।

ଦେଶାଇଜୀ ମୁରକିହସି ତା କଥା ଶୁଣୁଥାନ୍ତି। ତାଙ୍କର ମୁରୁକିହସ ଦେଖି ରାଘସ୍ତା ଦେହରେ ନିଆଁ ଚରିଗଲା। ମନକୁ ମନ କହିଲା, 'ଆରେ ଦେଶାଇ, କଥା ଶୁଣି ହସୁଛୁ।' ନିଜ କଥାର ଗୌର ଚନ୍ଦ୍ରିକାକୁ ରୋକି ଛେପଢ଼ୋକି ପୁଣି ଆରମ୍ଭ କଲା।

'ଭଗବାନଙ୍କ ଲୀଳା ଦେଖନ୍ତୁ, ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି ଯେ ଏଇ ଗଡ଼ିଗଲା ବୟସରେ ସଂତାନପ୍ରାପ୍ତି ଯୋଗ ଅଛି। ଏକଥା ଯଦି କେହି ହୁସିଆର ଜ୍ୟୋତିଷ କହିଥାନ୍ତା, ତେବେ ମୁଁ ହସିଦେଇଥାନ୍ତି। ଶେଷରେ ଏଇଆ ହେବାର ଥିଲା।

ଦେଶାଇଜୀଙ୍କର ହସ ଥମିଯିବାର ଦେଖି ରାଘପ୍ପା ମନେ ମନେ କହିଲା, ‘ଏବେ ବାଟକୁ ଆ ଦେଶାଇ।’ ଦେଶାଇଜୀ କିଛି କହିଲେ ନାହିଁ। ରାଘପ୍ପା ରସିଦଟିଏ ଦେଖାଇ କହିଲା, ‘ଦେଖନ୍ତୁ, ଏଇ ଏବେ ଡ଼ାକ୍ତରାଣୀଙ୍କୁ ଦେଖେଇ କରି ଆସୁଛି।’ ଦେଶାଇଜୀ ସେଥିପ୍ରତି ଧ୍ୟାନ ଦେଲେନାହିଁ।

‘ଆପଣ ବିଶ୍ୱାସ କରନ୍ତୁ ବା ନକରନ୍ତୁ ଦେଶାଇବାବୁ, ଭଗବାନଙ୍କଠାରେ ମୋର ଏତିକି ପ୍ରାର୍ଥନା, ଯେ ଭଗବାନ ମୋତେ ପୁଅ ଦିଅନାହିଁ। ଆପଣ ପଚାରିବେ କାହିଁକି? କାହିଁକି ଆମ କିଟ୍ଟୀ କଣ ମୋର ପର? ଏପଟେ ଭଣଜା, ସେପଟରୁ ଜୋଇଁ। ପିଲାଟାକୁ ଦେଖିଲା ଦିନରୁ ନିଜର ପୁଅପରି ଦେଖି ଆସିଛି। ମୋର ଯାହାକିଛି ଅଛି.....ଏଟା ସେଟା....ଅନ୍ନହେଉ ବା ରାଜ୍ୟ ସଂସାର ହେଉ, ତା’ରି ହାତରେ ସଂପିଦେଇ ଆଖିବୁଜିବାକୁ ମନସ୍ଥିର କରି ସିଧା ବାଟରେ ଚାଲିଛି। ଭଗବାନ ଦୟାଳୁ। ମୋର ବିଶ୍ୱାସ ସେ ମୋର ସିଧାବାଟରେ କଣ୍ଟା ପକାଇବେ ନାହିଁ। ଦେଖନ୍ତୁ ଦେଶାଇଜୀ, ଭଗବାନ କି ଖେଳ ଖେଳିବେ ତାହା ସଠିକ୍ କହିହେବ ନାହିଁ। ମୁଁ ଏସବୁ କାହିଁକି କହୁଛି? ଏଇଥିପାଇଁ ଯେ କାଲି ମୋତେ ଲୋକେ ଅସତ୍ କହନ୍ତୁ, କିନ୍ତୁ ଆପଣଙ୍କ ପରି ପୁରୁଖା ଲୋକଙ୍କୁ ଯାହା ସତ ତାହା ଜଣାଥିବା ଦରକାର। ସେଇ ଆମର ରକ୍ଷା କବଚ।’

ପୁଣି ମୁରୁକି ହସି ଦେଶାଇଜୀ କହିଲେ, ‘ରାଘପ୍ପାଜୀ ଆପଣଙ୍କର ଯଦି ପୁଅ ହୁଏ ତେବେ ମୁଁ ପେଡ଼ା ବାଣ୍ଟିବି। ଏ ପୋଷ୍ୟ ଝମେଲା ଛାଡ଼ନ୍ତୁ। ଆପଣଙ୍କ ସଂପତ୍ତିକୁ ଭଗବାନ ଯଦି କୃଷ୍ଣ ଭାଗ୍ୟରେ ଲେଖିଥିବେ ତେବେ ଯେ ଯାହା କରୁ, ଛଡ଼େଇନେଇ ପାରିବ ନାହିଁ। ଆଉ ଯଦି ତା’ ଭାଗ୍ୟରେ ନଥିବ, ତେବେ ସେ ହଜାର ଚେଷ୍ଟା କରୁ ପଇସାଟିଏ ପାଇବ ନାହିଁ। ଆପଣଙ୍କ ପରି ସମଝଦାର ଲୋକ ଯଦି ଏମିତି କ୍ଷେତ୍ରରେ କହନ୍ତି ଯେ ମୋର ପୁଅ ଦରକାର ନାହିଁ, ପୋଷ୍ୟନେବି, ତେବେ ଭଗବାନ ସ୍ୱୀକାର କରିବେ ନାହିଁ। ଦୁନିଆର ରୀତି ଅନୁସାରେ ଭଗବାନଙ୍କଠାରେ ଆପଣ ଏଇ ପ୍ରାର୍ଥନା କରନ୍ତୁ ଯେ ହେ ଭଗବାନ, ମୋତେ ପୁଅଟିଏ ଦେଇ ବଂଶ ଉଦ୍ଧାର କର। ଭଗବାନଙ୍କର କଣ ଇଚ୍ଛା ତାହା କିଏ ଜାଣେ!’

ରାଘପ୍ପା ମନେ ମନେ କହିଲା, ‘ଆଚ୍ଛା ଭାଇ, ତୁମେ ଭାରୀ ହୁସିଆର।’ ତାପରେ ନିଜର ଅଙ୍ଗେନିଭା କାହାଣୀ ଆଗକୁ ବଖାଣିଲା।

‘ରାୟସାହେବ, ପୁଅହେଉ ବା ଝିଅ ହେଉ, ତାହା କାହାରି ହାତକଥା ନୁହଁ। ଆପଣ ଯାହା କହିଲେ ସତ। ଦୁନିଆର ରୀତିକୁ ଚାହିଁ ପୁଅ ମାଗିବାହିଁ ମୋର ଉଚିତ। ମାତ୍ର ସେଥିରେ ମୋ ଭାଗ୍ୟରେ ସୁଖ ନାହିଁ।....ମୋର ସ୍ତ୍ରୀ ଭାରୀ ଦୁର୍ବଳ। ସେ ଯେ କଣ କରିବସିବ ସେଇକଥାକୁ ମୋର ଚିନ୍ତା।

‘କିଛି ହବ ନାହିଁ ଆଜ୍ଞା, ଡ଼ରନ୍ତୁ ନାହିଁ; ଭଗବାନଙ୍କଠି ବିଶ୍ୱାସ ରଖନ୍ତୁ, ସବୁ ଠିକ୍ ହୋଇଯିବ।

ରାଘପ୍ପାର ମନେହେଲା ଦେଶାଇଜୀ ତାର କୌଣସି କଥାକୁ ବିରୋଧ ନକରି

ସବୁଥିରେ ସହମତ ହୋଇ ତା ମୁଠାରୁ ବାହାରି ଯାଉଛନ୍ତି। ଦେଶାଇଜୀ ଉତ୍ତେଜିତ ନହେବାର ଦେଖି ସେ ନିଜେ ଉତ୍ତେଜିତ ହୋଇପଡ଼ିଲା। ମନେମନେ କହିଲା 'ଆରେ .....ଆଗପରି ଯଦି ଶକ୍ତି ଥାଆନ୍ତା ନାଁ ....କୌଣସି ନାଁ କୌଣସି ଉପାୟରେ ୟାକୁ ରଗାଇ ଦେଇଥାନ୍ତି।' ସେ ଯାହାଯାହା ଭାବିଥିଲା ସବୁ ଫେଲ୍ ମାରିଗଲା। ଉତ୍ସାହ ନଥାଇ କବିତା ଲେଖିବାକୁ ଚେଷ୍ଟା କରୁଥିବା କବି ପରି ରାଘସ୍ପା କ୍ଳାନ୍ତ ହୋଇପଡ଼ିଲା। ଆଉରି ଗିଲାସେ ପାଣି ପିଇସାରି ସେ ଯିବାକୁ ବାହାରିଛି ଏତିକିବେଳେ ପିଜୁଳି ଗଛରେ ଚଢ଼ି ପିଜୁଳି ପାରୁଥିବା ବସନ୍ତରାଓ ଝରକା ବାଟେ ଦେଖାଗଲା।

ସାମାଜିକତା ଅନୁସାରେ ରାଘସ୍ପା ଯଦି ବସନ୍ତ ବିଷୟରେ କୌତୂହଳ ପ୍ରକାଶ କରେ ତେବେ ଦେଶାଇଜୀ ତାକୁ ସେଠାକୁ ଡ଼ାକି 'ଇଏ ମୋର ପୁଅ' କହି ପରିଚୟ କରାଇଦେବେ, ଏ ଆଶା ନାହିଁ। ତା'ଛଡ଼ା ଏଇ ହାରାମଜାଦା ଦେଶାଇ ତାର କଅଁଳକୁହା ଉପରେ ପାଣି ଢ଼ାଳିଦେବାର ସମ୍ଭାବନା ଅଛି। ଏହା ଭାବି ଆଗପଛ ନବିଚାରି ସେ ବସିବା ଜାଗାରୁ 'ବସନ୍ତରାଓ, ଏ ବସନ୍ତରାଓ' କହି କୁହାଟ ଛାଡ଼ିଲା। କିଏ ଡ଼ାକୁଛି ଜାଣି ନପାରି ବସନ୍ତ ଗଛରୁ ଓହ୍ଲାଇବାକୁ ଲାଗିଲା।

'ଆମ ବସନ୍ତକୁ ଆପଣ ଚିହ୍ନନ୍ତି? କେମିତି ଚିହ୍ନିଲେ, କେଉଁଠି ଦେଖା ହେଲା ଆଦି ପ୍ରଶ୍ନ ଦେଶାଇଜୀ ପଚାରିବେ ଭାବି ରାଘସ୍ପା ମନେମନେ କୁରୁଳି ଉଠୁଥାଏ। ଯଦି ଏସବୁ ପଚାରନ୍ତି ତେବେ ସେ ବସନ୍ତର ନାଟକରେ ରାଜା ପାର୍ଟ ନେବାର ଇଚ୍ଛା କଥା, ପର୍ଦ୍ଦା ଆଦି ବିଷୟରେ କଥାବାର୍ତ୍ତା, ସୁନ୍ଦର ସାରୀ ଘରେ ଯାଇ ଗୀତଶୁଣିବା କଥା ଇତ୍ୟାଦିକୁ ରସାଳ ଭାବରେ ବର୍ଣ୍ଣନା କରି ତାଙ୍କ ମୁଣ୍ଡ ତଳକୁ କରିଦେବ। ମାତ୍ର ଦେଶାଇଜୀ କିଛି ହେଲେ ପଚାରିଲେ ନାହିଁ। ସେ ଚୁପ୍‌ଚାପ ଏମିତି ବସିରହିଲେ, ସତେଯେମିତି କିଛି ହୋଇନାହିଁ, ଆଉ ଏସବୁ କଥା ଏକାବେଳକେ ପୁରୁଣା।

ବସନ୍ତ ଘରକୁ ପଶିଲାମାତ୍ରେ ରାଘସ୍ପାକୁ ଦେଖି ମୁହଁବୁଲାଇ ଠିଆହେଲା। ତାକୁ ସୁଯୋଗ ନଦେଇ ଆଗୁଆ ହୋଇ ରାଘସ୍ପା କହିଲା, 'ଆରେ ବସନ୍ତ ରାଓ, ମୋତେ ଭୁଲି ଗଲେଣି ନାଁ କଣ? ଗାଁରେ ପଶୁମେଳାରେ ଯୋଡ଼ିଏ ବଳଦ ଦେଖାଇଥିଲି; ସେତେବେଳେ ଆପଣ ଧାରୱାଡ଼ ଆସିଲେ ଦେଖାକରିବେ କହିଥିଲେ। ଢ଼େର ଦିନ ହୋଇଗଲାଣି। ଏଇଠି 'ଲେନ୍‌ବଜାର'ରେ ଆମର ଘର, କେବେ ଆସିବେ, କଥା ଦେଇଥିଲେ, ଭୁଲିବେନାହିଁ......କାହିଁକି, ବାପା କଣ ମନା କରୁଛନ୍ତି ନାଁ କଣ? ମୁଁ ତାଙ୍କୁ ସବୁ କହିଛି—ଆପଣଙ୍କ ପୁଅର ପାଦଧୂଳି ଦିନେ ମୋ ଘରେ ପଡ଼ିବାକୁ ଦିଅନ୍ତୁ। କାଲି ଆମ ଘରକୁ ଆସନ୍ତୁ? ଏତିକି କହି ଦେଶାଇଜୀଙ୍କ ଆଡ଼େ ଚାହିଁ ସଶବ୍ଦହସି 'ଆଚ୍ଛା ଏବେ ମୁଁ ଯାଏଁ' କହି ଉଠିଲା। ଦେଶାଇଜୀ ଚୁପ୍ ରହିଲେ। ସେ ଚାଲିଯିବା ପରେ ମଧ୍ୟ ବସନ୍ତକୁ କିଛି କହିଲେ ନାହିଁ।

କିଛି କାମ କରି ନପାରି ସହଳ ଘରକୁ ଫେରୁଥିବା ବେଳେ ରାଘସ୍ପା ଆପଣାର ବାଚାଳତା କଥା ଭାବି ଲଜ୍ଜିତ ହେଲା। 'ଆରେ, ମୁଁ ''ରାଘସ୍ପା ଭରାରୀ'', ଏମିତି

ତାହାମିଛ କହିବା କେବେଠୁ ଶିଖିଲି ? ସେଠାରେ ମିଛ କହିବା କି ଦରକାର ଥିଲା ? ଖାଲି ଘରକୁ ଆସିବା ପାଇଁ କହିଥିଲେ କଣ ଚଳିନଥାନ୍ତା ? ଏମିତି ଆଜେବାଜେ ମିଛରେ କିଦରକାର ଥିଲା ?'

ପ୍ରତି ପଦକ୍ଷେପରେ ସେ ଅନୁଭବ କରୁଛି, ଯେ ତାର ଦିନକାଳ ବଦଳି ଯାଉଛି, ଦେଶାଇବାବୁଙ୍କ ପରି ଲୋକ ଆଗରେ ପୁଅ ବିଷୟ ନେଇ ଅନ୍ୟରକମର ମିଥ୍ୟାର ଆଶ୍ରୟ ନେବା ଉଚିତ ଥିଲା । ଏମିତି ଅପଟୁ ମିଥ୍ୟା କହିଥିବାରୁ ସେ ନିଜ ଉପରେ ରାଗିଉଠିଲା । ତାର ମୁହଁରୁ ପାଣି ମରିଗଲା ।

# 31. ଔଷଧ୍

ପରଦିନ ଦି'ପହରେ ଖାଇ ସାରିବାପରେ ଘଣ୍ଟେ ଶୋଇବା ବାହାନାରେ ବସନ୍ତ ନିଜ ଶୋଇବା ଘରେ ଇସ୍ତ୍ରୀକରା ଲୁଗା ପିନ୍ଧିଲା। ପାଖାପାଖି ତିନିଟା ବେଳକୁ ସଜବାଜ ହୋଇ ବାପା ଶୋଇପଡ଼ିଛନ୍ତି ଭାବି ଦାଣ୍ଡକବାଟ ଖୋଲିବାକୁ ଉଣ୍ଡୁଛି ଦେଶାଇଜୀ ସିଧା ତାପାଖକୁ ଆସିଲେ। ସେଦିନର ମାଡ଼ ପରେ ବାପାଙ୍କର ହାତର ତାକତ କଥା ବସନ୍ତ ଏଯାଏଁ ଭୁଲିନାହିଁ। ତା' ପ୍ରତି ବାପାଙ୍କର ସ୍ନେହ ବଢ଼ିଯାଇଛି। ତଥାପି ତାଙ୍କୁ ଦେଖିଲାମାତ୍ରେ ସେ ଥରଥର ହୋଇ ଥରିବାକୁ ଲାଗିଲା। ପାଖକୁ ଆସି ଦେଶାଇଜୀ ସିଧାସଳଖ ପଚାରିଲେ 'ରାଘପ୍ପା ଘରକୁ ଯାଉଛୁ ?'

ହତଚକିତ ହୋଇପଡ଼ିଥିବାରୁ ବସନ୍ତ ପାଟିରୁ ହଁ, ନାହିଁ କିଛି ବାହାରୁ ନାହିଁ। ମିଛ ବାହାନାଟିଏ କରିବ, ତା'ଠି ସେ ସାହସ ମଧ ନାହିଁ। ତାକୁ ଅଧିକ ହତବମ୍ବ ହେବାର ଅବସର ନଦେଇ ଦେଶାଇଜୀ କହିଲେ, 'ଯାଉଛୁ ଯଦି, ଏ ଚିଠିଟି ରାଘପ୍ପାକୁ ଦେଇଦେବୁ। ତୋର ଯଦି ଆଉ କୁଆଡ଼େ ଯିବାର ଅଛି, ତେବେ ଭରମାକୁ ପଠାଇ ଦେବି।

ପୂଜ୍ୟ ପିତାଙ୍କର ସେବା ଅବସର ପାଇ ବସନ୍ତ ଖୁସିରେ ମିଛର ଆଶ୍ରୟନେଇ କହିଲା 'ସେଇପଟେ ଯିବି, ଫେରିଲାବେଳେ ଦେଇଦେବି।'

ଅଧିକ ପଚରାଉଚୁରା ନକରି ଦେଶାଇଜୀ ଚଉତା କାଗଜ ଖଣ୍ଡିଏ ତା'ହାତରେ ଧରାଇଦେଲେ। ଖୋଲା, ଲଫାଫା ନାହିଁ। ଏତିକି କହିଲେ, 'କହିଦବୁ ବାପା ଦେଇଛନ୍ତି।'

ବସନ୍ତର ମନେହେଲା ଏ ଚିଠି ବଳରେ ତାକୁ ରାଘପ୍ପା ଘରେ ନିର୍ବାଧରେ ପଶିଯିବାର ସରକାରି ପରୁଆନା ମିଳିଗଲା। ତା ବିଷୟରେ ଚିଠିରେ କିଛି ଲେଖା ହୋଇଛି କି ନାହିଁ, ଏହା ଜାଣିବା ପାଇଁ ସେ ରାସ୍ତାରେ ଗଛମୂଳେ ଠିଆହୋଇ ଚିଠିଟି ପଢ଼ିଲା। ସେଥିରେ ତା କଥାର ନାଁ ଗନ୍ଧ ନାହିଁ।

ଚିଠିଟି ବମ୍ବେରୁ ଅଚ୍ୟୁତ ପଠାଇଥିବା ଭେଙ୍କଟରାଓର ଦାନପତ୍ର। ସକାଳ ପହରୁ ତାର ନକଲଟିଏ କରି ଦେଶାଇଜୀ ବସନ୍ତର ଯିବା ବାଟକୁ ଚାହିଁ ରହିଥାନ୍ତି। ତାଙ୍କର ଯୋଜନା ଥିଲା ଯେ ବସନ୍ତ ଦ୍ୱାରା ହିଁ ତାକୁ ରାଘପ୍ପା ପାଖକୁ ପଠାଯିବ। ସେଥିପାଇଁ ବସନ୍ତ ଯେତେବେଳେ ଗାଧୁଆ ଘରକୁ ମୁହଁ ଧୋଇବାକୁ ଆସିଲା, ସେ ଉଠି ପଡ଼ିଲେ

ଓ ଯେତେବେଳେ ଚୋର ପରି ବାହାରିଯିବାକୁ ଉଣ୍ଟୁଥାଏ ସେତେବେଳେ ତାକୁ ଚିଠିଟି ଧରାଇଦେଲେ ।

ଏହାପଛରେ ତାଙ୍କର ଉଦ୍ଦେଶ୍ୟ ହେଲା ରାଘପ୍ପା ପ୍ରତି ଏକ ନକଲି ଗୁଳି ଚଳାଇ ଦେଖିବା ।

ଉତ୍ସୁକ ବସନ୍ତ ରାଓ ସିଧା ରାଘପ୍ପା ଘରକୁ ଗଲା । ହସିହସି ରାଘପ୍ପା ତାକୁ ସ୍ୱାଗତ କଲା । ସେ ଆସିବା ମାତ୍ରେ କାଜୁ ପକାଇ ଭଲକରି 'ଉପୀଟ୍ଟୁ' କରିବା ଲାଗି ରୋଷେଇ ଘରେ ବରାଦ କରିଦେଲା । ତାକୁ ଗଦି ଉପରେ ବସାଇ ଟିକିଏ ପରିହାସ କଲା । 'ଏଇଥିପାଇଁ କଥାରେ ଅଛି ବାପ ପୁଅର ଟାଣ । ତୁମକୁ ଭାଗ ଆଣି ଦେବା ନାଁରେ ମୁଇଁ ବଦନାମ ହେଲି, ଆପଣମାନେ ଏକ ହୋଇଗଲେ । ତେଲରୁ ପିଢ଼ିଆ ପରି ମୋତେ ବାହାରକୁ ଫୋପାଡ଼ି ଦେଲେ ।' ଏକଥା ସେକଥା ଉଠିଲା । ବସନ୍ତର ଚାପୁଡ଼ା ଖାଇବା କଥା ବାଦ୍‌ଦେଇ ଅନ୍ୟସବୁ କଥା ରାଘପ୍ପା କହିଲା । ଶେଷରେ ନାଟକ କଥା ଉଠିଲା । ନାଟକ କରି କେଉଁ କମ୍ପାନୀ କେତେ କମାଇଲେ ଓ କେତେ ଉଜାଡ଼ି ଦେଲେ ଇତ୍ୟାଦି କଥା ବେଶ୍ ରସାଳଭାବରେ ବର୍ଣ୍ଣନା କରି ରାଘପ୍ପା କହିଲା, 'ସେମିତିରେ ତୁମ କମ୍ପାନୀ ଜନ୍ମ ନେବା ଆଗରୁ ମରିଗଲା, ନାଁ କଣ ?'

ମର୍ମାହତ ବସନ୍ତ କହିଲା, 'ଯାହା ହେବାର ହେଉ ରାଘପ୍ପାଜୀ, ମୁଁ ଆଜି ନହେଲେ କାଲି କମ୍ପାନୀ ନିଶ୍ଚୟ ଖୋଲିବି ।'

'ଭଲ କଥା ବାପା, ନିଶ୍ଚୟ ଖୋଲିବ, ଖାଲି ଯାହା ତୁମ କମ୍ପାନୀ ଖୋଲିଲା ବେଳକୁ ଆମ ପରି ବୁଢ଼ା ଶାଗୁଣା ଏ ସଂସାରରୁ ବିଦାୟ ନେଇସାରିଥିବେ । ଯାଉ, ସେତେବେଳକୁ ତୁମକୁ ଆଉଯିଏ ହେଲେ ଗୁରୁ ମିଳିଯିବ, ଆଜିକାଲି ଗୁରୁର ବା ଅଭାବ କଣ ?'

'ଆପଣଙ୍କୁ କଣ କହିବି ରାଘପ୍ପାଜୀ,.....ସେ ଦିନ କାମ ବିଗାଡ଼ିବା ଲୋକ ଆପଣ । ଏବେ ଆପଣ ଥଟ୍ଟା କରୁଛନ୍ତି । ସେଦିନ ଅପର୍ଣ୍ଣା ଭଟ୍ଟ ଜାଗାରେ ଯଦି ଆପଣ ଯାଇଥାନ୍ତେ... ।'

'ଯାଇଥିଲେ ଫାଇଦା ଭିତରେ ମୋତେ ମଧ୍ୟ ଯବ ମୁଠାଏ ମିଳିଥାନ୍ତା ।'

'ମୋ ବାପା ଆପଣଙ୍କୁ ଭାରୀ ଖାତିର କରନ୍ତି । କାଲି ଆପଣଙ୍କୁ ଯେଉଁ ନରମ ଗଦି ଉପରେ ବସାଇଥିଲେ, ତା ଉପରେ ସେ କାହାରିକୁ ବସାନ୍ତି ନାହିଁ । ଅତି ବଡ଼ ନହେଲେ ଅତି ଆପଣାର ଲୋକକୁ ସେ କେବଳ ବସାନ୍ତି ।'

'ତୁମ ବାପା, ମୋର ମନେହୁଏ ସବୁ କଥାକୁ ରାଜି ହେବେ, କିନ୍ତୁ ଭାଗଦେବା କଥାରେ ରାଜି ହେବେନାହିଁ । ଆଉରି କଥାଟିଏ ହେଲା' ବସନ୍ତ ଭାଗ ନେବାପାଇଁ ଭୋକିଲା ହେବାକୁ ପଡ଼େ । ଭୋକ ଛଡ଼ା କିଛି କାମ ହୋଇପାରିବ ନାହିଁ । ତୁମେ ଏବେବି ପିଲା । ଏକଥା ତୁମ ମନକୁ ଏବେ ଆସିନାହିଁ । କାଲି ଯେତେବେଳେ ଗୋଟେ ଦି'ଟା ପିଲାର ବାପା ହୋଇଯିବ, ସେତେବେଳେ ଏକଥା ବୁଝିବ ଯେ

ବାପାର ଛାୟାରେ କି ମଜା ମିଳେ। ସେତେବେଳେ ଠିକ୍‌ଭାବରେ ଭାଗ ମାଗିପାରିବ। ଠିକ୍ ସଙ୍କଟବେଳେ ମାଗିଲେ ଭାଗ ମିଳିପାରେ। ବେକାର କମ୍ପାନୀ ଖୋଲିବା ନାଆଁରେ ମିଛ ଉତ୍ସାହ ଦେଖାଇ ମାଗିଲେ ମିଳିବ କେଉଁଠୁ ?'

ବସନ୍ତ ରାଓ ନିଜ ଭିତରକୁ ଉଙ୍କିମାରି ଦେଖିନେଲା, ଭାଗ ନେବା ପାଇଁ ସତରେ ବ୍ୟସ୍ତତା ଅଛି କି ନାହିଁ। ରାଘସ୍ୱାର କଥା ଠିକ୍ ମନେହେଲା। ଏଣେ ବାପର ଚାପୁଡ଼ା ଏଯାଏଁ ଭୁଲିନାହିଁ। ତେଣୁ କଥାକୁ ଆଗକୁ ବଢ଼ାଇବା ପାଇଁ ତାର ଇଚ୍ଛାହେଲାନାହିଁ। ସେ କଥା ବଦଳାଇଦେଲା। ଏଆଡ଼ ସେଆଡ଼ର କଥା ଗପିବାକୁ ଲାଗିଲା। 'ଉପୀଟ୍ଟୁ' ଓ ଚା ପିଇ ବସନ୍ତ ଯିବାକୁ ବାହରିଛି ହଠାତ୍ ବାପା ଦେଇଥିବା ଚିଠି କଥା ମନେପଡ଼ିଗଲା। ସେଇଟି ରାଘସ୍ୱାକୁ ଦେଇ କହିଲା, 'ବାପା ଦେଇଥିଲେ।'

'ତୁମ ବାପା ଚିଠି ଲେଖିଛନ୍ତି ? ମୋତେ ? କାହିଁକି ବାବୁ ? ଏହା କହି ସେ ଚିଠିକୁ ଖୋଲି ଦେଖିଲାମାତ୍ରେ 'ଆରେ' କହି ଆଖି ବିସ୍ଫାରିତ କରି ମନ ଦେଇ ପଢ଼ିଲା।

'ଆଚ୍ଛା, ତାହେଲେ ଏ ଦେଶାଇ ବାଗକୁ ଆସିବ ନାହିଁ।'-ମନକୁ ମନ ଏହା କହି ସେ ବସନ୍ତକୁ ବିଦା କରିଦେଲା।

ଏହାପରେ ମଧ ବସନ୍ତରାଓ ରାଘସ୍ୱା ଘରକୁ ଅନେକଥର ଯିବାଆସିବା କଲା ପ୍ରତ୍ୟେକଥର ରାଘସ୍ୱା ତାକୁ ଭଲକରି ଖୁଆଏ ପିଆଏ। ମାତ୍ର ବସନ୍ତ ଟିକିଏ ଆଶ୍ଚର୍ଯ୍ୟ ହେଲା ଯେ ରାଘସ୍ୱାର କଥାବାର୍ତ୍ତା ଦିନକୁ ଦିନ ନୀରସ ହୋଇଯାଉଛି।

ନାଟକ ବିଷୟ ରାଘସ୍ୱା ପକାଏ ନାହିଁ। ଭାଗବଣ୍ଟାର କଥା ବସନ୍ତ ଯଦି ଉଠାଏ ତେବେ ତାକୁ ଏଡ଼ାଇ ଯିବାକୁ ଚେଷ୍ଟାକରେ। ବସନ୍ତ ଅବାକ୍ ହୁଏ, ରାଘସ୍ୱା କାହିଁକି ଏତେ ଏଡ଼ାଇ ଯିବାକୁ ଚେଷ୍ଟା କରୁଛି ? ତା'ପ୍ରତି ରାଘସ୍ୱା ମନରେ ଆଉ ହତାଦର ଭାବ ଜାତ ହୋଇନାହିଁତ ? ଖୁଆପିଆରେ କମ୍ କରୁନାହିଁ; ମାତ୍ର କଥାବାର୍ତ୍ତା ଆଗର ନିରୀହ ରସିକତାପୂର୍ଣ୍ଣ ଭାବ ପ୍ରତି ସେ ଏବେ ପ୍ରାୟ ଉଦାସୀନ ହୋଇପଡ଼ିଛି। ଏପରି କାହିଁକି ହେଉଛି ? ଶେଷରେ ବସନ୍ତ ରାଓ ମନକୁ ମନ ବିଚାର କରି ଦେଖିଲା ରାଘସ୍ୱା ତାର ବାପାଙ୍କୁ ଡ଼ରୁଛି।

ଫଳରେ ବାପାଙ୍କ ପ୍ରତି ତା ମନରେ ଅଧିକ ସଂଭ୍ରମ ଜାତହେଲା। ରାଘସ୍ୱା ହାତ ଗୋଟାଇନେଇଥିବାରୁ ବସନ୍ତ ଘରେ ଆଉ କେବେ ମା ସହିତ ଭାଗବଣ୍ଟା ବିଷୟରେ କଥା ହେଲାନାହିଁ। ପୁନଶ୍ଚ ଗାଁକୁ ଯିବାର ଇଚ୍ଛା ମଧ ପ୍ରକାଶ କଲାନାହିଁ। ସିନେମା ପାଇଁ ମା'ଠୁଁ ଯେତିକି ପାରେ ସେତିକି ହାତେଇନିଏ। କମ୍‌ଦାମର ସିଟରେ ବସି ଗୋଟିଏ ଛବି ଜାଗାରେ ଦି'ଟା ଛବି ଦେଖେ। ଗାଁରେ ଗୁଡ଼ାଖୁପିଆ ଅଭ୍ୟାସ ହୋଇଯାଇଥିଲା। ସେଥିପାଇଁ ଆଜିକାଲି ଚା ଜଳଖିଆ ଖର୍ଚ୍ଚ କମିଯାଇଛି। ସେ ଘରେ, ନହେଲେ ରାଘସ୍ୱା ଘରେ, ଅଥବା ସାଙ୍ଗସୁଖ ପାଇଲେ ଚା ପିଏ; ଏକାଏକା ଚା ପାଇଁ ଦୋକାନକୁ ଯିବା ଅଭ୍ୟାସ କମି ଆସିଲାଣି।

ଦେଶାଇଜୀ ବେଣକାଙ୍କୁ କହିରଖିଥାନ୍ତି, 'ବସନ୍ତ ଭାଗବାଣ୍ଟ କଥା ଆଉ ଧରିବ

ନାହିଁ। ଯଦି ଭାଗଦିଅ, ଗାଁକୁ ଯିବି ଇତ୍ୟାଦି କଥାରେ ଜିଦ୍ କରେ ତେବେ ମୋତେ କହିବ। ମୁଁ ତାକୁ ମାରଧର କରିବି ନାହିଁ। କେବଳ ଦେଖିବାକୁ ଚାହେଁ ତା'ଠି କିଛି ପରିବର୍ତ୍ତନ ଆସୁଛି କି ନାହିଁ। ତାକୁ ରାଘୱା ଘରକୁ ଯିବାକୁ ନଦେବାଟା ଠିକ୍ ହବନାହିଁ। ମନା କରିଦେଲେ ସେ ଆମକୁ ଲୁଚି, କରି ଯିବ। ଏଡ଼େ ବଡ଼ ପିଲାକୁ କେତେ ଆଖି, ଆଗରେ ରଖିବ? ସେ ସେଠାକୁ ଗଲେ ସୁଦ୍ଧା ତା, ଉପରେ କୌଣସି ପ୍ରଭାବ ପଡ଼ିବ ନାହିଁ। ତାର ବନ୍ଦୋବସ୍ତ କରିଦେଇଛି। ରାଘୱାକୁ ଜୁଆଣି ଖୁଆଇ ମୁଁ ବସନ୍ତର ପେଟବଥାର ଉପଶମ କରାଇଛି। ତାର ପରିଣାମ ଏବେ ଦେଖ। ତାକୁ ରାଘୱା ଘରକୁ ଯିବାକୁ ରୋକନାହିଁ, କିନ୍ତୁ ଆଗପରି ଉପଦ୍ରବ କଲେ ମୋତେ କହିବ।'

ପନ୍ଦର ଦିନ ବିତିଗଲେ ସୁଦ୍ଧା ବସନ୍ତ ତରଫରୁ କିଛି କଥା ଶୁଣିବାକୁ ନପାଇ ଦେଶାଇଜୀ ବୁଝିଲେ ଔଷଧ କାମକରିବାକୁ ଆରମ୍ଭ କରିଛି।

ସତରେ ଔଷଧର ପ୍ରଭାବ ପଡ଼ିଥିଲା। ମାତ୍ର ବ୍ୟଥା ଅନ୍ୟତ୍ର ଦେଖା ଦେଲା। ରାଘୱା ବସନ୍ତ ଦ୍ୱାରା ସାନସାନ ଫାଇଦା ଉଠାଇବାର ଚିନ୍ତା ଛାଡ଼ିଦେଲା। ପୁଣି ଫାଇଦା ଉଠାଇବା ମଧ୍ୟ ସଂଭବ ନଥିଲା। ବସନ୍ତ ସହରରେ ରହିଲାଣି ଯେତେବେଳେ ଜିନିଷପତ୍ର ବିକିବ ବା କିଏ? ଏହା ବଦଳରେ ରାଘୱା ବସନ୍ତକୁ ସଂପୂର୍ଣ୍ଣଭାବେ ବଶ କରିବା ପାଇଁ ଯୋଜନା କଲା। ଚା ଜଳଖିଆର ବ୍ୟବସ୍ଥା ଯଥାପୂର୍ବ ରହିଲା। ଥରେଅଧେ ସେ ବସନ୍ତ ସହ ସିନେମା ଗଲା। ପ୍ରତ୍ୟେକଥର ଚା ନେଇ ଆସିବା କାମଟି ଶାନ୍ତାର। ଚା ପିଉପିଉ ରାଘୱା ଶାନ୍ତାର ଚା ତିଆରି କରିବା ବିଷୟରେ ତାରିଫ୍ କରେ।

ଦିନେ ସୁଯୋଗ ଦେଖି ରାଘୱା ଶର ସଂଧାନ କଲା। 'ବସନ୍ତ, ଆମ ଶାନ୍ତା ଏବେ ଚାଲାକ ଚତୁର ହେଲାଣି। ତାର ବିବାହ କଥା କଣ କରିବି ଭାବିପାରୁନାହିଁ। ଏବେ ଏବେ ତାକୁ ପିଲାଟିଏ ଦେଖାଇଥିଲି। ପିଲାଟି ଶାନ୍ତାକୁ ପସନ୍ଦ କଲା, ମୋର ମଧ୍ୟ ପିଲାଟି ପସନ୍ଦ; ମାତ୍ର ବିଚିତ୍ର କଥା ଯେ ଶାନ୍ତା ପିଲାଟିକୁ ପସନ୍ଦ କରୁନାହିଁ। ମୋ, ବଡ଼ ଝିଅ ରତ୍ନାକୁ ଦେଖ, ଟିକିଏ ଉଁ ଚୁଁ ନକରି ଆମେ ଯାହାକୁ ପସନ୍ଦ କଲୁଁ ତାକୁ ବାହାହେବା ପାଇଁ ରାଜି ହୋଇଗଲା। ରତ୍ନାକୁ ମୁଁ କହିଥିଲି ଯେ ଶାଶୁଘରେ ତୋତେ କଷ୍ଟ ହେବ, ତୋ ଶାଶୁ ଛୁରୀ ଚଳାଏ, ତୋତେ କଷ୍ଟ ଦେଇପାରେ, ସହିବାକୁ ପଡ଼ିବ। ମାତ୍ର ପିଲା ଆମର ପସନ୍ଦ ହୋଇଛି। ତୋର କ'ଣ ଇଚ୍ଛା? -ଏଇ କଥା ପଚାରି ଥିଲି। ଶୁଣି ସେ କଣ କହିଲା ଜାଣ?.....'ଆପଣ ମୋର ବିବାହ କରୁଛନ୍ତି, ମୁଁ କଣ ପାଇଁ ଚିନ୍ତା କରିବାକୁ ଯିବି?' ଏମିତି ସ୍ପଷ୍ଟ କରି କହିଲା। ସେ'ବିତ ଆମରି ଝିଅ। ତାର ଓ ଯା ମଧ୍ୟରେ ଅତିବେଶୀରେ ପାଞ୍ଚ ଛଅ ବର୍ଷର ବ୍ୟବଧାନ। ମାତ୍ର ଶାନ୍ତା ଏବେ ଚାଲିଥିବା ଦେଶଭକ୍ତି ଆନ୍ଦୋଳନରେ ଆଗୁଆ ହୋଇଛି। କହୁଛି, ମୋର ଖଦି ପିନ୍ଧୁଥିବା ସ୍ୱାମୀ ଦରକାର, ସେମିତି

ସରକାରୀ ଚାକିରିଆ ଦରକାର ନାହିଁ। ହଟ କରୁଛି। ସେ ପିଲାଟିକୁ ସରକାରୀ ଚାକିରିଆ ଦେଖି ମୁଁ ବାଛିଥିଲି। ମାତ୍ର ଝିଅ ଏକାବେଳକେ ମନାକରିଦେଲା। ମୁଁ ତାକୁ ଭୁଲ୍ କହିବି ନାହିଁ। ଗୋଟିଏ ଦୃଷ୍ଟିରେ ରତ୍ନା ଠିକ୍, ଆଉ ଗୋଟିଏ ଦୃଷ୍ଟିରୁ ଶାନ୍ତା ମଧ୍ୟ ଠିକ୍। ସମୟ ଅନୁସାରେ ବିଚାରଧାରା ବଦଳିବାର ଦେଖୁଛି। ଆଜିକାଲି ଯୁଗରେ ଦେଶପ୍ରେମୀର ଆବଶ୍ୟକତା ମଧ୍ୟ ଅଛି। ତୁମେ କଣ କହୁଛ ବସନ୍ତ ?'

'ଆଜ୍ଞା ହଁ? ଆବଶ୍ୟକ ନିଶ୍ଚୟ' -କହି ବସନ୍ତ ତା'ପରଦିନଠାରୁ ଏକ ଗାନ୍ଧିଟୋପି କିଣିବାକୁ ବିଚାର କଲା।

ତୁମକୁ ଏସବୁ ଏଇଥିପାଇଁ କହୁଛି ଯେ ତୁମର ଅନେକ ସାଙ୍ଗସାଥୀ ଅଛନ୍ତି। କେହି ଭଲଘରର ପିଲା, ଯାହାର ଅନ୍ତେବହୁତେ ଜମିଜମା ଥିବ, ଦେଶଭକ୍ତିରେ ବିଶ୍ୱାସ କରୁଥିବ, -ସେମିତି କେହି ପିଲା ତୁମ ନଜରରେ ଥିଲେ କହିବ। ମୁଁ ଜଣକୁ ଅବଶ୍ୟ ଦେଖିରଖିଛି, ବରଟି ଭଲ। ଧନୀ ଚାରିଖଣ୍ଡି ହଳର ଜମି। ସୁନା ଦୋକାନଟିଏ ଅଛି। କିନ୍ତୁ ବରପଣ ବହୁତ ଦବାକୁ ପଡ଼ିବ। ସେ କଥାକୁ ମୁଁ ଡ଼ରନ୍ତି ନାହିଁ। ଯେତେ ଯିଏ ବରପଣ ମାଗିବାବାଲା ହେଉନା କାହିଁକି, ମୋର ବିଶ୍ୱାସ ଆମ ଶାନ୍ତାକୁ ଦେଖିବା ମାତ୍ରେ ହିଁ ସେ ଜିଦ୍ ଛାଡ଼ିଦେବ। ଯା ହଉ, ତାରି ବାହାଘରଟି ହୋଇଗଲେ ଆମର ଚିନ୍ତା ଯିବ। ତେଣୁ ତୁମର ଜଣାଶୁଣାରେ କେହି ସେମିତି ପିଲା ଥିଲେ ମୋତେ ନିଶ୍ଚୟ କହିବ ବାପା! ମୋର ଶିଷ୍ୟ ହୋଇ ଏତକ ସେବା କରିଦେବାଟା ବେଶୀ ବଡ଼ କଥାନାଁ କଣ? ଭଗବାନ ତୁମର ମଙ୍ଗଳ କରିବେ। ତୁମର ମଧ୍ୟ ସହଳ ବିବାହ କରିଦେବେ।' କହି ରାଘପ୍ପା ବଡ଼ପାଟିରେ ହସିଉଠିଲା।

ସପ୍ତାହକ ପରେ ବସନ୍ତ ଗାନ୍ଧିଟୋପି ଲଗାଇ ନେହେରୁ ସାର୍ଟ ପିନ୍ଧିବାକୁ ଲାଗିଲା। ତାକୁ ଦେଖି ବିଶ୍ଣୁବାଈ ଭାବିଲେ ବସନ୍ତ ମଧ୍ୟ ବଡ଼ଭାଇ ଅଚ୍ୟୁତର ବାଟରେ ଚାଲିବାକୁ ବସିଲାଣି। ରାଘପ୍ପା ମନକୁ ମନ ଆନନ୍ଦିତ ହୋଇ କହିଲା, 'ଦେଶାଈ, ତୁମେ ମୋ ମୁଠାର ବାହାରେ ନୁହଁ, ତୁମକୁ ମୁଁ ଥଣ୍ଡା କରିଦେଉଛି!'

# 32. ଗଜେନ୍ଦ୍ର ମୋକ୍ଷ

ଶାଳଗ୍ରାମଙ୍କ ପୂଜା ଦ୍ୱାରା ଘରେ ଯେଉଁ ଶାନ୍ତି ଉତ୍ପନ୍ନ ହୋଇଥିଲା, ତାହା ବେଶୀଦିନ ରହିଲା ନାହିଁ। ଘରେ ପୁଣି କଳି ଆରମ୍ଭ ହୋଇଗଲା। ଗଙ୍ଗୱା ଅନେକ ଦିନଯାଏ ଏକଥା ଖୋଲିକରି ବେଣଙ୍କାଙ୍କୁ କହିନଥିଲା। ଏସବୁ କଥା ସ୍ତରିଏଁ ଜାଣନ୍ତି ଭାବି ସେ ସହି ଯାଉଥିଲା। ବେଣଙ୍କା ବା ତାକୁ କି ସହାନୁଭୂତି ଦେଖାଇ ପାରିବେ? ପୁଣି ସେ ଏହା ମଧ୍ୟ ଜାଣେ ଯେ ନିତି ଗୋଟିଏ ରାଗର ଆଳାପ ଶୁଣି ଶୁଣି ଲୋକ ବିରକ୍ତ ହୋଇପଡ଼େ। କିଏ ଜାଣେ କେବେ ତାର କେଉଁ କଥାରେ ବେଣଙ୍କା ବିରକ୍ତ ହୋଇଉଠିବେ! ତେଣୁ ଗଙ୍ଗୱା ଚୁପ୍ ରହିଥିଲା। ଆଉରି କଥାଏ ହେଲା, ଦେଶାଇଜୀ ମଝିରେ ଥାଇ ଏ ବିବାହ କରାଇ ଦେଇଥିଲେ। ବାରଂବାର ଅଭିଯୋଗ କଲେ ତାଙ୍କ ଉପରେ ଦୋଷାରୋପ କଲାପରି କଥାଟା ହେବ। ତାର ଭୟ ଏକଥାରେ ଦେଶାଇବାବୁ ଯେମିତି ଦୁଃଖ ନପା'ନ୍ତୁ।

ଏଣେ ବେଣଙ୍କା ଜାଣନ୍ତି ସବୁଘରର ଚୂଲି ମାଟିରେ ତିଆରି। ତେଣୁ ଗଙ୍ଗୱା ଘର କଥାରେ କୌତୂହଳ ନଦେଖାଇ ଚୁପ୍ ରହନ୍ତି। କେବେ କେମିତି ପଚାରନ୍ତି 'ଘରେ ସବୁ ଭଲତ ଗଙ୍ଗୱା?' ଗଙ୍ଗୱା ଭାବେ ବେଣଙ୍କା ଦେହପା ଭଲମନ୍ଦ ବିଷୟ ପଚାରୁଛନ୍ତି; ତେଣୁ କହେ, 'ଭଲ .....କାଲି କିଟ୍ଟୀକୁ ଟିକିଏ ଥଣ୍ଡା ଲାଗିଯାଇଛି।' ବେଣଙ୍କା ଜାଣନ୍ତି ଘରେ ଯାହା ଘଟୁଛି ତାକୁ ଗାଇ ବୁଲିବା କେଡ଼େ ହାସ୍ୟାସ୍ପଦ କଥା; ଗଙ୍ଗୱା ଆପଣାର ସୁଖଦୁଃଖ କଥା କହିବସିଲେ, ବେଣଙ୍କାଙ୍କ ନଜରକୁ ନିଜର ସୁଖଦୁଃଖ କଥା ଆସେ। ସେ ଜୀବନ ପ୍ରତି ବିମୁଖ ହୋଇ ପଡ଼ିଥିଲେ। ସେପଟେ ଉପବାସ, ବନବାସ, ଜେଲ ସହୁଥିବା ଅଚ୍ୟୁତ। ଏପଟେ ଭାଗ ଚାହୁଁଥିବା, ତାସ ଖେଳୁଥିବା, ସିନେମାପ୍ରିୟ ବସନ୍ତ। ବେଣଙ୍କା ଯେତେ ଭାବନ୍ତି ସେତେ ଅନୁଭବ କରନ୍ତି ଯେ ବଡ଼ଲୋକଙ୍କୁ ମିଳୁଥିବା ସକଳ ଦୁଃଖ; ତାଙ୍କଠି ଅଛି। ତେଣୁ ଆଜିକାଲି ସେ ଏକ ନୀରବ ବୁଝାମଣାରେ ପହଞ୍ଚିଛନ୍ତି- ଆପଣାର ସୁଖଦୁଃଖ ସ୍ୱାମୀସ୍ତ୍ରୀଙ୍କ ବାହାର ଆଉ କାହାକୁ କହିବେ ନାହିଁ।

ଆଜିକାଲି ଗଙ୍ଗୱା ଆଗକୁ ତାର ସହନ ଶକ୍ତି ବାହାରର ପ୍ରସଙ୍ଗ ଆସିବାକୁ ଲାଗିଲା। ଶାଳଗ୍ରାମଙ୍କ କୃପାରୁ ଯେଉଁ ଗୃହଶାନ୍ତି ସ୍ଥାପିତ ହୋଇଥିଲା, ଦେଶାଇଜୀଙ୍କ ପାଖକୁ ବରପଣ ଟଙ୍କା ମାଗିଆସି କିଟ୍ଟୀ ଅପମାନିତ ହୋଇ ଫେରିବା ପରେ,

ତାହା ତିଷ୍ଠିରହି ପାରିଲା ନାହିଁ। ଦେଶାଇଜୀ ଏତେ ଦୃଢ଼ତା ସହକାରେ ଗଙ୍ଗୱାର ପକ୍ଷ ସମର୍ଥନ କରିଥିବା ସଂବାଦ ବିଣଙ୍କ ମୁହଁରୁ ପାଇ ଗଙ୍ଗୱା ସଂତୋଷ ହେଲା। ମାତ୍ର ସେ ଭାବିନଥିଲା ଯେ କିଚ୍ଚୀ ଯଦି ଦେଶାଇଜୀଙ୍କ ଉପରେ ରାଗିବ ଗଙ୍ଗୱା ଉପରେ ଶୁଝାଇବ। ରାଘପ୍ପା ଓ କିଚ୍ଚୀର କାରସାଦୀ ହେତୁ ନିଜର ଯେଉଁ କ୍ଷତି ହୋଇଥିଲା, ସେ ବିଷୟରେ ଦେଶାଇଜୀ ନିଜ ସ୍ତ୍ରୀକୁ ସୁଦ୍ଧା କହିନଥିଲେ। ବସନ୍ତ ରାଘପ୍ପାକୁ ଜିନିଷପତ୍ର ବିକିବା କଥା ବିଣଙ୍କ ଜାଣି ସୁଦ୍ଧା ଗଙ୍ଗୱାକୁ ସୂଚନା ଦେଇ ନଥିଲେ। କାରଣ ସେ ଭାବୁଥିଲେ ଆମେ ବିବାହ କରାଇ ଦେଇଛୁଁ। ତେଣୁ ଆମକୁହିଁ ଭୋଗିବାକୁ ପଡ଼ିବ। ଗଙ୍ଗୱା ନିଃସଂକୋଚରେ ସବୁଦିନପରି ଦେଶାଇଜୀଙ୍କ ଘରକୁ ଯିବା ଆସିବା କରୁଥାଏ। ଶାଳଗ୍ରାମ ଘଟଣାପରେ ଦଶ ପନ୍ଦର ଦିନ ଯାଏଁ କିଚ୍ଚୀ ମା'ର ଭଲମନ୍ଦ ଖବରଅନ୍ତର ପଚରାଉଚୁରା କରୁଥିଲା। ଏହାଦ୍ୱାରା ରତ୍ନା ଭିତରେ ଭିତରେ ଜଳି ଦହିହୋଇ ଯାଉ ଥିଲା। କେତେଦିନପରେ ବରପଣି କଥାରେ କିଚ୍ଚୀ ଗାଳିଖାଇ ରାଗିଯାଇ ମା'କୁ ହତାଦର କରିବାକୁ ଲାଗିଲା; ଥରେ ଅଧେ ବିବେକ ପାଶୋରି ପାଟିତୁଣ୍ଡ ମଧ କଲା।

ରାଘପ୍ପାର କାରସାଦୀରେ ଦେଶାଇବାବୁଙ୍କର କ୍ଷତି କରିବାରେ ରାଘପ୍ପାକୁ ସହାୟତା କରି କିଚ୍ଚୀ ବ୍ୟକ୍ତିଗତଭାବରେ ସନ୍ତୁଷ୍ଟ ହେଲାନାହିଁ। ସଂସାରର ଏଇରୀତି ଭାବି ସେକାମ ପାଇଁ ସେ ପ୍ରସ୍ତୁତ ହୋଇଥିଲେହେଁ ତାର ଆତ୍ମା ତାକୁ ଦଂଶନ କରୁଥିଲା। ଋଣ ସୁଝା ହୋଇନାହିଁ। ସୁଧରୁ ରିହାତି ମିଳିନାହିଁ। ଦିନେ ଗଙ୍ଗୱା ଠାକୁରଙ୍କ ଆଗରେ ପୋଥି ମେଲାଇ ବସିଛି, ସେତିକିବେଳେ କିଚ୍ଚୀ ବାହାରୁ ଜଳିପୋଡ଼ି ହୋଇ ପହଞ୍ଚି ତା' ଆଗରେ କୋଡ଼ିଏ ଟଙ୍କାର ଖୁଚୁରା ଅଜାଡ଼ିଦେଇ ରାଗରେ ଫାଟି ପଡ଼ିଲା, 'ତୋ'ରି ନାଁରେ ଏ ସୁଧ ଗଣିଚାଲିଛି!'

ଗଙ୍ଗୱା ଦୁଃଖ ପାଇଲା। 'ଏମିତି ମାଇପି ବ୍ୟବହାର ଛାଡ଼। ଏ ତିନି ଚାରି ବର୍ଷରେ ସୁଧ ସାଙ୍ଗକୁ ଶହେ ଦି'ଶହ ଟଙ୍କା ଅସଲରୁ ସୁଝିଦେଇପାରିନଥାନ୍ତୁ? ସେତକ ସୁଝିଦେଇ ଯଦି କହିଥାନ୍ତୁ ଯେ ମା' ମୁଁ ଏତିକି ସୁଝିଲି, ଚାଲ ବାକିତକ ମଧ ' ସୁଝିଦେବା' କହି ମୋତେ ମାଗିଥା'ନ୍ତୁ, ତେବେ ମୁଁ କଣ ନାହିଁ କରିଥାନ୍ତି? ଦରମା ଅଣ୍ଟୁନାହିଁ କହି ବାହୁନୁଛୁ, ମୋ' ପାଖରେ ଏତିକି ସୁଦ୍ଧା ନଥିଲା, ହେଲେ ମୁଁ କଣ ଚଳାଇ ନେଇନାହିଁ? ଆଉ ପାଞ୍ଚ ଲୋକଙ୍କୁ ପଚାର– ଯୁଦ୍ଧ ବେଳେ, ଯେତେବେଳେ ଟଙ୍କାକୁ ସେରେ ଯବ ମିଳୁଥିଲା, ସେତେବେଳେ ମୁଁ ଅଧାପେଟ ଖାଇ ତୋତେ ଖୁଆଇଛି। ତୋତେ ସ୍କୁଲକୁ ପଠାଇବାରେ କିଛି ଊଣା କରିନାହିଁ। ଏବେ ତୁ ଦରମା ପାଉଛୁ, ତେବେବି ତୋତେ ଅଣ୍ଟୁନାହିଁ। ଏବେ ତୋ' ଉପରେ ଏମିତି କି ବୋଝ ଆସି ପଡ଼ିଲା ଯେ ତୁ ଉଠେଇ ପାରୁନାହୁଁ? ସେତ 'ଏକୁଟିଆଟା।'

ଗଙ୍ଗୱାର କଥାରୁ ଦି'ଟା ଲେଖାଏଁ ଅର୍ଥ ବାହାର କରୁଥିବା କିଚ୍ଚୀ ଓ ରତ୍ନାକୁ ଏସବୁ କଥା ବଡ଼ ଖରାପ ଲାଗିଲା। ତହିଁରେ ପୁଣି ଶେଷ ବାକ୍ୟଟି ମରମରେ ଗଳିଗଲା। କିଚ୍ଚୀ ଭାବିଲା ତାକୁ ଦୁଃଖ ଦେବାଲାଗି ମା' ଏପରି କଥା କହିଲା;

ଏଥିରେ ତା'ର ସନ୍ତାନହୀନତା ପ୍ରତି ଇଙ୍ଗିତ ରହିଛି। ତେଣୁ ସେ ମଧ୍ୟ ମା'କୁ ଦୁଃଖଦେଇ କହିଲା, ତୁମ ସଭିଙ୍କ ପେଟ ଭରାଇବାରେ ସବୁ ଉଡ଼ିଯାଉଛି।'

ଗଙ୍ଗୱା ଗର୍ଜି ଉଠିଲା, 'ମୋ ପେଟ ଭରାଇବା କଥା ଛାଡ଼୍। ତୋ ଭାତ ମୋର ଦରକାର ନାହିଁ। ଆଜିଠୁ ତୁ ଚାକିରୀ ଛାଡ଼ିଦେ, ତୋତେ ଆଉ ତୋ ସ୍ତ୍ରୀକୁ ବସାଇକରି ଖୁଆଇବି!'

ଏତିକି କହିବା ପାଇଁ ଗଙ୍ଗୱାକୁ ବଡ଼ କଷ୍ଟ କରିବାକୁ ପଡ଼ିଲା। ତାର କହିବାକୁ ଇଚ୍ଛା ହେଉଥିଲା, 'ମୋ ଲୁଗାପଟା ବାହାରକୁ ଫୋପାଡ଼ି ଦିଅ, ଏ ଘରେ ମୁଁ ରହିବି ନାହିଁ। 'ଗାଣାପୁର' ଚାଲିଯିବି'। କିନ୍ତୁ ସେ ଚେଷ୍ଟା କରି ନିଜକୁ ରୋକିନେଲା। ଯାହାହେଉ ପଛକେ ଏ ଘର ଛାଡ଼ି ନଯିବାର ପ୍ରତିଜ୍ଞା ତାର ମନେପଡ଼ିଗଲା।

ସେଦିନ ଗଙ୍ଗୱା ଖାଇଲା ନାହିଁ। କିଟ୍ଟୀ ରାଗିକରି ଦପ୍ତର ଚାଲିଗଲା। ସଂଜଯାଏଁ ଗଙ୍ଗୱା ଖାଇଲା ନାହିଁ। ସେମିତି ରତ୍ନା ମଧ୍ୟ ଉପାସ ରହିଲା। ତାଙ୍କର କଳିଗୋଳରେ ସାରା ସାଇ ସ୍ତବ୍ଧ ହୋଇଗଲା। ସଞ୍ଜରେ କିଟ୍ଟୀ ଘରକୁ ଫେରି ଦେଖିଲା ମା' ଠାକୁର ଆଗରେ ଚଟାଇ ପାରି ଶୋଇଛି। ସ୍ତ୍ରୀ କହିଲା, 'ସେ ଖାଇନାହାନ୍ତି। ତେଣୁ ମୁଁ ବି ଖାଇନାହିଁ। କାହିଁକି, ମୋତେ କଣ ଉପାସ ରହି ଆସେନାହିଁ?'

ହତବମ୍ଭ କିଟ୍ଟୀ ମା' ପାଖକୁ ଯାଇ କହିଲା, 'ମା', ମୋର ଭୁଲ ହୋଇଯାଇଛି; ପଇସା ଯାଉଥିବାର ଦେଖି ମୋର ମନ ଖରାପ ହେଲା, ସହିପାରିଲି ନାହିଁ।' ବହୁତ ସାନ୍ତ୍ୱନା ଦେଲାପରେ ଗଙ୍ଗୱା ଉଠି ଖାଇଲା।

କ୍ରମେ କିଟ୍ଟୀ ଭୁଲିଗଲା, ମାତ୍ର ରତ୍ନା ଶାଶୁର କଥା ଭୁଲି ପାରିଲା ନାହିଁ। ନିତି ନିତି ଖିଟ୍‌ଖିଟ୍ ଭିତରେ କ୍ରମେ ରତ୍ନାର ଶାଶୁପ୍ରତି ଥିବା ଭୟ ଘୁଞ୍ଚିଯିବାକୁ ଲାଗିଲା। ଶାଶୁପ୍ରତି କଟୁକ୍ତି ବଢ଼ିଗଲା ସେ ଭାବେ, ଏଇ ମୋ ସ୍ୱାମୀଙ୍କୁ ପାଳିପୋଷି ବଡ଼କରିଛନ୍ତି, ତା'ବୋଲି କଣ ମୁଁ ସବୁବେଳେ ଯାଙ୍କୁ ଡରି ରହିଥିବି! ଏତେ ଦୁଃଖ ସହି ଯେଉଁ ଶାଶୁ ତାଙ୍କୁ ପାଳିଥିଲେ, ଆଜି ସେଇ ଶାଶୁ କାହିଁକି ଏମିତି କହୁଛନ୍ତି? —ଯେଉଁଥିରେକି ତାଙ୍କର ଇଜ୍ଜତ ଯାଉଛି। ମୋର ପିଲା ନାହିଁ, ଏଥିରେ ମୋର କ'ଣ ଦୋଷ। ସେଥିପାଇଁ ମଧ୍ୟ ମୋତେ ଗଞ୍ଜଣା ଦେବା ଦରକାର? ଏମିତି ସବୁ ଭାବି ତା'ପରଠୁ ରତ୍ନା ଶାଶୁସହ ଅଧିକ ବିରୋଧ କରିଚାଲିଲା।

ଘରେ କିଟ୍ଟୀର ପକେଟରୁ ପଇସା ଗାୟେବ ହେବାକୁ ଲାଗିଲା। କିଟ୍ଟୀ କାହାକୁ କଣ କହିବ ବୁଝିପାରେନାହିଁ। ପାଖ ପଡ଼ୋଶୀଙ୍କ ସହିତ ରତ୍ନା ବେଶ୍ ଖୋଲାଖୋଲି କଥାବାର୍ତ୍ତା କରେ, ଆଉ ପ୍ରଚାର କରିବାକୁ ଚେଷ୍ଟା କରେ ଯେ ତା'ର ଶାଶୁ କ'ଣ ତୁଟୁକା କରି ତାର ପେଟ ବାନ୍ଧିଦେଇଛି। ପଡ଼ୋଶୀଙ୍କୁ ଏକଥା ଶୁଣିବାକୁ ସୁଖଲାଗେ। ଦି'ପହରେ ରତ୍ନାକୁ ଡାକି ତା ସହିତ ଦି' ପଦ ଭଲ କଥା କହି, ସହାନୁଭୂତି ଦେଖେଇ ତା ପେଟର ଏସବୁ କଥା କାଢ଼ି ନିଅନ୍ତି। କଥାଟି ଗଙ୍ଗୱା କାନରେ ପଡ଼ିବାମାତ୍ରେ ସେ କଟ୍ଟୀକୁ ମଧ୍ୟସ୍ଥ ମାନି ରତ୍ନାକୁ ଆଗରେ ବସାଇ ପଚାରିଲା, କେଉଁ ଓଝା, ନାଁ କେଉଁ ଗୁଣିଆକୁ ଡାକି ମୁଁ କେବେ ତୁଟୁକା କରାଇଥିଲି? ଦିହିଙ୍କ

ଭିତରୁ କେହି ଜଣକୁ ବୁଝାଇବା କିଟ୍ଟୀ ପକ୍ଷରେ ସମ୍ଭବ ହେଲା ନାହିଁ। ରତ୍ନା ନିୟମ କରି କହିଲା ଯେ ସେ ଏପରି କଥା କହିନାହିଁ। ଏବେ ସାକ୍ଷୀର ଆବଶ୍ୟକତା ପଡ଼ିଲା। ଆପଣାର ସାକ୍ଷୀ ଭାବରେ ଗଙ୍ଗୱ୍ୱା କାଶୀମା'କୁ ଡାକି ଆଣିଲା। କାଶୀମା' ଏ ପ୍ରହସନ ଦେଖି ମଜା ପାଇଲା ଓ କାହାରି ପକ୍ଷ ନନେଇ ଅନ୍ୟମାନଙ୍କୁ ଶୁଣାଇବା ପାଇଁ ସେଠାରୁ ଖସିଗଲା। ଆଜିଯାଏଁ ରତ୍ନା ସ୍ୱାମୀର ହୁକୁମରେ କଳି ମେଣ୍ଟାଇଦେବା ଲାଗି ଭୁଲ ହେଉ ବା ନହେଉ 'ଭୁଲ୍ ହୋଇଛି' ବୋଲି କହି ଆସୁଥିଲା। ମାତ୍ର ଆଜି ସେ ଭୁଲ ସ୍ୱୀକାର କରିବାକୁ ସ୍ପଷ୍ଟ ମନାକଲା।

ଦିନେ କିଟ୍ଟୀ ଘରପାଇଁ ଅଢ଼େଇ ସେର ଗୁଡ଼ ଆଣିଥିଲା। ସଞ୍ଜ ଭିତରେ ତହିଁରୁ ବଡ଼ ଖଣ୍ଡିଏ ଗୁଡ଼ ଗାଏବ ହୋଇଗଲା। ବୋହୂ ଯୁକ୍ତିକଲେ ଶାଶୁ ଘରଜିନିଷକୁ ପରକୁ ବିକି ଦେଉଛନ୍ତି, ଶାଶୁ ଯୁକ୍ତି କରେ ବୋହୂ ଥଳିରେ ଜିନିଷ ଲୁଚାଇକରି ନେଇ ବାପଘରେ ଦେଉଛି। ଏମିତି ତର୍କବିତର୍କ ପରେ ରତ୍ନା ସ୍ୱାମୀ କାନରେ ଚୁପ୍‌କରି ନିଜର ସଂଦେହ ବ୍ୟକ୍ତ କଲା— ଶାଶୁଙ୍କର ଚଉତା ହୋଇ ରହିଥିବା କଚାଲୁଗା ଥାକ ତଳେ କଣ ଉଚ୍ଚା ହୋଇ ଦିଶୁଛି। ଉଠାଇ ଦେଖିଲାବେଳକୁ ତା' ତଳେ ବଡ଼ ଖଣ୍ଡିଏ ଗୁଡ଼। ଫେର ବାଦାନୁବାଦ ଆରମ୍ଭ ହୋଇଗଲା। ଗଙ୍ଗୱ୍ୱା କହିଲା, ତାକୁ ବଦନାମ କରିବା ପାଇଁ ଏହା ବୋହୂର କାରସାଦୀ। ଏହା ଶୁଣି ରତ୍ନା କହିଲା, 'ମୁଁ ଧୂଆଲୁଗା ଛୁଇଁବାକୁ ଯିବି କାହିଁକି? ବାଂଝ ବୋଲି କହି ମୋତେ ତ ମୂଳରୁ ଅଛୁଆଁ କରି ରଖିଛ।' ତହୁଁ ଗଙ୍ଗୱ୍ୱା କହିଲା, 'ଛୁଆଁଛୁଇଁର ଏତେ ବାଛ ବିଚାର ଯଦି ଥା'ନ୍ତା ତେବେ ଏତେକଥା ହୁଅନ୍ତା କାହିଁକି?' ତହୁଁ ରତ୍ନା ଚିତ୍କାର କରି କହିଲା 'ଆପଣ ଭାରୀ ଛୁଆଁଛୁଇଁ ମାନନ୍ତି! ରାତିର ଆପଣ ବସି 'ବୁକ୍କରୀ' * ଖାଇଲେ କେମିତି?

ଆପଣାକୁ ଠିକ୍ ପ୍ରମାଣିତ କରିବାପାଇଁ ମିଛ କୁହାଯାଇପାରେ, କିନ୍ତୁ ରତ୍ନାର ଶେଷ କଥାପଦକ ଅସହ୍ୟ। ଏପରି ମିଥ୍ୟା ଆରୋପରେ ଗଙ୍ଗୱ୍ୱା ଅପ୍ରତିଭ ହୋଇପଡ଼ିଲା। ସେ କିଛି ଉତ୍ତର ନଦେଇ ଖାଇବା ବନ୍ଦରଖି ବସିରହିଲା। ପ୍ରଥମେ କିଟ୍ଟୀ ସ୍ତ୍ରୀକୁ ଭୁଲ ସ୍ୱୀକାର କରାଇବାର ପ୍ରୟାସ କଲା; କିନ୍ତୁ ବହୁତ ଜିଦ୍‌କଲେହେଁ ରତ୍ନା ମାନିବାକୁ ପ୍ରସ୍ତୁତ ହେଲାନାହିଁ। କଥାଟି ସତ ଯେତେବେଳେ ମୁଁ ଭୁଲ୍ ମାଗିବି କାହିଁକି? ଏହା କହି ସେ ଅଡ଼ି ବସିଲା। ସ୍ତ୍ରୀର ଜିଦ୍ ପାଖରେ ହାରିଯାଇ ଶେଷରେ କିଟ୍ଟୀ ମା'କୁ ସାନ୍ତ୍ୱନା ଦେବା ପ୍ରୟାସ କଲା। ସେ ତାକୁ ଖାଇବାପାଇଁ ଆଦେଶ ଦେଲା। ସ୍ତ୍ରୀକୁ କହିଲାବେଳକୁ ଅନୁନୟ, ମା' ବେଳକୁ ଆଦେଶ, ଗଙ୍ଗୱ୍ୱା ଭଲା କେମିତି ସହିବ? 'ତୁ ମୋ ଉପରେ ହୁକୁମ ଚଳାଇବାକୁ କିଏ? ଅନେକ ଦିନରୁ ଚୁପ୍‌ଚାପ୍ ସହି ଆସିଛି। ଏବେ ଆଉ ଚୁପ୍ ରହିବିନାହିଁ। ଗୋପଣ୍ଣାକୁ ପଚାରିବି, ଏବେ କଣ କରାଯିବା ଉଚିତ। ଏହା କହି ଦେଶାଇଜୀଙ୍କ ଘରେ ଯାଇ ପହଞ୍ଚିଲା। ସେତେବେଳକୁ ଉପରଓଳି ତିନିଟା ବାଜିଥାଏ।

---

* ବୁକ୍କରୀ – ଯଅ ରୁଟି।

'ତୁମେ ତ ଜାଣ ଗୋପର୍ଣ୍ଣା, ମୁଁ ଆଜି ଯଦି କିଟୀଠୁ ଅଲଗା ହୋଇ ଯାଏଁ, ତେବେ ରାଘବା ତାକୁ ଭାଲୁବନାଇ ନଚେଇବ। ସେଥିପାଇଁ ମୁଁ ଆଜିଯାଏ ମିଶିକରି ଚଳିଆସିଛି। ସେ ଗୋଇଠା ମାରିଲେ ସୁଦ୍ଧା ଘରର ଚୌକାଠକୁ ଜାବୁଡ଼ିଧରି ସେଇଠି ପଡ଼ିରହିଛି। ଏବେ କୁହତ, ମୋର ବଞ୍ଚିରହି ଲାଭ କଣ? ପୁଅକୁ ବଡ଼ କଲି, ବାହାଚୋରା କଲି; ନାତି ନାତୁଣୀ ଦେଖିବାର ଇଚ୍ଛା ଥିଲା... ହେଲେ ଭଗବାନଙ୍କର ଇଚ୍ଛା ନୁହଁ, ସେ କଥା ଯାଉ। ମୁଁ କିନ୍ତୁ କେବେ ଭାବି ନଥିଲି ଯେ ସବୁ ଏମିତି ହୋଇଯିବ। ଗତଥର ଯେମିତି କାଶୀ ନେଇଯାଇଥିଲ, ସେମିତି ଥରେ ବଦ୍ରିନାଥ ଚାଲ ଭାଇ! ଭଗବାନଙ୍କ ଦର୍ଶନ କରିବି, ଗଙ୍ଗାମାତା ସେଇଠି ବହୁଛି, ସେଇଠୁ କୌଣସି ପାହାଡ଼ରୁ ଡେଇଁପଡ଼ି ଏ ସ୍ତ୍ରୀଜନ୍ମରୁ ତ୍ରାହି ପାଇଯିବି। ଏ ଜନ୍ମରେ ଢେର ହେଲା' – ଏତକ କହି ଗଙ୍ଗୁଆ କାନ୍ଦିପକାଇଲା।

ଗଙ୍ଗୁଆର ସଂଦେହ ଥାଏ ଯେ ହୁଏତ କିଟୀ ଏବେ ଦେଶାଇଜୀଙ୍କୁ ମାନୁନାହିଁ। ଦେଶାଇଜୀ ଡାକି ପଠାଇଲେ ଯଦି ସେ ନଆସେ ତେବେ କଣ ତାଙ୍କର ମାନ ରହିବ? ତେଣୁ ସେ ନିଜକୁ ରୋକିନେଲା। ଗତ ଦି' ବର୍ଷର ଅନୁଭୂତି ଓ ଆଜିର ଘଟଣାକୁ ସବିସ୍ତାର ବର୍ଣ୍ଣନା କରି କହିଲା, 'ଏତେ ଦିନ ଧରି ସବୁ ଛପେଇ ରଖିଥିଲି। ଆଜି ସବୁ କହିବାକୁ ମନହେଉଛି, ତେଣୁ ତୁମ ଆଗରେ କହିଦେଲି। ତୁମେ କିଛି ମନରେ ଧରିବନାହିଁ ଭାଇ! ସିଏ ଛଡ଼ା ମୋର ବା ଆଉ ଅଛି କିଏ?....ମୁଁ ଫେରିଯାଉଛି। ଚାହୁଁ ଭୋକରେ ରଖୁ ବା ବନବାସ ଦେଉ, ମୁଁ ଘରେ ହିଁ ମରିବି।'

ଦେଶାଇଜୀ ତାକୁ ଯିବାକୁ ଦେଲେନାହିଁ। କହିଲେ, 'ତୁ ଡରନାହିଁ ଗଙ୍ଗୁଆ। ଏଇଠି ଗାଧୋଇପଡ଼। ଦି'ଗଣ୍ଡା ଡାଲିଚାଉଳ ଫୁଟେଇ ନେ । ମୁଁ ଏମିତି ବ୍ୟବସ୍ଥା କରିଦେବି ଯେ କାଲି ତୋ' ପୁଅବୋହୂ ଆସି ଗୋଡ଼ ଧରି ତୋତେ ଘରକୁ ନେବେ।'

ଗଙ୍ଗୁଆ ମନରେ ସଂଦେହ, ଆଜି ଏଠି ରହିଯିବି, କାଲି ଯେ ପୁଅ ଆସି ନେଇଯିବ ଏଥିରେ କିବା ଭରସା ଅଛି! କାଲି ଯଦି ନ ଆସେ ତେବେ ନିଜେନିଜେ ଘରକୁ ଫେରିବାଟା ଅଧିକ ବେଇଜ୍ଜତି କଥା ହେବ। ତେଣୁ ସେ କହିଲା 'ଥାଉ ଭାଇ, ସ୍ତ୍ରୀ ଜନ୍ମ ପାଇଛି, ଭୋଗିବାକୁ ହବ।'

ଦେଶାଇଜୀ ତାକୁ ଯିବାକୁ ନଦେଇ ଆଦର କରି ଅଟକାଇଲେ। ସଞ୍ଜକୁ ବସନ୍ତ ହାତରେ ରାଘବା ପାଖକୁ ଖବର ପଠାଇଲେ, ଗଙ୍ଗୁଆ ଆମ ଘରେ ଅଛି। କାଲି ସକାଳୁ ପୁଅ ବୋହୂ ଆସି ତାକୁ ଘରକୁ ଡାକି ନେଇଯାନ୍ତୁ!'

ଦେଶାଇଜୀଙ୍କ ନିଶାଣ ଠିକ୍ ବାଜିଲା। ପରଦିନ ପୁଅବୋହୂ ଦିହେଁ ଆସି ମା'କୁ କ୍ଷମା ମାଗିଲେ।

ଗଙ୍ଗୁଆ ଏ ରହସ୍ୟ ବୁଝି ପାରିଲା ନାହିଁ। ବୋହୂ ତା ପାଦତଳେ ପଡୁଛି ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା। ଦେଶାଇଜୀ ହସିକରି କହିଲେ, 'ଏବେ ରାଗରୋଷ

ଭୁଲିଯାଅ। ଚା ପିଇଚ ନାଁ ନାହିଁ? ଏବେ ସଭିଏଁ ହସ। କାହିଁକି ନାଁ ମୁଁ ତୁମମାନଙ୍କୁ ଏକ ଖୁସିର ଖବର ଦଉଛି।'

ତା'ପରେ ହସିକରି ପଚାରିଲେ 'କୃଷ୍ଣ, ଏଠାକୁ ଆସି ମା'କୁ ନେଇଯିବାଲାଗି ମାମୁଁ ତୁମକୁ ଅନେକ ବଳେଇ କରି କହିଲେ?'

କିଟ୍ଟୀ ହତଚକିତ ହୋଇ ହଁ, ନାହିଁ କିଛି କହିପାରିଲା ନାହିଁ। ଦେଶାଇ ବଡ଼ ପାଟିରେ ହସି କହିଲେ, 'ଏବେ ଆଉ ମାମୁଁଙ୍କୁ ତୁମର ସଲାମ ବଜାଇବା ଦରକାର ନାହିଁ। ଏବେ ତୁମେ ଖାଲି ତାଙ୍କ ଜୋଇଁ। ଏବେ ରାଘପ୍ପା ପୋଷ୍ୟ କଥା ଭାବୁନାହିଁ, ଏବେ ତାକୁ ଖୋସାମଦ୍ କରିବା କଣ ଦରକାର?'

ଗଙ୍ଗପ୍ପା ଓ ରତ୍ନା ମୁହଁରୁ ଏକାବେଳକେ ବାହାରିପଡ଼ିଲା, 'କଣ କହିଲ?' ଦେଶାଇଜୀ ନୀରବରେ ହସିବାକୁ ଲାଗିଲେ।

ଗଙ୍ଗପ୍ପା ପଚାରିଲା 'ଥଟ୍ଟା କରୁଛ ନାଁ କଣ?'

ଦେଶାଇଜୀ କହିଲେ 'ମୁଁ କାହିଁକି ଥଟ୍ଟା କରିବି? ପନ୍ଦର କୋଡ଼ିଏ ଦିନ ତଳେ ରାଘପ୍ପା ଆସି କହିଯାଇଛି।'

'ତେବେ କାହାକୁ ପୋଷ୍ୟ କରୁଛି?' ଗଙ୍ଗପ୍ପା ପଚାରିଲା। ପୋଷ୍ୟନେବା କଥାରେ ରାଘପ୍ପାର ବିଶ୍ୱାସ ତୁଟିଯାଇଛି।' ସେ ଆଉରି ବୁଲେଇ ବଙ୍କେଇ ଅବଶେଷରେ କହିଲେ, 'ନିଜର ପୁଅ ହେବାକୁ ଯାଉଛି ଯେତେବେଳେ ସେତେବେଳେ ପୋଷ୍ୟର ବା କଣ ଦରକାର? ଏଇ କଥା ରାଘପ୍ପା କହୁଛି।' ଏତିକିବେଳେ ବିଣୁବାଈ କବାଟ ପଛରୁ କହିଲେ, 'ଚମ୍ପାବାଈର ତିନି ପୂରି ଚାରିମାସ ଚାଲୁଛି।'

ରତ୍ନାର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ। ସେ ଭାବିଲା ଏଇ ତିନିଚାରି ମାସ ଭିତରେ ସପ୍ତାହକୁ ଦି' ତିନିଥର କରି ସେ ବାପ ଘରକୁ ଯାଇଛି, କେହି ଏକଥା ଉଠାଇ ନାହିଁ। ଶାନ୍ତା ମଧ୍ୟ ଜାଣେନାହିଁ ନାଁ କଣ?

ଶାରୀରିକ ଦୁର୍ବଳତା ହେତୁ ଗର୍ଭବତୀ ହେଲାପରେ ଚମ୍ପାଠାରେ କୌଣସି ପରିବର୍ତ୍ତନ ଦେଖାଯାଉନଥାଏ। ଶାନ୍ତା ଜାଣିଥିଲା। ମାତ୍ର ରତ୍ନା ମନରେ ଦୁଃଖ ହେବ ଭାବି ଏକଥା ରତ୍ନାକୁ ନକହିବା ପାଇଁ ଚମ୍ପା ଶାନ୍ତାକୁ ବାରଣ କରିଥିଲା। ତେଣୁ ଶାନ୍ତା ମଧ୍ୟ କିଛି କହିନଥିଲା।

ସେଥିପାଇଁ ଏହା କଳ୍ପନା କରିବା ମଧ୍ୟ କଠିନ ଥିଲା ଯେ ଦୈବ ତାଙ୍କ ସହିତ ଏପରି ଧୋକା ଦେବ। ଏ ବୟସରେ ରାଘପ୍ପାର ପିଲାହେବା ଏକ ଅସମ୍ଭବ କଳ୍ପନା। ଅସମ୍ଭବ କାହିଁକି, ହାସ୍ୟାସ୍ପଦ ମଧ୍ୟ। ମାତ୍ର ଏବେ ରତ୍ନାର ସାମାଜିକ ଓ ଆର୍ଥିକ ମୂଲ୍ୟ ଏକାବେଳକେ କମିଗଲା। ମନେମନେ କହିଲା 'ଠାକୁର ରକ୍ଷାକର!' ସେଇ ଗର୍ଭ ଯଦି ଭଗବାନ ତାକୁ ଦେଇଥନ୍ତେ! ଏହା ଭାବି ତା' ମନରେ ଦହନ ଆରମ୍ଭ ହେଲା। ଏଇ ବାତୁଳ ଦହନ ହେତୁ ତାର ନିଜ ଉପରେ ରାଗ ଆସିଲା।

କିଟ୍ଟୀ ଅଧେ ଜଳିଗଲା, ଅଧେ ହସି ଉଠିଲା। ପୋଷ୍ୟନେବା କଥାକୁ ସେ କେବେ ଗୁରୁତ୍ୱ ଦେଇ ନଥିଲା, ସେ ତ ଝିଅଠି ମୁଗ୍ଧ ହୋଇଯାଇଥିଲା। ମାତ୍ର

ସ୍ତ୍ରୀ ତରଫରୁ ଯେଉଁ ସମ୍ପତ୍ତି ମିଳିବାର ଥିଲା ଓ ସେଥିପାଇଁ ସେ ସ୍ତ୍ରୀ ଉପରେ ଯେଉଁ ଅଧିକା ଫୁଲ ଚଢ଼ାଉଥିଲା ତାହା ଏବେ ନିଜେ ନିଜେ ଖସି ପଡ଼ିଲା। 'ରସିକରାଘବ୍ବା'ର କଥା ଶୁଣି ହସ ଲାଗିଲା।

ଗଙ୍ଗୱା ବାସ୍ତବରେ ଦୁଃଖିତା ହେଲା, ମାତ୍ର ଏମିତି ମୁଖରୋଚକ ପ୍ରସଙ୍ଗ ମଝିରେ ସେ କଟୂକଥା ରହୁଛି ବା କେତେକେ? ବାହ୍ୟ ରୂପରେ ଆନନ୍ଦଦାୟକ ହେଲେହେଁ ଆନ୍ତରିକ ଭାବରେ ଚିନ୍ତାଜନକ ଏଇ ହାସ୍ୟାସ୍ପଦ ବିଷୟ ଶୁଣି ଛୋଟ ପରିବାରଟି ପ୍ରସନ୍ନ ହୋଇ ଘରକୁ ଲେଉଟି ଗଲା।

ପରଦିନ ରତ୍ନା ପୁଣି ବାପଘରକୁ ଗଲା।

ଏବେ କେଉଁକଥାରେ ସେ କଳି ଆରମ୍ଭ କରିବ?

କେହି ତାକୁ ଏକଥା କହିନଥିଲେ। ତାହାହିଁ ତାର ଦୁଃଖର କାରଣ। ମୁଖ୍ୟ କଥା ହେଉଛି ଏଇଆ। ଏଇ ଛୋଟ କଥାକୁ ନେଇ ସେ ଯଦି ଗାଳି କରିବ ତେବେ ବୁଝିବା ଲୋକେ ବୁଝିପାରିବେ ଯେ ତା' ପଛରେ ଅନ୍ୟ କୌଣସି କଥା ରହିଛି ଯାହାକୁ ସେ ସିଧାସଳଖ କହିବାକୁ ଚାହୁଁନାହିଁ।

ଗୋଡ଼ କଚାଡ଼ି କଚାଡ଼ି ଆସି ପହଞ୍ଚି ସେ ସଭିଙ୍କ ଉପରେ ବର୍ଷିଲା— 'କଥାଟା ମୋତେ କହିବା ଉଚିତ ନଥିଲା? କହିଥିଲେ ମୁଁ ଛଡ଼ାଇ ନେଇଥାନ୍ତି ନାଁ କଣ? ନିଜ ଘରକଥା ମୋତେ ପରମୁହଁରୁ ଜାଣିବାକୁ ପଡ଼ିଲା। ମୁଁ ଘରର ଜଣେ ନୁହେଁ...? ବାପା ମା' ମୋତେ ପର କରିଦେଇଛନ୍ତି ତା' ହେଲେ? ମୋତେ ପିଣ୍ଡ ଦେବାକୁ ଦେବନାହିଁ ବୋଲି ବାହା କରାଇଦେଇଥିଲ? ଭଉଣୀ ମଧ୍ୟ ମୋତେ ଧୋକା ଦେଉଛି। ଶାଶୁଘରେ ଦୁଃଖ ସହିଲାବେଳେ ବାପ ଘରର ଟାଣ ଥିଲା! ଆମେ କଣ ବାପଘର ସଂପତ୍ତି ଆଶାରେ ପଡ଼ିରହିଛୁଁ? ପୁଅ ହେଲେ ଭାଇ ହୋଇଛି ବୋଲି ମୁଁ କଣ ଖୁସି ହେବିନାହିଁ? ସେତେବେଳେ ମୋର କଣ ମିଠାଇ ବାଣ୍ଟିବାର ଅଧିକାର ନାହିଁ? ପ୍ରତ୍ୟେକ ପ୍ରଶ୍ନ ସହିତ ତାର ସ୍ୱର ଉଚ୍ଚତର ହେବାକୁ ଲାଗିଲା। ତାର ଅବସ୍ଥା ଦେଖି ରାଘବ୍ବା ମଧ୍ୟ ତାକୁ ସାନ୍ତ୍ୱନା ଦେଇପାରିଲାନାହିଁ। ଏଇପରି ପାଟିତୁଣ୍ଡ କରି କାନ୍ଦିକାଟି ଚା'ପ୍ଲେଟକୁ ଗଡ଼ାଇଦେଇ, 'ଏଘରେ ମୁଁ ଆଉ କେବେ ପାଦ ରଖିବିନାହିଁ। ଝିଅ ଯଦିବି ହୁଏ ତେବେ ସୁଦ୍ଧା ମୋ ସ୍ୱାମୀକୁ ଯେପରି ପୋଷ୍ୟ ନିଆ ନଯାଏ। ଯଦି ନିଆଯାଏ ତେବେ ମୋତେ କାଟି ଖାଇଲାପରି କଥା ହେବ'— ଏଇ ନିୟମ ଦେଇ ସେ ସେଠାରୁ ବାହାରି ଘରେ ପହଞ୍ଚିଲା।

ସେଇଦିନରୁ କିଟ୍ଟୀ ଘରେ କଳିର ମୂଳପୋଛ ହୋଇଗଲା ଏପରି କହିହେବ ନାହିଁ; ମାତ୍ର ରତ୍ନା ନିଜର ବାପଘରର ଅହଂକାର ସ୍ୱେଚ୍ଛାରେ ଛାଡ଼ିଦେଇଥିବା ହେତୁ ତା'ଠାରେ ଶଶୁର ଘରର ଅଭିମାନ ଜାଗରିତ ହେଲା। ସ୍ୱାମୀଛଡ଼ା ମୋର ଆଉ କେହି ନାହିଁ। ସ୍ୱାମୀ ଉପରେ ବିଶ୍ୱାସ ରଖିବା ଉଚିତ। ମା' ବାପା ନିଜର ହୋଇ ରହନ୍ତି ନାହିଁ, ଏକଥା ତା' ମନରେ ଦୃଢ଼ ହୋଇଗଲା। ଭଗବାନଦତ୍ତ ଏକ ଅନିବାର୍ଯ୍ୟ ଅଂଶଭାବରେ ସେ ଗଙ୍ଗୱାକୁ ମଧ୍ୟ ସ୍ୱୀକାର କରିନେଲା।

# 33. ଅଚ୍ୟୁତର ଦ୍ୱିତୀୟ ପତ୍ର

ଅଚ୍ୟୁତର ଦ୍ୱିତୀୟ ପତ୍ର ଆସିବାକୁ ମାସେ ଲାଗିଲା, କାହିଁକିନା ଭେଙ୍କଟଠାରୁ କଥା ବାହାରକରିବା ଅସାଧ୍ୟ କଥା। ପନ୍ଦର ଦିନ, ମାସେ ମଧ୍ୟରେ ଅଚ୍ୟୁତ ଅସାଧ୍ୟକୁ ସାଧ୍ୟ କରିଦେଲା। ଅନାସକ୍ତ ପରି ଦେଖାଗଲେ ସୁଦ୍ଧା ଭେଙ୍କଟ ଭାରି ସଂଦେହୀ ଓ ଏକଜିଦିଆ। ଗୋଟିଏ ଦୃଷ୍ଟିରୁ ଟିକିଏ ସଂକୀର୍ଣ୍ଣମନା ମଧ୍ୟ। ଅଚ୍ୟୁତ ଯଦି ତାକୁ କେବେ ଲମ୍ବା ପ୍ରଶ୍ନ ପଚାରେ ତେବେ, 'ମୋତେ ଏମିତି ଚିଡ଼ାଅ ନାହିଁ, ଚିଡ଼ାଅ ନାହିଁ, ଚିଡ଼ାଅନାହିଁ'କହେ, ନହେଲେ କେବେକେବେ ପାଟିକରେ। ହାତହଲାଇ 'ଇଏ ମିଛ, ମିଛ' ବୋଲି କହେ। କେବେବା 'କାହିଁକି ଦେଶାଇଜୀ, ଦେଶାଇଜୀ ପରି କାରବାର କରୁଛ' କହି ଚିଡ଼ିଯାଏ। ମାତ୍ର ଅଚ୍ୟୁତ ତା ପିଛା ଛାଡ଼ିଲା ନାହିଁ। ସେ ତାକୁ ଏହା କହି ଫୁସୁଲାଇଲା ଯେ 'ମୋ ବାପା ତୁମକୁ ତୁମର ଭାଗ ଦିଆଇଦେବେ।' କେବେ କେବେ ତାକୁ ଖୁସିକରି ଧୀରେଧୀରେ ତା'ଠୁ ଅଳ୍ପ ଅଳ୍ପ କରି କଥା କାଢ଼ିଲା। ଯାହା ଶୁଣେ ତାକୁ ଲେଖିପକାଏ। ମାସେପରେ ଯାହା ବିବରଣୀ ମିଳିଲା ସେ ସବୁକୁ କ୍ରମାନୁସାରେ ସଜାଡ଼ି ଲେଖି ଦେଶାଇଜୀଙ୍କୁ ଚିଠି ଦେଲା।

'କ୍ଷେମ' ଶ୍ରୀ ବନ୍ଦେ

ପୂଜ୍ୟ ପିତାଙ୍କର ଚରଣାରବିନ୍ଦରେ ଚିରଞ୍ଜୀବ ଅଚ୍ୟୁତ ରାଓର ସାଷ୍ଟାଙ୍ଗ ପ୍ରଣାମ। ଆପଣଙ୍କର ଚିଠି ପାଇଛି। ଚିଠିରୁ ଶ୍ରୀ ଭେଙ୍କଟ ରାଓର 'ଧୋରୁଘଡୀ' ମାମଲାରେ ପଡ଼ିଯାଇଥିବା କଥା ଜାଣିଲି। ସେଇକଥାରୁ ଫାଇଦା ଉଠାଇ ମୁଁ ତାକୁ ଡରାଇ ଦେଲି, 'ତୁମେ ଜାଲ ଦସ୍ତଖତ କରିଥିଲ ନାଁ ?' ସେ ବଡ଼ ସଚ୍ଚୋଟ ଲୋକ, ଭଗବାନ ଓ ବାପା ମା'ର ରାଣ ଦେଇ କହିଲା ଯେ ସେ ଏପରି କରିନାହିଁ। ତା'ଠାରୁ ବିଭିନ୍ନ ସମୟରେ ପାଇଥିବା ବିଭିନ୍ନ ବିବରଣୀ ତଳେ ଲେଖୁଛି। ଏ ବିବରଣୀ ଅପୂର୍ଣ୍ଣ। ମୋର ଅନୁମାନ ଯେ ସେଥିରୁ ଅନେକ କଥା ଏଇପରି ହୋଇଥିବ।

ପନ୍ଦର କୋଡ଼ିଏ ବର୍ଷ ପୂର୍ବେ ଭେଙ୍କଟ ରାଓ ପୁନାରେ ଶେଠ୍ ତଖତଲାଲ ନାମକ ବ୍ୟବସାୟୀ ପାଖରେ ଚାକିରୀ କରିଥିଲା। ତାଙ୍କ ଘରେ ଥିବା ଚାକର ବାକରଙ୍କ ମଧ୍ୟରେ ଭେଙ୍କଟ ରାଓ ଥିଲା ଏକମାତ୍ର ଦକ୍ଷିଣୀ ବ୍ରାହ୍ମଣ। ତେଣୁ ତା' ଉପରେ ଶେଠ୍‌ର ଭାରୀ ବିଶ୍ୱାସ ଥାଏ। ସେ ଭେଙ୍କଟକୁ ନିଜ ଘରର ପଛପଟେ ବଖୁରିଏ ଘର ଦେଇଥାଏ ରହିବା ପାଇଁ। ଆପଣ ଦେଖିଥିବେ ଭେଙ୍କଟ ରାଓ

ପାଗଳପରି ହେଲେହେଁ ଭାରୀ ସଚ୍ଚୋଟ୍। ସମୟ ପଡ଼ିଲେ ସେ ଭାରୀ ଚାଲାକ ମଧ୍ୟ ବନିଯାଇପାରେ। ସେ ଶେଠ୍ଙ୍କ ଘରେ ପୂଜାପାଠ କରୁଥାଏ। ଶ୍ରାଦ୍ଧଶାନ୍ତି ମଧ୍ୟ ସମ୍ଭାଳେ। ତାର ସ୍ୱଭାବ ଦେଖି ଶେଠାଣୀ ତାକୁ ଭଗବାନଙ୍କର ଅବତାର ବୋଲି ମାନୁଥିଲା। ଭେଙ୍କଟକୁ ଭଲକରି ଖୁଆଇ ସେ ଖୁସି ହେଉଥିଲେ। କ୍ରମେ ବିଶ୍ୱାସ ବସିଯିବାରୁ ଶେଠ୍ ତାକୁ ବେଙ୍କ୍‌କୁ ଟଙ୍କା ନେଇ ଯିବା ଓ ଚେକ୍ ଭଙ୍ଗାଇବା କାମଟି ସଂପି ଦେଲେ। ସେଥିପାଇଁ ସେ ହାତୀଆଖିଆ ସହ ରୁକ୍ଷ ମରାଠୀ ବିଚିତ୍ର ହିନ୍ଦୀ କହି ଟଙ୍କା ଦେଉଥିବା ବିକ୍ଷିପ୍ତ ବ୍ୟକ୍ତିତ୍ୱସଂପନ୍ନ ବେଙ୍କ୍‌ର ଲୋକମାନଙ୍କ ମଧ୍ୟରେ ଭାରୀ ପରିଚିତ ହୋଇଗଲା। ସେ କହୁଥିଲା, ସେ ଯେତେବେଳେ କିଛି କାମରେ ବେଙ୍କ୍‌କୁ ଯାଏ ସେଠାରେ କ୍ଲାର୍କମାନେ ତାକୁ ପରିହାସ କରି କହନ୍ତି 'ଆଚ୍ଛା, ଆଜି ଶେଠାଣୀ କଣ ଖୁଆଇଲା ? କଚୁରୀ ନାଁ ଲଡୁ ?' ଜବାବରେ ସେ ଏଇକଥା କହୁଥିଲା ଯେ 'ଖାଇଲି ମୁଁ, ତୁମ ପେଟରେ ବଥା କାହିଁକି ?'

ଦିନେ ଚେକ୍ ଭଙ୍ଗାଇବା ପାଇଁ ଭେଙ୍କଟ ଧାଡ଼ିରେ ଠିଆହୋଇଛି। ଏତିକିବେଳେ ଶେଠ୍ଙ୍କର ଡ୍ରାଇଭର (ନାମ ତାଜିମୁଦ୍ଦିନ) ଜୋରରେ ମଟର ଚଳାଇ ଆସି ବେଙ୍କ୍ ଆଗରେ ଅଟକିଲା। ଭେଙ୍କଟ ରାଓକୁ ଡାକି ଦି' ହଜାର ଟଙ୍କାର ଚେକ୍‌ଟିଏ ଦେଇ କହିଲା 'ଶେଠ୍‌ଜୀ ମଟରର ପୁରୁଣା ପାର୍ଟ ବଦଳାଇବା ପାଇଁ ଏଟଙ୍କା ମୋତେ ଦେଇଛନ୍ତି। ଆଜି ମୋର ଟଙ୍କା ଦରକାର। ମାତ୍ର ଏ ଚେକ୍‌କୁ ଭଙ୍ଗାଇବା ପାଇଁ ମୋର ସମୟ ନାହିଁ। ଭଙ୍ଗେଇବାକୁ ହେଲେ ମୋତେ ଧାଡ଼ିର ଶେଷରେ ଠିଆ ହେବାକୁ ପଡ଼ିବ। ତୁମେତ ନମ୍ବର ଲଗେଇ ସାରିଛ, ଯାକୁ ଭଙ୍ଗେଇକରି ମୋତେ ଦେଇଦିଅ। ସେ ଚେକ୍‌କୁ ନେଇ ଭେଙ୍କଟରାଓ ପୁଣି ଧାଡ଼ିରେ ଠିଆ ହୋଇଗଲା।

ସେତେବେଳେ ତା' ଆଗର ଲୋକଟି କୌଣସି ବିଷୟନେଇ ବେଙ୍କ୍‌ର କ୍ଲାର୍କ ସହିତ ତର୍କ କରୁଥାଏ। ଭେଙ୍କଟ ରାଓର ପାଳି ଆସିଯାଇଥିଲେ ମଧ୍ୟ ତାକୁ ଚୁପ୍‌ଚାପ୍ ଠିଆହୋଇରହିବାକୁ ପଡ଼ିଲା। ଏଣେ ତାଜିମୁଦ୍ଦିନର ଡେରି ହୋଇଯାଉଛି; ସେ ମୋଟରରୁ ବାହାରି ତା' କାନରେ ଚୁପ୍‌ଚୁପ୍ କହିଲା, 'ତୁମେ ଚେକ୍ ଭଙ୍ଗାଇସାରି ଏଇଠି ଠିଆହୋଇଥିବ, ମୁଁ ଶେଠଜୀଙ୍କୁ ଦୋକାନରେ ପହଞ୍ଚାଇଦେଇ ପନ୍ଦର କୋଡ଼ିଏ ମିନିଟ ଭିତରେ ଆସିବି।' ଏତିକି କହି ସେ ଚାଲିଗଲା।

ବିନା ହରକତରେ ଭେଙ୍କଟ ରାଓକୁ ପଇସା ମିଳିଗଲା। ବୋଧହୁଏ ଆଗ ଲୋକଟି ସହ କଳି ହୋଇଥିବାରୁ ଉତ୍ତେଜନାବଶତଃ ବେଙ୍କ୍‌ର କିରାଣୀଟି ଏଇ ପରିଚିତ ଲୋକଟିର ଚେକ୍‌କୁ ଯାଞ୍ଚ ନ କରି ମଞ୍ଜୁର କରିଦେଇଥିବ। ତିନିଚାରି ମିନିଟପରେ ଅପର ଝରକାରୁ ଭେଙ୍କଟ ରାଓକୁ ଦି'ହଜାର ଟଙ୍କା ମିଳିଗଲା। ସେ ଆଣି ଆସିଥିବା ଅପର ଚେକ୍‌ଟି ଶେଠଙ୍କ ନାମରେ ଜମା ହୋଇଗଲା। ଟଙ୍କା ନେଇ ଭେଙ୍କଟ ରାଓ ତାଜିମୁଦ୍ଦିନର ବାଟ ଚାହିଁ ବେଙ୍କ୍ ପାହାଚ ଉପରେ ବସି ରହିଲା। ଘଣ୍ଟାଟିଏ ଅପେକ୍ଷା କଲେ ସୁଦ୍ଧା ତାଜିମୁଦ୍ଦିନର ପତ୍ତା ନାହିଁ। ତାକୁ ଡର ଲାଗିଲା। କେହି ଯଦି ଦି' ଥାପଡ଼ ମାରିଦେଇ ତା'ଠୁ ପଇସା ଛଡ଼ାଇ ନିଏ ତେବେ...? ସେଥିପାଇଁ

ଆଉ ଅଧିକ ଅପେକ୍ଷା ନକରି ସେ ଘରକୁ ଚାଲିଗଲା। ଟ୍ରଙ୍କରେ ଟଙ୍କା ରଖି ତା' ଉପରେ ନଜର ରଖିବା ପାଇଁ ନିଜର ଭାଇ ରାଘପ୍ପାକୁ କହିଲା। ସେତେବେଳେ ଆଉ କେଉଁଠି ଚାକିରୀ ନମିଳିବାରୁ ରାଘପ୍ପା ଚାକିରୀ ସଂଧାନରେ ପୂନା ଆସିଥାଏ। ତାକୁ ଟ୍ରଙ୍କ ଛାଡ଼ି କୁଆଡ଼େ ଯିବନି କହି ଭେଙ୍କଟ ରାଓ କାମକୁ ବାହାରିଗଲା।

ଶେଠ୍‌ର ବଡ଼ପୁଅ ବାବୁଭାଇ ଭେଙ୍କଟ ରାଓକୁ ଦେଖିବା ମାତ୍ରେ ତାକୁ ନିଜର ଶୋଇବା ଘରକୁ ଆସିବା ପାଇଁ ଇଶାରା କଲା। ଅନେକ ଦିନରୁ ସେ ତାର ଲଫଙ୍ଗାଗିରି ପାଇଁ ପ୍ରସିଦ୍ଧ। ଘରେ ପହଞ୍ଚିଲା ମାତ୍ରେ ସେ ଭେଙ୍କଟ ରାଓକୁ ପଚାରିଲା 'ତାଜିମୁଦ୍ଦିନ ତୁମକୁ ଦେଖା କରିଥିଲା ?' ଭେଙ୍କଟ ରାଓର ସନ୍ଦେହ ହେଲା। ସେ ହଁ ଭରିଲା। ବାବୁଭାଇ ଫେର ପଚାରିଲା 'ଚେକ୍ ଦେଇଥିଲା ?' ତହିଁରେ ମଧ୍ୟ ଭେଙ୍କଟ ରାଓ 'ଜୀ ହଁ' ବୋଲି କହିଲା। ଚେକ୍ ଭଙ୍ଗାଇ ତାଜିମୁଦ୍ଦିନକୁ ଟଙ୍କା ଦେଇଦେଇଛ କି ? ବୋଲି ବାବୁଭାଇ ପଚାରିବାରୁ ଭେଙ୍କଟ ନିରୁପାୟ ହୋଇ ମିଛରେ 'ହଁ' କହିଦେଲା। ମିଛ କହିବାଟା ଭେଙ୍କଟ ରାଓ ପକ୍ଷରେ ବିଛାକାମୁଡ଼ା ପରି, କିନ୍ତୁ ସେ ସତ କହିଥିଲେ ବାବୁଭାଇ ତାକୁ ଛାଡ଼ି ନଥାନ୍ତା। ସେ ତାର ଜାମାପଟା ଟାଣି ଟଙ୍କା ପାଇଁ ତା ପଛରେ ଲାଗିଥାନ୍ତା। ତାଜିମୁଦ୍ଦିନ ପାଖରେ ସଚ୍ଚୋଟପଣିଆ ବଜାୟ ରଖିବା ପାଇଁ ସେ ମିଛ କହିଲା। ଭେଙ୍କଟ ରାଓଠାରେ ଏପରି ଅନେକ ଚତୁରତା ଥିଲା। ସେ ଆପଣାର ସିଦ୍ଧାନ୍ତରୁ ଟଳିବା ଲୋକ ନୁହଁ। ଏହାପରେ ବାବୁଭାଇ ତାକୁ ଛାଡ଼ିଦେଲା।

ସେଦିନସାରା ତାଜିମୁଦ୍ଦିନ ଆସିଲା ନାହିଁ। ଦ୍ୱିତୀୟ ଦିନ ସକାଳେ ଭେଙ୍କଟ ରାଓ ଶେଠ୍ ଘରେ ପୂଜାକରିବସିଛି, ସେତିକିବେଳେ ରାଘପ୍ପା ଆସି କହିଲା ତାଜିମୁଦ୍ଦିନ ଆସିଛି। ଏବେ ଟଙ୍କା ମାଗୁଛି। ଗାଧୋଇ ପାଧୋଇ ପୂଜାରେ ବସିଥିବା ଭେଙ୍କଟ ରାଓ ପକ୍ଷରେ ସେତେବେଳେ ଉଠି ଟ୍ରଙ୍କ ଛୁଇଁବା ସମ୍ଭବ ନଥିଲା। ସେ ନିଜର ପଇତାରୁ ଚାବି ବାହାର କରି ରାଘପ୍ପାକୁ ଦେଇଦେଲା।

ରାଘପ୍ପାଠାରୁ ପଇସାନେଇ ତାଜିମୁଦ୍ଦିନ ଯେ ଗଲା, ଆଉ କେବେ ଫେରିଲାନାହିଁ।

ପରବର୍ତ୍ତୀ ଦଶବାର ଦିନ ମଧ୍ୟରେ ସମ୍ଭବତଃ ହିସାବକିତାବରେ ଫରକ ହୋଇଥିବାରୁ ଶେଠ୍ ସନ୍ଦେହ କରି ପୋଲିସରେ ରିପୋର୍ଟ କରିଥିବେ। ବାର ଚଉଦ ଦିନ ପରେ ପୋଲିସ ଭେଙ୍କଟକୁ ହାତକଡ଼ି ପକାଇ ନେଇଗଲା। ସେଥିରେ ପାପର ଭାଗୀ ତାଜିମୁଦ୍ଦିନ ବା ଆଉ କିଏ କହି ହେଉନାହିଁ। ଚେକ୍ ଭଙ୍ଗାଇଥିବା ହେତୁ ଭେଙ୍କଟ ରାଓ ଉପରକୁ ବିପଦ ଆସିଲା।

ଏଣେ ଚାକିରୀ ନମିଳିବା ହେତୁ ରାଘପ୍ପା ଫେରିଆସିଲା। ହତବୁଦ୍ଧି ହୋଇ ଭେଙ୍କଟ ରାଓ ରାଘପ୍ପାକୁ ଚିଠି ଲେଖିଲା। ରାଘପ୍ପା ନିଜର ଭିଣୋଇ ସ୍ୱାମୀରାୟ କୁଲକର୍ଣ୍ଣୀକୁ ଜାମିନରଖାଇ ଭେଙ୍କଟ ରାଓକୁ ହାଜତ ଖଟିବାରୁ ବଞ୍ଚାଇଲା।

ସେଠାରୁ ତିନହେଁ ଧାରୱାଡ଼ ଆସୁଥିବାବେଳେ, ରେଲରେ କୁଲକର୍ଣ୍ଣୀକୁ ସ୍ୱାମୀରାୟ କହିଲେ, 'ତୁମ ଦାୟିତ୍ୱ ନେଲି, ତୁମେ ତୁମର ଅଂଶର ଜମି ମୋ ନାଁରେ ଲେଖିଦିଅ।

ତୁମକୁ ବିଶ୍ୱାସ ନାହିଁ। ଏହା କହି ତା ପଛରେ ଲାଗିଲେ। ସେ ଜୋର ଦେବାରୁ ଧାରଓ୍ୱାଡ଼ ଆସିବାମାତ୍ରେ ଭେଙ୍କଟ ରାଓ ସେଇ 'ସତ୍ତ୍ୱପତ୍ର'ଟି ଲେଖିଦେଇଥିଲା। ଲେଖିଦେଲାପରେ ସେ ବିଷୟରେ ଭେଙ୍କଟ ରାଓ ବାରମ୍ବାର ଚିନ୍ତାକଲା। ଲେଖାଯାଇଥିବା 'ସତ୍ତ୍ୱପତ୍ର'ଟିର ନକଲ ଭେଙ୍କଟ ରାଓ ବା ରାଘପ୍ପା କାହାରି ପାଖରେ ନଥିଲା। ଏଣେ ରାଘପ୍ପା କହୁଥାଏ, ତୋ ଅଂଶରେ କଣ ଅଛି? ଆମ ଜମିରୁ ଦି'ଖଣ୍ଡ ଭଲ ଜମି ଯଦି ସ୍ୱାମୀରାୟ ମାଗି ବସିବ ତେବେ ମୋର ଦଶା କଣ ହେବ?' ଏମିତି କହିକହି ତାକୁ ବିରକ୍ତ କରିକରି ସ୍ୱାମୀରାୟଠାରୁ ସେଇ କାଗଜର ଖଣ୍ଡିଏ ନକଲ ଆଣିବାକୁ ବାଧ୍ୟ କରାଇଲା। ମୂଳରୁ ବିକ୍ଷିପ୍ତ ଭେଙ୍କଟ ରାଓ ସେସବୁ କଥା ଶୁଣି ଚିଡ଼ିଯାଇ ସ୍ୱାମୀରାୟକୁ କହିଲା, 'ମୁଁ ଓକିଲକୁ ପଚାରିବି, ସେ ଦାନପତ୍ରର ନକଲଟିଏ ମୋର ଦରକାର।'

ଅନୁଭବୀ ସ୍ୱାମୀରାୟ ତାର ସେ କଥା ନଶୁଣିବାରୁ ଭେଙ୍କଟ ରାଓ ଦୁଃଖିତ ହୋଇଥିବ। ଶେଷରେ ସ୍ୱାମୀରାୟ ରାଗରେ ବିରକ୍ତ ହୋଇ କହିଲା, 'ମୁଁ ପାଞ୍ଚହଜାର ଟଙ୍କାର ଜାମିନ ଦେଇଛି, କେହି କହୁଦେଖି ଯେ ମୁଁ ତୁମଠାରୁ ଭୁଲ ଲେଖେଇନେଇଛି, ତା ହେଲେ ମୋତେ ଯାହା ସଜା ମିଳିବ ମୁଁ ଭୋଗିବାକୁ ତିଆର ଅଛି।' ଏହା କହି ଭେଙ୍କଟ ରାଓ ଆଡ଼କୁ ସେ ଚିଠାର ନକଲ ଫୋପାଡ଼ି ଦେଲା। ତାହାକୁ ନେଇ ଭେଙ୍କଟ ରାଓ ରାଘପ୍ପା ଘରକୁ ଆସିଲା। ପରଦିନ ସକାଳୁ ଓକିଲ ସହିତ ସାକ୍ଷାତ କରି ସେ ଚିଠା ବିଷୟରେ ପରାମର୍ଶ କରିବାର ଥାଏ। ସେଥିପାଇଁ ସେଦିନ ଭେଙ୍କଟ ରାଓ ସେଇଠାରେ ଖାଇ ପିଇ ଶୋଇଲା। ରାତି ଏଗାରଟା ବାଜିଛି, ତାକୁ ଧରିବା ପାଇଁ ପୋଲିସ ଆସି କବାଟ ଖଡ଼ଖଡ଼ କଲା। ପୋଲିସ ହାତରୁ ବଞ୍ଚିବା ପାଇଁ ଭେଙ୍କଟ ରାଓ ବାରିପଟ ଦରଜା ଦେଇ ପଳାଇ ଆସି ଷ୍ଟେସନରେ ପହଞ୍ଚିଲା। ସେଠାରୁ ବମ୍ବେ ଯାଉଥିବା ଗାଡ଼ି ଧରିଲା। ଏ ବିଷୟରେ ଭେଙ୍କଟ ରାଓ ଯେପରି କହୁଥିଲା, ସେପରି ଲେଖୁଛି। ମାତ୍ର ଏ ସମ୍ପର୍କରେ ମୋର କେତେକ ସନ୍ଦେହ ଅଛି।

ବମ୍ବେରେ କେତେଦିନପରେ ଏଇ ଅଟାକଳର ମାଲିକ ଘରେ କାମ ପାଇଲା। କେତେଦିନପରେ ଯେତେବେଳେ ତାର ମାଲିକ ଏ ଅଟାକଳ ଚାଲୁକଲାରୁ ସେ ଏଥିରେ ଲାଗିଗଲା। ସେବେଠାରୁ ସେ ଏଇ ଅଜ୍ଞାତବାସରେ ଦିନ କାଟୁଛି। ଭେଙ୍କଟ ରାଓର କହିବା କଥା ହେଲା ଯେ ଏଇ ଦାନପତ୍ରକୁ ଦେଖିଥିବା ଲୋକ ଭିତରେ ମୁଁ ଏକମାତ୍ର ଲୋକ ଯିଏ କହୁଛି ଯେ ତୁମର ଭାଗ ତୁମକୁ ମିଳିବ।

ଏ ବିଷୟରେ ଭେଙ୍କଟ ଯେ ଭାବରେ କଥା କହୁଛି ସେଇ ଅନୁସାରେ ଲେଖୁଛି। ଏହା ସତ ଯେ ତାର ବାଉଳା ସ୍ୱଭାବ ହେତୁ ତାର କେତେକ କଥା ଓଲଟାପାଲଟା ମନେହେବ। ତେଣୁ ଏଥିରୁ କେତେକ କଥା ସନ୍ଦେହଜନକ ମନେ ହେଉଛି। ଆପଣ ଯଦି ଭେଙ୍କଟ ରାଓ ମୁହଁରୁ ଶୁଣନ୍ତେ ତେବେ ଆପଣଙ୍କର ମଧ୍ୟ ସନ୍ଦେହ ହୋଇଥାନ୍ତା। ମୁଁ ଯେଉଁ ନୋଟ ଲେଖିଲି ତା ଦ୍ୱାରା କଥା ସ୍ପଷ୍ଟ ହେବନାହିଁ ଭାବି ତଳେ ନିଜର ମତାମତ ଲେଖୁଛି।

ପ୍ରଥମ କଥା, ଭେଙ୍କଟ ରାଓ ନିଜପାଖରେ ଥିବା ପତ୍ରକୁ ଦାନପତ୍ରର ନକଲ ବୋଲି କହୁଛି। ଆପଣଙ୍କର ମନେଥିବ, ମୁଁ ପ୍ରଥମ ଚିଠିରେ ଲେଖିଥିଲି ଯେ ତା ପାଖରେ ଯେଉଁ ଚିଠା ଅଛି ତାହା ମୂଳ ଦାନପତ୍ର କି ନାହିଁ ତହିଁରେ ସନ୍ଦେହ ଆସୁଛି। ତା' ଉପରେ ରେଜିଷ୍ଟ୍ରେସନ ଷ୍ଟାମ୍ପ ନଥିବାରୁ ଓ କାଳି ପୁରୁଣା ହୋଇଯାଇଥିବାରୁ ଏହା ମୂଳଚିଠିର ନକଲ ପରି ମନେ ହେଉଛି। ଆଉରି ଏକ କଥା ଦ୍ୱାରା ଏକଥାର ସମର୍ଥନ କରାଯାଇପାରେ। ହୁଏତ ରାଗିଯାଇ ସ୍ୱାମୀରାୟ ସେ କାଗଜ ଭେଙ୍କଟ ରାଓ ଉପରକୁ ଫୋପାଡ଼ି ଦେଇଥିଲେ। ତେଣୁ ଏହା ମୂଳ କାଗଜ ହୋଇପାରେ। ଏହା ବୁଝିବା ଭେଙ୍କଟ ରାଓର କଳ୍ପନାର ବାହାରେ। ଏହା ନିଶ୍ଚୟ ମୂଳ କାଗଜ। ଦୁଇ ତିନୋଟି ନକଲ କରି ଗୋଟିଏ ସ୍ଥାନରେ ରଖିଥିବା ହେତୁ ରାଗରେ ଏପରି ହୋଇ ଯାଇଥିବା ସମ୍ଭବ।

ଦ୍ୱିତୀୟ କଥା, ଜାମିନ୍ ଦେଲାପରେ ପୋଲିସ ଆସିଲା କାହିଁକି? ସମନ ଆସିବା ଉଚିତ ଥିଲା। ଦ୍ୱିତୀୟ ଥର ପୋଲିସ ଆସିଥିବା କଥା ସତ ନା ଭେଙ୍କଟ ରାଓର ଭ୍ରମ ?

ତୃତୀୟ ହେଲା, ଭେଙ୍କଟ ରାଓ ବମ୍ବେ ପଳାଇଲାପରେ ସ୍ୱାମୀରାୟର ଅବସ୍ଥା କଣ ହେଲା ?... ଏହା ସତ ଯେ କେବଳ ଭୟ ହେତୁ ସେ ଭେଙ୍କଟ ରାଓର ସମ୍ପତ୍ତି ଲେଖାଇନେଇଥିଲେ; ଯଦି କିଛି ହୋଇଯାଏ ତେବେ ତାଙ୍କର କ୍ଷତି ହୋଇଥିବା ଟଙ୍କା ଜାଗାରେ ଏ ସମ୍ପତ୍ତି ଆସିବ।– ଏପରି ମିଛ ବିଶ୍ୱାସଟିଏ ସେ ପ୍ରଥମେ କରିଥିବେ। ପରେ, ଭଲ କରି ଦେଖିଲା ପରେ ସେ ଯେତେବେଳେ ଜାଣିଥିବେ ଯେ ମୂଳ କାଗଜ ଖଣ୍ଡିକ ତାଙ୍କର ହାତଛଡ଼ା ହୋଇଯାଇଛି, ସେତେବେଳେ ସେ ଅବଶ୍ୟ ସନ୍ଦିହାନ ହୋଇ ପଡ଼ିଥିବେ। ମାତ୍ର ସେ ବିଘ୍ନ କଥା ଭେଙ୍କଟ ରାଓ ମୁଣ୍ଡରେ ପଶିନାହିଁ। ସେ ଏବେବି ଭାବୁଛି ଯେ ତାର ସମ୍ପତ୍ତି ସ୍ୱାମୀରାୟ ହାତକୁ ଚାଲିଯାଇଥିବ। ସେ ଖୁସି ହେଉଥିବ। ତାକୁ ଯଦି ସତ କଥା ମାଲୁମ ହୋଇଯାଏ ତେବେ ସେ ନିଶ୍ଚୟ ଦୁଃଖିତ ହେବ ଓ ତାର ଚିନ୍ତାର ଭାରସାମ୍ୟ ନଷ୍ଟ ହୋଇଯିବ। ଏ ବିଷୟରେ ଆମେ ବିଶେଷ ଧ୍ୟାନ ଦେବା ଦରକାର।

ଏହା ସତ୍ତ୍ୱେ ମୁଖ୍ୟ ରହସ୍ୟ ଆଚ୍ଛନ୍ନହୋଇରହିଛି। କିଏ ଭୁଲ ଚେକ୍ ଦେଇଥିଲା ? ଭେଙ୍କଟ ରାଓ ଫେରାର ହେବାପରେ ତାକୁ ଖୋଜିବାପାଇଁ ପୋଲିସ ପ୍ରୟାସ କରିଥିଲା କି? ତାର ଅନୁପସ୍ଥିତିରେ କେଶ୍ ଚାଲିଥିଲା କି?....ଏ ସବୁ ବଡ଼ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ। ଏ ବିଷୟରେ ଅନ୍ୟାନ୍ୟ ସ୍ଥାନରେ ଅନୁସନ୍ଧାନ କରିବା ଆବଶ୍ୟକ। ସବୁ ଖବର ନେବା ମୋର ଇଚ୍ଛା। ଏଠାରେ ମୁଁ ଅନ୍ୟାନ୍ୟ ବିବରଣ ସଂଗ୍ରହ ଓ କୋର୍ଟର ପୁରୁଣା ଫାଇଲ ଖୋଜି ବାହାର କରିବାକୁ ଚେଷ୍ଟା କରିବି।

ଏ କାହାଣୀ ଯଦି ପୂରା ଜଣାପଡ଼ିଯାଏ, ତେବେ ଏହାକୁ ଆମ ଖବର କାଗଜରେ ଧାରାବାହିକ ଭାବରେ ଛଦ୍ମନାମରେ ଛପାଇବି। ଏଥିରୁ କିଛି ଅଂଶ ଆମ ସମ୍ପାଦକଙ୍କୁ କହିଥିଲି। ସେ ବହୁତ ପସନ୍ଦ କରିଛନ୍ତି। ତାଙ୍କର କହିବା କଥା ହେଲା, ହିନ୍ଦୁସ୍ଥାନରେ

ଏମିତି ହୃଦୟବିଦାରକ ଘଟଣାକୁ ଲେଖିବା ଲୋକ କେତେଜଣ ଅଛନ୍ତି ? ଆମେ ବାହାରୁ କମିକ୍ କିଣୁ। କାହାଣୀ ମଧ୍ୟ ବାହାରୁ କିଣିବାକୁ ପଡ଼େ। ସେସବୁ ପୁଣି ଅନ୍ୟ ଦେଶର ବାତାବରଣରେ ଲିଖିତ।

ମୁଁ ପଢ଼ାପଢ଼ି ଭଲରେ କରୁଛି। ଦେହ ଭଲ ଅଛି। ମା'ଙ୍କୁ ପ୍ରଣାମ। ଭାଇମାନଙ୍କୁ ଆଶୀର୍ବାଦ। ଇତି।

ଅଚ୍ୟୁତ ରାଓ

# 34. ନିଆଁ ସହିତ ଖେଳ

ଦେଶାଇଜୀଙ୍କଠାରୁ ଝିଅ ଓ ଜୋଇଁଙ୍କୁ ପଠାଇଦେବାର ଖବର ଆସିବାରୁ ରାଘସ୍ୱା ଗରଗର ହୋଇ ତାଙ୍କର ସେକଥା ରକ୍ଷାକଲା । 'ଦେଶାଇ, ଯାହା ତୋର କରିବା କଥା କରିନେ, ବେଳ ଆସିଲେ ମୁଁ ମଧ୍ୟ ତୋ ଗର୍ଦ୍ଦନ ଭାଙ୍ଗିବି ।' ସେ ଝିଅଜୋଇଁଙ୍କୁ ଘରକୁ ଡକାଇ ବୁଝାଇଲା, 'ତୁମେ ସଭିଏଁ ମିଳିମିଶି ଚଳିବା ଉଚିତ । ମୋ ଭଉଣୀ ଅନେକ ଦୁଃଖ ସହିଛି । ତାକୁ ଆଉ ଦୁଃଖ ଦେବା ଉଚିତ ହେବନାହିଁ ।' ରତ୍ନାର ବିବାହ ପରେ ମଧ୍ୟ ରାଘସ୍ୱା ଗଙ୍ଗୱ୍ୱାଘରେ ପାଦ ରଖିନାହିଁ । ଗଙ୍ଗୱ୍ୱା ମଧ୍ୟ ରାଘସ୍ୱା ଘରକୁ ଯାଇନାହିଁ । ଏତେ ଏତେ ବିଦ୍ୱେଷ ପରେ ଗଙ୍ଗୱ୍ୱା ପାଇଁ ରାଘସ୍ୱା ପାପର ସାକ୍ଷାତ ମୂର୍ତ୍ତିଟିଏ ପରି । ରାଘସ୍ୱା ଦୃଷ୍ଟିରେ ଗଙ୍ଗୱ୍ୱା ହେଉଛି ରାଘସ୍ୱାକୁ ନିଜ ସାମର୍ଥ୍ୟରୁ ଓହରାଇ ଆଣିବାର ଓ ତା' ସହିତ ଲଢ଼ିବାର ଏକ ଶକ୍ତି । ତଥାପି କେବେ ଗଙ୍ଗୱ୍ୱା କଥା ଉଠିଲେ ରାଘସ୍ୱା ମନରେ କରୁଣା ଜାତ ହୁଏ । ଯେତେବେଳେ ବିବାହ କଥା ଠିକ୍‌ଠାକ୍ ହୋଇଯାଇଥିଲା ସେତେବେଳେ ମଧ୍ୟ ଏମିତି ହୋଇଥିଲା । ଏବେ ଗଙ୍ଗୱ୍ୱା ନଖାଇ ଘରଛାଡ଼ି ଚାଲିଯାଇଛି, ଦେଶାଇଜୀଙ୍କ ଘରେ ଅଛି । ଏସବୁ ବିବରଣ ଝିଅଠାରୁ ଶୁଣି ତା'ର ମନ ତରଳି ଗଲା । ଏଥିପାଇଁ ଝିଅଜୋଇଁ ଦିହେଁ ରାଜିହେଲେ ।

ମନର ଆତୁରତାକୁ ପ୍ରକାଶ ନକରି ସେ ଏପରି ଭାବ ଦେଖାଇଲା ଯେମିତିକି ଦେଶାଇଜୀଙ୍କ କଥା ରକ୍ଷା କରିବାପାଇଁ ସେ ଏମିତି କରୁଛି । ଝିଅ ଜୋଇଁଙ୍କୁ ତା'ପରଦିନହିଁ ଯିବାଲାଗି ସେ ବାଧ୍ୟ କରାଇଲା । ଦୁର୍ବୁଦ୍ଧିର ବିଶେଷତ୍ୱ ଏଇ ଯେ ସେ ସଦ୍‌ବୁଦ୍ଧି ପଥରେ ଚାଲିବା ଲାଗି ମଧ୍ୟ ନିଜସ୍ୱ ଏକ କାରଣ ଖୋଜି ବାହାର କରେ ।

ମାତ୍ର ଏସବୁର ପରିଣାମ ହେଲା ଅନ୍ୟରକମର । ରାଘସ୍ୱା ଭାବିନଥିଲା ଯେ ତା'ରି ଉପେକ୍ଷିତ ବିଷୟକୁ ନେଇ ଦେଶାଇଜୀ ଝିଅ ଓ ତା' ଭିତରେ ବିଭେଦ ସୃଷ୍ଟି କରିଦେବେ । ପ୍ରତି ଦି'ଦିନ ତିନିଦିନରେ ପଳାଇଆସୁଥିବା ରତ୍ନା କଳିପରେ ପନ୍ଦର ଦିନ ବିତିଗଲେ ସୁଦ୍ଧା ମୁହଁ ଦେଖାଇଲା ନାହିଁ । କିଟ୍ଟୀ ସହିତ ରାସ୍ତାରେ ଦି'ତିନିଥର ଦେଖାହୋଇଥିଲା । ତାକୁ ବା ଆପଣା ଝିଅ ବିଷୟରେ କଣ ପଚାରିବ ? ରତ୍ନା ମୁହଁ ନଦେଖାଇବାରୁ ମନ ଛଟପଟ ହେବାକୁ ଲାଗିଲା । ଯାହାହେଉ ପଛକେ ସେ ଶାଶୁଘରେ ସୁଖରେ ଥାଉ କହି ରାଘସ୍ୱା ମନକୁ ଟାଣ କଲା । ମୁଁ ନିଜେ ରାବଣ, ବିନାଶ କାଳ ଆସିଗଲାଣି, ଗୋଟିଗୋଟିକରି ସବୁ ହଜାଉଛି । ଏସବୁ

ଚିନ୍ତାକଲାବେଳେ ମନେ ମନେ କହିଲା, 'ହଉ, ଭଲ କଥା ଦେଶାଇ, ତୋତେ ମୁଁ ଆଉ ଏକ ଜାଗାରେ ନୁଆଇଁ ଦେଉଛି।'

ଭିତରେ ଭିତରେ ଦୁଇଟି ଆଶା ଦିନକୁଦିନ ବଳବତ୍ତର ହେଉଛି। ଏକ ହେଲା ପୁଅଟିଏ ହେବା ଦରକାର। ତା' ପାଇଁ ସତ୍ୟନାରାୟଣ ପୂଜା କରାଇଲା, ମାନସିକ କଲା। ବମ୍ବେର ପ୍ରସିଦ୍ଧ ଜ୍ୟୋତିଷଙ୍କ ପାଖକୁ ପାଞ୍ଚଟଙ୍କା ମନିଅର୍ଡ଼ର କରି ପ୍ରଶ୍ନ ପଚାରିଲା। ତାଙ୍କଠୁ ଉତ୍ତର ଆସିଲା, ପୁଅ ହେବ। ପାଞ୍ଚଣା ପଇସା ଓ ପାଞ୍ଚଟି ସୁପାରି ରଖି ଦେହରେ ଦେବତାମାନଙ୍କୁ ଖେଳାଉଥିବା ଯୋଗିନୀକୁ ପ୍ରଶ୍ନକଲା। ତା'ର ଉତ୍ତର ମଧ୍ୟ ସେଇଆ। ରାଘସ୍ୱା ଖୁସି ହେଲା।

ଆଉରି ଆଶାଟିଏ ଥାଏ। ଶାନ୍ତା ସହ ବସନ୍ତ ରାଓର ବିବାହ। ଦେଶାଇଜୀଙ୍କ ଉପରେ ଦର୍ପ ଜାହିର କରିବାକୁ ତା' ପାଖରେ ଏଇ ଏକମାତ୍ର ଉପାୟ ଅଛି। ସେଥିପାଇଁ ବସନ୍ତକୁ ଘରକୁ ଆସିବା ପାଇଁ ବହୁତ ଉତ୍ସାହିତ କରେ। ଶାନ୍ତା ତାକୁ ସବୁବେଳେ ଚା ଆଣିଦିଏ। ମାତ୍ର ବସନ୍ତ ତା' ସହିତ ଆଦୌ କଥା କହେନାହିଁ। ତାକୁ ସଙ୍କୋଚ ଲାଗେ। ସେ ଭାବେ, ଯଦି ସୁନା ଦୋକାନୀ ବର ମିଳୁଛି ତେବେ ଶାନ୍ତି କାହିଁକି ମୋ ପ୍ରତି ଧ୍ୟାନ ଦେବ? ଖାଲି ଖଦଡ଼ ପିନ୍ଧି ବା ଲାଭ କଣ? ମୋତେ ଯଦି ସେମାନେ ଝିଅ ଦେବାକୁ ଚାହାନ୍ତି ତେବେ ଖୋଲାଖୋଲି କହୁନାହାନ୍ତି କାହିଁକି? ସହଳ ଫଳ ଆଶା କରୁଥିବା ବସନ୍ତ ରାଓ ଲାଭପ୍ରତି ବିଶେଷ ଧ୍ୟାନ ନଦେଇ ନିଜର ଅବସ୍ଥାପନ୍ନ ଘରେ ଯେଉଁ ଭୋଜନ ପ୍ରାପ୍ତ ହୁଏନାହିଁ ସେମିତି ସ୍ୱାଦିଷ୍ଟ ଖାଦ୍ୟ, ଗଳ୍ପ ଓ କେବେ କେବେ ତାସ୍ ଖେଳରେ ହିଁ ସନ୍ତୁଷ୍ଟ ହୋଇଯାଏ।

ବସନ୍ତ ମନରେ ଏକ ସନ୍ଦେହ ଥାଏ। ହୁଏତ ଝିଅ ମୋତେ ପସନ୍ଦ କରେ। ନ ହେଲେ ରାଘସ୍ୱା ଘରୁ ମୁଁ ବାହାରିଲାବେଳକୁ ଫୁଲତୋଳିବା ବାହାନାରେ ବଗିଚାକୁ ଆସେ କାହିଁକି? ପ୍ରଥମେ ବସନ୍ତ ଯେତେବେଳେ ନାଟକ କରିବା ଧନ୍ଦାରେ ପଶିଥିଲା, ସେତେବେଳେ ସେ ନିଜ ପାଇଁ 'କଲଚର'ମୋତିର ଏକ ହାର ଗଢ଼ାଇ ଥିଲା। ସେ ହାରକୁ ଭାଙ୍ଗି ସ୍ତ୍ରୀଲୋକମାନଙ୍କ ପିନ୍ଧିବା ଭଳି ଡିଜାଇନରେ ତିଆରି କରାଇ ଅନେକ ଦିନରୁ ପକେଟରେ ରଖି ଶାନ୍ତାକୁ ଦେବାର ଅବସର ଖୋଜୁଥିଲା। ଅବଶେଷରେ ଦିନେ ସୁଯୋଗ ମିଳିଲା, ମାତ୍ର ସ୍ଥାନଟି ଠିକ୍ ନୁହେଁ। ରାସ୍ତା। ଘରେ ଶାନ୍ତା ସହିତ ନିରୋଳାରେ କେବେ ଦେଖା ହୁଏନାହିଁ। ଚମ୍ପା ତା' ଉପରେ ସବୁବେଳେ ନଜର ରଖିଥାଏ।

ଦିନେ ସାଙ୍ଗଘରୁ ଫେରିଲାବେଳେ ଶାନ୍ତା ବାଟରେ ବସନ୍ତର ମୁହାଁମୁହିଁ ହୋଇଗଲା। ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲା ଯେ ରାସ୍ତାରେ ବସନ୍ତ ତା' ସହିତ କଥା କହିବ। ତା' ଆଗରେ ଆସି ଖମ୍ବଟିଏ ପରି ଠିଆହୋଇଯାଇ ବସନ୍ତ ପଚାରିଲା, 'ରାଘସ୍ୱାଜୀ ସହରରେ ନାହାନ୍ତି?'

'ଅଛନ୍ତି ତ।'

'ଘରେ ନାହାନ୍ତି।'

'ବାହାରକୁ ଯାଇଥିବେ।'

'ଏଟା ଦେଖିଲ', କହି ବସନ୍ତ ପକେଟରୁ ହାର କାଢ଼ି ଅଲଗା କରି ଶାନ୍ତା ହାତରେ ରଖିଲା। ହାର ଦେଖି ଶାନ୍ତା ହାରରେ ବଡ଼ବଡ଼ ମୋତି ଉପରେ ନିଜର କୋମଳ ଆଙ୍ଗୁଠି ବୁଲାଇବାକୁ ଲାଗିଲା। ବସନ୍ତକୁ ତା'ର ଆଙ୍ଗୁଠି ଗୁଡ଼ିକ ମଧ୍ୟ ମୋତିପରି ଦେଖାଗଲା। ସେ ଉତ୍ସାହିତ ହୋଇ କହିଲା, 'ଆସଲି ମୋତି ନୁହଁ, 'କଲଚର୍ଡ୍'।

ଶାନ୍ତା କଣ କହିବ ବୁଝି ପାରିଲା ନାହିଁ। ଟିକିଏ ଅସ୍ଥିର ହୋଇ ପଚାରିଲା 'ଆପଣଙ୍କ ମା'ଙ୍କର ?'

ବସନ୍ତ କହିଲା, 'ନାଇଁ, ମୋର। ଗାଁରେ ନାଟକ କରୁଥିଲାବେଳେ ରାଜା ପାର୍ଟ କରିବାପାଇଁ ତିଆରି କରିଥିଲି। ତୁମର ପସନ୍ଦ ହେଉଛି ଯଦି ନିଅ।

ଏହା ଶୁଣି ଶାନ୍ତା ଆଉରି ଅଧୀର ହୋଇଉଠିଲା। ଏପଟେ ସେପଟେ ଚାହିଁ ଦେଖିଲା ଯେ ଏ ଦୃଶ୍ୟକୁ ଗଳିର ଦି'ଚାରିଜଣ ସ୍ତ୍ରୀଲୋକ ନିଜନିଜ ଘରୁ ଶ୍ୟେନ ଦୃଷ୍ଟିରେ ଦେଖୁଛନ୍ତି। ଘର ଦୂରରେ ଥିବାରୁ ସେମାନଙ୍କର କଥା ଶୁଣିବା ସମ୍ଭବ ନଥିଲା, ତଥାପି ଶାନ୍ତାକୁ କଥାଟା ଉଚିତ ମନେହେଲାନାହିଁ। ସେ ଯେତେବେଳେ ପ୍ରଥମେ ଶୋଭାଯାତ୍ରାରେ ଅଂଶ ଗ୍ରହଣ କରିଥିଲା ସେତେବେଳେ କେତେଜଣ ଜରଦ୍‌ଗବ କହିଥିଲେ ଯେ ଆଚ୍ଛା, ଚମାର ଝିଅ, ତା' ଛଡ଼ା ଆଉ ବା କିଏ ହୋଇପାରେ ! ସେଇ ଅପମାନଜନକ କଥା ମନେପଡ଼ିଗଲା। ସେ ଭାବିଲା, ମୁଁ ଯଦି ଏବେ ଅସ୍ୱୀକାର କରୁଛି, ତେବେ ଏ ମହାତ୍ମା ରାସ୍ତାରେ ହିଁ ସାକୁଲାଇବେ। ଏ ମୋତି ବେଶ୍ ସୁନ୍ଦର। ତେଣୁ କହିଲା, 'ମୋ ସାଙ୍ଗମାନଙ୍କୁ ଦେଖାଇସାରି ଫେରାଇଦେବି।' ତା'ପରେ ହାରକୁ ହାତରେ ନଚାଇ ନଚାଇ ଆଗେଇଗଲା।

ବସନ୍ତ କାଠହୋଇ ଠିଆହୋଇରହିଲା ଓ ନିଜକୁ ଧନ୍ୟ ମନେକଲା।

କ୍ରମେ ଦିନ ବିତିବାକୁ ଲାଗିଲା। ନିଜକୁ ରୋକିବା ରାଘଵା ପକ୍ଷରେ କଠିନ ହୋଇଉଠିଲା। ଦିନେ ବସନ୍ତ ଆଗରେ ସେ କଥାଟା ସ୍ପଷ୍ଟ ଭାବରେ ଉଠାଇଲା।

'ବସନ୍ତ, ଆମ ଶାନ୍ତା ବିଷୟରେ ଅନେକ ଚିନ୍ତାକଲି। ସେଇ ସୁନା ଦୋକାନୀ ଗୋବିନ୍ଦ ରାୟର ପୁଅ—ଏଇନେ ଯଦି କହିଦେବି ଖୁସିରେ ଆସି ଶାନ୍ତାକୁ ବାହା ହୋଇଯିବ। ମାତ୍ର ତାଙ୍କ ଘର ବିଷୟରେ ମୋତେ କିଛି ଜଣାନାହିଁ। ସେମିତି ଦେଖିବାକୁଗଲେ ସଭିଏଁ ଧନୀ, କିନ୍ତୁ ଏ ସୁନା ଦୋକାନୀମାନଙ୍କର କିଛି ଭରସା ନାହିଁ। ସୁନା କାଟୁଥିବା ଲୋକର ହାତ କଂସାଇର ହାତପରି। ତାଙ୍କର ବଡ଼ବଡ଼ କଥା। ଘରେ ଗୋଟିଏ ନହେଲେ ଆଉ ଗୋଟିଏ କଳି ଲାଗିରହିଥିବ। ସେମାନଙ୍କର ବଂଶ ଅଭିଶପ୍ତ। ପିଲାଏ ପାଗଳା ଆଉ ବୋକା ହୁଅନ୍ତି। ମୋଟ କଥା ହେଲା, ଏଇନେ ମୋର ସାହସ ହେଉନାହିଁ, ତେଣୁ ମୁଁ କଥାଟିଏ ଭାବିଛି।'

'କଣ ?'

'ତୁମ ସହ ମୋର ସଦ୍‌ଭାବ ହବାର ଦି'ବର୍ଷ ହୋଇଗଲାଣି। ତୁମ ସ୍ୱଭାବ ମୋର ଭାରୀ ପସନ୍ଦ। ତୁମ ବାପାଙ୍କ ପ୍ରତି ମୋର ଦିନୁଦିନ ଶ୍ରଦ୍ଧା ବଢ଼ୁଛି। ତୁମର

ସ୍ୱଭାବ, ଲମ୍ବାଚୌଡ଼ା ଚେହେରା, ଷୋଳପଣ ଆମ ଶାନ୍ତାର ଯୋଗ୍ୟ। ତୁମ ହାତରେ ଯଦି ଶାନ୍ତାକୁ ଦିଏଁ ତେବେ କେବଳ ମୁଁ ନୁହଁ, ତୁମେ, ତୁମର ବାପା ଓ ତୁମ କୁଳ ମଧ୍ୟ ଧନ୍ୟ ହୋଇଯିବ। ଏଥିରେ ମୋର ତିଳେହେଲେ ସନ୍ଦେହ ନାହିଁ। ମୋ' ମନକୁ କଥାଟା ଦି'ଦିନ ହେଲା ଆସିଲାଣି। ମୋତେ ନିଦ ହେଉନାହିଁ; ନିଜକୁ ରୋକି ନପାରି କହିଦେଲି।

ବସନ୍ତର ଖୁସି ଘର ଧରିଲାନାହିଁ। ସେ କହିଲା, 'ଆପଣଙ୍କ କଥାକୁ ତଳେ ପକାଇଦେବା ମୋ ପକ୍ଷରେ ଅସମ୍ଭବ। ବାପାଙ୍କୁ ମନେଇନିଅନ୍ତୁ; ମୁଁ ତ ଏଇ କହିଲେ ପ୍ରସ୍ତୁତ।'

ଏଇ କଥାକୁ ରାଘୱା ଅପେକ୍ଷା କରୁଥିଲା। ତା'ର ଉତ୍ତର ମଧ୍ୟ ପ୍ରସ୍ତୁତ ଥିଲା। ସେ ଜାଣେ ତା' ବିଷୟରେ ଦେଶାଈଜୀଙ୍କର ଧାରଣା ଭଲ ନୁହଁ। ସେ ଏ ବିବାହ ପ୍ରସ୍ତାବରେ ରାଜି ହେବା ଅସମ୍ଭବ। ତା'ଛଡ଼ା ତାଙ୍କ ମୁହଁରୁ ଥରେ ଯଦି ନାଁ ପଦ ବାହାରିଯିବ, ତେବେ ତାଙ୍କୁ ମନାଇବା କଠିନ କଥା। ସେ ଏକଥା ମଧ୍ୟ କହିପାରନ୍ତି ଯେ ଆଗ ଅଚ୍ୟୁତର ବିବାହ ହୋଇଯାଉ, ପରେ ବସନ୍ତ କଥା ଦେଖିବା, କିନ୍ତୁ ଏକଥା ରାଘୱାର ପସନ୍ଦ ନୁହଁ। ସେ ଅନ୍ୟରକମର ସ୍ୱପ୍ନ ଦେଖୁଥାଏ – ବସନ୍ତ ବାପାଙ୍କୁ ନିଜେ କହିବ, କଳିକରିବ, ନିଜଘର ଛାଡ଼ି ରାଘୱା ଘରେ ଆସି ରହିବ। ତା' ଝିଅକୁ ବାହା ହୋଇ ବାପ ବିରୁଦ୍ଧରେ ଯାଇ ଭାଗନେଇ ସ୍ୱତନ୍ତ୍ର ଭାବରେ ସେ କହିବା ମୁତାବକ ଚଳିବା ଦରକାର। ଏତକ ହୋଇଗଲେ, ଦେଶାଈଜୀଙ୍କୁ ପାନେ ମିଳିବ। ଏସବୁ ଭାବି ରାଘୱା କହିଲା, 'ତୁମେ ଚାହୁଁଛ କି ନାହିଁ, ଏମିତିରେ ରକ୍ତର ସମ୍ପର୍କ ଭାରୀ ଟାଣ। ତୁମେ ଆଗେ ନିଜ ମନକୁ ସ୍ଥିର କର, ପରେ ମୁଁ କହିବି।'

'ମୋ ମନ ସ୍ଥିର, ଆପଣ ପରକଥା କହନ୍ତୁ।'

'ଶାନ୍ତାକୁ ଏବେ ପନ୍ଦର ପୂରି ଷୋହଳ ଚାଲିଲା। ଏବେ ଆଉରି ତିନିବର୍ଷ ଅପେକ୍ଷା କରିବ, ତୁମେ କ'ଣ ଏଇକଥା ଭାବୁଛ ? ଏକଥା ପହିଲେ କହିଦିଅ।'

'ମୁଁ ସେକଥା କେତେବେଳେ କହିଲି ?'

'ତୁମେ ନୁହଁ, ତୁମ ବାପା କହିପାରନ୍ତି। ବାପାଙ୍କୁ ମନାଇବା କଥା ତୁମେ କହୁଥିଲ ନାଁ...। ତୁମ ବାପା ମୋ କଥା କାଟିବେ ନାହିଁ, ଏହା ସତ..। ହେଲେ ବଡ଼ ପୁଅ ଏବେବି ପଢୁଛି। ତା'ର ପଢ଼ା ସରିଯାଉ, ପରେ ବସନ୍ତର ବିବାହ କଥା ଭାବିବା – ଏକଥା ତୁମ ବାପା କହିବେ। ତହିଁରେ ତାଙ୍କର କିଛି ଦୋଷ ନାହିଁ। ଗୁରୁଜନମାନଙ୍କର ଇଚ୍ଛା, ସବୁକାମ ସାମାଜିକ ଦୃଷ୍ଟି ଅନୁକୂଳ ହେବା ଉଚିତ। ସେ ଯଦି ସେପରି କହନ୍ତି, ତେବେ ମୁଁ ତିନିଚାରିବର୍ଷ ଅପେକ୍ଷା କରିପାରିବିନାହିଁ। ଶାନ୍ତାକୁ ଷୋହଳ ପୂରୁଁ ପୂରୁଁ ତା'ର ବିବାହ ହୋଇଯାଉ, ମୋର ଏଇ ଇଚ୍ଛା।'

'ତା'ହେଲେ କଣ ହେବ ?' ବିବ୍ରତ ବସନ୍ତ ଗାଲ ସାଉଁଳାଉ ସାଉଁଳାଉ ପଚାରିଲା। ମନେ ହେଲା ଯେପରି ବାପାଙ୍କର ସେଇ ଚାପୁଡ଼ା ତା'ର ମନେ ପଡ଼ିଯାଉଛି।

'ସେଇଟା ତୁମର କାମ। ଯଦି ସତରେ ତୁମେ ମୋ ଝିଅକୁ ବାହା ହେବାକୁ ଚାହୁଁଥାଅ ତେବେ ସେକଥା ସ୍ପଷ୍ଟ ଭାବରେ ବାପାଙ୍କୁ କହିବା ଦରକାର। ତୁମର ଯଦି ଇଚ୍ଛା ଅଛି ତେବେ ତୁମେ ନିଜେ କହିବ। ମୋ ପରି ଲୋକର ଏବିଷୟରେ କିଛି କହିବା ସମ୍ଭବ ନୁହଁ। ଦେଖ ମୁଁ ଅଧାବୟସ ହେଲିଣି। ପାଞ୍ଚଜଣଙ୍କ ମଧ୍ୟରେ ମୁରବୀ ଭାବରେ ଗଣାହୁଏ। ଗୋଟିଏ ଝିଅର ବିବାହ ମୁଁ କରିସାରିଛି। ମୁଁ ଯଦି ତୁମ ବାପାଙ୍କୁ ଏକଥା କହେଁ ଯେ ବଡ଼ ଭାଇର ନକରି ଆଗ ସାନଭାଇର ବିବାହ କରିଦିଅ ତେବେ ଭଲଭଦ୍ରଲୋକେ ମୋତେ ଏହା କହି ଅପମାନ କରିବେ ଯେ ରାଘସା ବୁଢ଼ାହେଲା, ମାତ୍ର ଅକଲ ଶିଖିଲା ନାହିଁ। ଅବଶ୍ୟ ଏକଥାର କୌଣସି ମାନେ ହୁଏନା; ଆମ ଶାନ୍ତା ତୁମ ଯୋଗ୍ୟ ଝିଅ, ତା' ଦ୍ୱାରା ତୁମର ଭାଗ୍ୟର ଉଦୟ ହେବ ଏତକ ମୁଁ କହୁଛି। ବାକି ତୁମର ମନର ଦୃଢ଼ତା ଉପରେ ନିର୍ଭର କରେ।'

ବସନ୍ତ ଆଉରି ଆଉରି ଅସୁବିଧାରେ ପଡ଼ିଲା। ବହୁତ ଭାବି କହିଲା, 'ଆପଣ ଯେମିତି କହିବେ ମୁଁ ସେମିତି କରିବାକୁ ପ୍ରସ୍ତୁତ।'

'ମୁଁ କେବଳ ଗୋଟିଏ କଥା କହିବି।.... ବାପାଙ୍କୁ ରାଜି କରାଇବା କାମ ତୁମର। ମୁଁ ସେଥିରେ ନାକ ପୂରାଇବି ନାହିଁ। ଏଇଥିରୁ ତୁମେ ବୁଝ। ତୁମେ କିଛି ମୂର୍ଖ ନୁହଁ, ସବୁ ବୁଝୁଛ। ଶାନ୍ତାକୁ ତୁମେ ଦେଖିଛ। ମୁଁ ନିଜ ଅନୁଭୂତିକୁ ପୁଞ୍ଜିକରି କହୁଛି, ପୁରୁଷର ଭବିଷ୍ୟତ ତା'ର ବିବାହ ଉପରେ ନିର୍ଭର କରେ। ବାହାଘର ମାମଲାରେ କେବେକେବେ ସେମାନେ ବଡ଼ମାନଙ୍କୁ ଅକଲ ଶିଖାଇବା ଦରକାର ପଡ଼େ।

ଏ ବିଷୟରେ ବସନ୍ତ କେବଳ ଗୋଟିଏ ଜାଗାରେ ଜିଗର କରିପାରିବାର ଭରସା ରଖିପାରେ-ସେ ମା' ଆଗରେ ହଟ କରିପାରେ। ହେଲେ ସେ କିଛି ସ୍ଥିର କରିପାରିଲା ନାହିଁ ଓ ସେଇ ପ୍ରକାର ମାନସିକ ଅବସ୍ଥା ମଧ୍ୟରେ ରାଘସାଠାରୁ ବିଦାୟ ନେଲା।

ପନ୍ଦରଦିନପର୍ଯ୍ୟନ୍ତ ରୋଷେଇଘରେ ମାପାଖରେ ଫୁସୁରଫୁସୁର ହେଲା ପରେ ମଧ୍ୟ ମା' ଏକଥା ଦେଶାଇବାବୁଙ୍କ ଆଗରେ ପକାଇବା ଲାଗି ଆଦୌ ପ୍ରସ୍ତୁତ ହେଲାନାହିଁ। ମା' ନିଜେ ବଡ଼ଘରର ଝିଅ। ତା' ପାଖରେ ଏସବୁ କଥା ଏକାବେଳକେ ନୂଆ। ଯେତେବେଳେ ଦେଶାଇଜୀଙ୍କୁ ଦେଖାଇବାପାଇଁ ତାକୁ ଅଣାହୋଇଥିଲା, ସେତେବେଳେ ତା' ସହିତ ବତ୍ରିଶଜଣ ପେଟ୍ରୋମାକ୍ସଧାରୀ, କୋଡ଼ିଏ ଜଣ ଖୋଲା ତଲୱାରଧାରୀ, ଦି'ଜଣ ବନ୍ଧୁକଧାରୀ ପହରାଦାର ବ୍ୟାଣ୍ଡବାଲା ଓ ଅନେକ ଜ୍ଞାତି କୁଟୁମ୍ବ ଥିଲେ। ଏବେ ବର ସ୍ୱୟଂ କହୁଛି ଯେ ମୁଁ ସେ ଝିଅକୁ ବାହାହେବି। ତହିଁରେ ପୁଣି ଝିଅ ବାହାଘରରେ ହଜାରେ ଟଙ୍କା ବରପଣ ଦେବାକୁ ଅସମର୍ଥ ରାଘସା ପରି ଲୋକ ସହ ସମୁଧୀ ପଣିଆ କରାଯିବ, ଫେର ଅଚ୍ୟୁତର ନମ୍ବରକୁ ପଛକୁ ରଖି! ଏସବୁ କଥା ବିଶୁବାଈଙ୍କର କଳ୍ପନାର ବାହାରେ, ଅସାଧ କଥା।

ବସନ୍ତର ଫୁସୁରୁ ଫୁସୁରୁ କଥାରେ ବିରକ୍ତ ହୋଇ ସେ ସ୍ପଷ୍ଟ କହିଦେଲେ 'ତୋର ଯଦି ଏତେ ମନ ତେବେ ଯାଇ ନିଜେ କହ। ସେ ରାଘସ୍ବା କଥା ମୁଁ ଶୁଣିବାକୁ ଚାହେଁ ନାହିଁ।'

ମା' ଯଦି ଥରୁଟିଏ କଥାଟା ପକାନ୍ତା ତେବେ ବସନ୍ତ ଆଗକୁ ବଢ଼ିପାରନ୍ତା। ମାତ୍ର ନିଜେ ଆଗୁଆ ହୋଇ କଥାହେବାର ସାହସ ତା'ର ଅନେକ ଦିନରୁ ନଷ୍ଟ ହୋଇଯାଇଛି। ଏଣେ ସେ ଦୋହରା ସଂକଟରେ ଛନ୍ଦିହୋଇଗଲା। ଏଣେ ଘରେ କଥା ଆଗେଇ ପାରୁନାହିଁ। ସେପଟେ ରାଘସ୍ବାକୁ ମୁହଁ ଦେଖାଇବାକୁ ମୁହଁ ନାହିଁ।

ଏମିତି କୌଣସି ପ୍ରକାରେ କୌଣସି ସିଦ୍ଧାନ୍ତରେ ପହଞ୍ଚିନପାରି ବସନ୍ତ ରାଘସ୍ବା ଘରକୁ ଯିବା ଆସିବା ବନ୍ଦ କରିଦେଲା।

ସ୍ତ୍ରୀ ମାରଫତ୍‌ରେ ଦେଶାଇଜୀ ସବୁକଥା ଜାଣି ପାରିଲେ। ଥରେ ଚାକର ହାତରେ ଅଚ୍ୟୁତର ଦ୍ୱିତୀୟ ଚିଠିଟି ରାଘସ୍ବା ପାଖକୁ ପଠାଇ କହିଦେଲେ ଯେ ପଢ଼ିସାରି ଯେମିତି ଫେରାଇଦେବେ।

ଦିନେ ସାଙ୍ଗ ଘରକୁ ଯିବାପାଇଁ ସଜବାଜ ହୋଇ ବାହାରିଥିବା ଶାନ୍ତାକୁ ଘୂରିଫେରି ଦେଖିଲା, ପରେ ଚମ୍ପକ୍କା କହିଲା, 'ଶାନ୍ତା ଏପଟେ ଆସିଲୁ।' ତାକୁ ପାଖରେ ବସାଇ ତା'ର ବ୍ଲାଉଜ ଭିତରେ ଢାଙ୍କିରହିଥିବା ମୋତିମାନଙ୍କୁ ବାହାରକୁ ଟାଣି ଚମ୍ପା ପଚାରିଲା 'ଏଇଟା କିଏ ଦେଇଛି'।

'ମୋ, ସାଙ୍ଗର।'

'ସତ କହ।

'ସତ, ସାଙ୍ଗର'।

'କେଉଁ ସାଙ୍ଗର ?'

'ପଦ୍ମା।'

'ସେ କାହିଁକି ତୋତେ ଦେଲା ?'

'ମା', ପାଗଳ ହେଲୁ ନାଁ କଣ ? ଦି'ଦିନ ପିନ୍ଧିବାପାଇଁ ଦେଇଛି।'

'ଶାନ୍ତା, ସତ କହ! ତୋ'ରି ବାହାଘର ଚିନ୍ତାରେ ଘାରି ହୋଇ ମୋତେ ରାତିଦିନ ନିଦ ହୋଉନାହିଁ। ଏବେ ତୁ ଯଦି ମିଛ କହିବୁ, ତେବେ ଭବିଷ୍ୟତରେ ସୁଖ ପାଇବୁ ନାହିଁ।'

'ମା' ମିଛ କାହିଁକି କହିବି ? ପଦ୍ମାକୁ ଡାକି ପଚାର। ମୁଁ ଚୋରି କରିଛି ବୋଲି ତୁ ସନ୍ଦେହ କରୁଛୁ ନାଁ କଣ ?'

ଚମ୍ପକ୍କା କଣ କହିବ ଭାବି ପାରିଲାନାହିଁ। ରାଗିବାଲାଗି ତା'ଠାରେ ସାମର୍ଥ୍ୟ ନାହିଁ। ସ୍ୱାମୀ ପାଖରେ ଏ ବିଷୟରେ ନାଲିସ୍ କଲେ ସେ କେମିତି ଯାକୁ ଗ୍ରହଣ କରିବେ କେଜାଣି। ଶାନ୍ତା ମଧ୍ୟ ଏମିତି ଜବାବ ଦେଉଛି, ମୁହଁ ବନ୍ଦ ହୋଇଯିବ। ତା'ର ଯଦି ଆଗପରି ଶକ୍ତି ଥାନ୍ତା, ତେବେ ସେ ଝିଅ ଗାଲରେ ଦି'ଟା ଚଟକଣା

କସି ଦେଇଥାନ୍ତା । ମାତ୍ର ଏବେ ତା' ମଧ୍ୟ କରି ପାରୁନାହିଁ । ନିଜର ଅବ୍ୟକ୍ତ କ୍ରୋଧକୁ ଦେଖାଇବା ପାଇଁ ଚମ୍ପକ୍ଳା ଘୁଞ୍ଚିକରି ଶାନ୍ତା ପାଖକୁ ଆସି ତା' ବାହୁକୁ ଦି'ପ୍ରଳା ଚିମୁଟି ଦେଲା ।

'ମା', ଲାଗୁଛି, ଦିନୁଦିନ ତୁ ଧୀରେ ଧୀରେ ପାଗଳ ହୋଇ ଯାଉଛୁ । ବାପା ମନକୁ ମନ କଥା ହେଉଛନ୍ତି, ତୁ ପିଲାଙ୍କ ପରି ଚିମୁଟୁଛୁ !'

'କିଛି ନାଇଁ ମା', ଦୋଷ ମୋର ହୋଇଛି । ତୁ ଯା, ତୋ' ସାଙ୍ଗ ଘରକୁ ଯା ।'

ଏହା ଫଳରେ ଚମ୍ପକ୍ଳାକୁ ଶାନ୍ତି ମିଳିଲା ନାହିଁ । ଶାନ୍ତା ଚାଲିଗଲାପରେ ତା'ମନରେ ଗୋଟିଏ କଥା ଉଙ୍କିମାରିଲା, ସାଙ୍ଗ ଯଦି ତାକୁ ମାଳିଟି ଦେଇଛି, ତେବେ ସେ ବ୍ଲାଉଜ ଭିତରେ ତାକୁ ଲୁଚାଇଥିଲା କାହିଁକି ?.... ଯାହେଉ, ଏଣିକି ବିଶେଷ ଜାଗ୍ରତ ରହିବାକୁ ପଡ଼ିବ ଭାବି ସେ ଚୁପ୍ ରହିଲା ।

ତା'ର ସୌଭାଗ୍ୟ ହେତୁରୁ ବସନ୍ତର ଯିବା ଆସିବା ଏଣିକି ଊଣା ହୋଇଗଲା ।

# 35. ଫଳଶ୍ରୁତି

ଆଠମାସରେ ହିଁ ଚମ୍ପାର ବେଦନା ଆରମ୍ଭ ହେଲା। ଘରକୁ ଡକାହାଇ ଆସିଥିବା ଡାକ୍ତର ତା'ର ଦୁର୍ବଳତା ଦେଖି ତାକୁ ହସପିଟାଲ ନେଇଯିବାକୁ କହିଲେ। ଏମ୍ବୁଲେନ୍ସ ଡକାଇ ରାଘଵା ସ୍ତ୍ରୀକୁ ହସପିଟାଲ ନେଇଗଲା। ମା' ଘରଛାଡି ଯିବାବେଳେ ଶାନ୍ତା ଦୁଃଖରେ କାନ୍ଦି ପକାଇଲା। ତା'ର କାନ୍ଦଣା ଦେଖି ସେଇ ବେଦନା ଭିତରେ ଚମ୍ପକ୍କା କହିଲା, 'ମୁଁ ଫେରିବା ଯାଏଁ କୃଷ୍ଣମା' ଘରେ ରହିବୁ। ମାତ୍ର କୃଷ୍ଣମା' ଘରେ ରହିବା ପାଇଁ ଶାନ୍ତା ଆଦୌ ପ୍ରସ୍ତୁତ ହେଲାନାହିଁ। କହିଲା 'ମୋତେ ଡର ଲାଗିବନାହିଁ। ମୁଁ ଘରେ ଥିବି,' ପାଞ୍ଚ ଛଅ ବର୍ଷ ପରେ ଚମ୍ପା ପ୍ରଥମଥର ଘରୁ ବାହାରକୁ ବାହାରିଲା।

ପଡ଼ିଶାଘରର ପୁଅ ଭୀମସେନକୁ ସାଙ୍ଗରେ ଡାକିନେଇ ରାଘଵା ସ୍ତ୍ରୀକୁ ହସପିଟାଲ ନେଇଗଲା। ଚମ୍ପକ୍କାର ବିକଳ ଚିତ୍କାର ଶୁଣି ରାଘଵାର ହୃଦୟ ପାଣି ହୋଇଯାଇଥାଏ। ହୃଦୟ ବିଦାରକ ଦୃଶ୍ୟ ଦେଖି ତା'ର ପ୍ରତିଟି ଲୋମ ଟାଙ୍କୁରି ଉଠୁଥାଏ। ହସପିଟାଲ ବାହାରେ ଶୂନ୍ୟମନରେ ଭଗବାନଙ୍କୁ ପ୍ରାର୍ଥନା କରି ବସିରହିଲା।

ଚମ୍ପାର ଯଂତ୍ରଣା ଅସହନୀୟ ହୋଇ ଉଠିଲା। ଯନ୍ତ୍ରଣା ସହିବାର ସାମର୍ଥ୍ୟ ତା'ର ନଥାଏ। ଡାକ୍ତରମାନେ ନିଶ୍ଚେତକ ଔଷଧ ଦେବା ନଦେବା କଥା ନିଜନିଜ ଭିତରେ ପରାମର୍ଶ କଲେ। ଦୁର୍ବଳତା ହେତୁ କାଳେ ଖରାପ କିଛି ଘଟିବ ଭାବି ଦେଲେନାହିଁ। ଚମ୍ପକ୍କାର ବିସ୍ଫାରିତ ଦୃଷ୍ଟି ପ୍ରସୂତିଓ୍ୟାର୍ଡ଼ର ଡ଼ିଉଟିରେ ଥିବା ଡାକ୍ତରମାନଙ୍କୁ ବିଚଳିତ କରିପକାଇଲା।

ଏତେ ଯନ୍ତ୍ରଣା ମଧ୍ୟରେ ସୁଦ୍ଧା ସମ୍ଭାଳିନେଇ ଚମ୍ପକ୍କା ଉଠିବସିବାର ଚେଷ୍ଟାକଲା। ତାହାଦେଖି ଜଣେ ନର୍ସ ଦୌଡ଼ିଆସି ତାକୁ ଶୁଆଇଦେବାକୁ ଚେଷ୍ଟାକଲା, ମାତ୍ର ଚମ୍ପକ୍କା ଜିଦ୍ କରି ଉଠିବସି ପଚାରିଲା, ଇଏ କୁଆଡ଼େ ଗଲେ? ନର୍ସ କହିଲା, 'ବାହାରେ ଅଛନ୍ତି। ଅନ୍ୟ ଚିନ୍ତା କରନ୍ତୁ ନାହିଁ।'

'ଖାଲି ଥରେ ଦେଖା କରିବାକୁ ଚାହୁଁଛି। ଟିକିଏ ଭିତରକୁ ଡାକି ଦିଅନ୍ତୁ। କଥାଟିଏ କହିବାର ଅଛି କହି ଚିତ୍କାର କରି ଉଠିଲା।

ନିୟମବିରୁଦ୍ଧ ହେଲେ ସୁଦ୍ଧା ଡାକ୍ତରଙ୍କଠାରୁ ଅନୁମତି ନେଇ ନର୍ସ ବାହାରେ ଚିନ୍ତାରେ ବୁଡ଼ିଯାଇଥିବା ରାଘଵାକୁ କହିଲା, 'ଏବେ ଡେରି ଅଛି, ଆପଣଙ୍କୁ ଭିତରକୁ

ଡାକୁଛନ୍ତି; ଆପଣ ଭିତରକୁ ଯାଇପାରନ୍ତି। ରାଘଷାକୁ କାନ୍ଦ ଲାଗିଲା! ସେ ଏହା ଭାବି ଭିତରକୁ ଗଲା ଯେ ଅନ୍ତିମ ଦେଖା ପାଇଁ ଡାକୁଛି।

କୋହ ଚାପି ସେ ପଚାରିଲା 'କଣ ? କେମିତି ଅଛ ?'

ଚମ୍ପା ମୂହୂର୍ତ୍ତେ ରାଘଷାର ସ୍ୱର ଶୁଣିଲା। ତା'ର ଦୁଃଖ ପ୍ରତି ଧ୍ୟାନ ନଦେଇ ଯନ୍ତ୍ରଣାରେ ଛଟପଟ ହେଉ ହେଉ ପଚାରିଲା,' ତୁମେ ଏଇଠି ବସିଥିଲ ?'

'ହଁ।'

'ତୁମ ଅକଲକୁ କଣ ଯେ କହିବି। ଘରେ ଶାନ୍ତାକୁ ଏକୁଟିଆ ଛାଡ଼ି ଆସିଛ ନାଁ ? ଭୀମକୁ ଏଠି ରଖିଦେଇ ତୁମେ ଘରକୁ ଯାଅ। ମୋର କିଛି ହବନାହିଁ। ତୁମେ ଯଦି ଆସିବ ତାକୁ ସାଙ୍ଗରେ ନେଇକରି ଆସିବ।...ଯାଅ। ନଯିବ ଯଦି ମୋ ମୁଣ୍ଡ ଖାଇବ।' ରାଗରେ ଏତକ କହି ସେ ବିଛଣାକୁ ଆଉଜି ବସିଲା। ପୁଣି ବେଦନା ହେବାରୁ କାତର ହୋଇ ଅସ୍ଥିର ହୋଇପଡ଼ିଲା। ମୁହଁରେ ଗାମୁଛା ମାଡ଼ି ରାଘଷା କଇଁକଇଁ ହୋଇ କାନ୍ଦିଉଠିଲା। ନର୍ସ ଆସି ଜାମା ଟାଣିବାରୁ ସେ ନିଜକୁ ସମ୍ଭାଳିନେଇ ଆଖିପୋଛି ବାହାରକୁ ଆସିଲା।

'ଭୀମର୍ଣ୍ଣା, ତୁ ଏଇଠି ଥା। ଖାଇବା ପାଇଁ ଦେବି। ଯଦି କିଛି ଜଣାପଡ଼େ ସାଇକେଲରେ ଆସି ଖବର ଦେବୁ। ମୁଁ ଘଣ୍ଟେ ଦି'ଘଣ୍ଟା ଭିତରେ ଆସୁଛି।' ଭୀମସେନକୁ ଏତକ କହି ସେ ଘରକୁ ମୁହାଁଇଲା।

ଘରେ ଶାନ୍ତା କେତେ ସମୟ ଯାଏଁ ଏକା ବସି କାନ୍ଦିବାକୁ ଲାଗିଲା। ପରେ ଏକୁଟିଆ ଥିବାର ଅନୁଭବ କରି ତାକୁ ଡର ଲାଗିଲା। ଘରର ବାହାର କବାଟ ବନ୍ଦ କରିଦେଲା। ଅନ୍ୟ କାହାଘରେ ଯାଇ ତା'ର ବସିରହିବାକୁ ଇଚ୍ଛା ନଥାଏ। ପାଖପଡ଼ୋଶୀମାନଙ୍କ ପ୍ରତି ମନରେ ବିଦ୍ୱେଷ ଥାଏ। ନିଜଘରେ ଏକା ବସି କମ୍ପିଲେ ମଧ୍ୟ ତା'ର ଚିନ୍ତା ନାହିଁ। ପଡ଼ୋଶୀ କୃଷ୍ଣମା ଘରେ ପାଦ ପକାଇବିନାହିଁ। ମନେମନେ ଏହା ସ୍ଥିରକରି ମନ ଭୁଲାଇବା ପାଇଁ ଖଣ୍ଡିଏ ଉପନ୍ୟାସ ନେଇ ପଢ଼ିବାକୁ ଲାଗିଲା। ମାତ୍ର ମନ ଲାଗିଲାନାହିଁ।

ଗତଥର କୃଷ୍ଣମା ଘରକୁ ଯାଇ ସେ ଭାରି ଅପମାନିତ ହୋଇଥିଲା। ରାସ୍ତାରେ ତା'ର ବସନ୍ତ ସହିତ ଭେଟହେବା କଥା କାନକୁକାନ ରାଷ୍ଟ୍ରହୋଇ କାହାଣୀ ପାଲଟିଯାଇଥାଏ। କିଛି ଜାଣିଲାପରି ହୋଇ ଶାନ୍ତାର ସାଙ୍ଗମାନେ ମୋତିମାଳ କେଉଁଠୁ ଆସିଲା ପଚାରିଲାରୁ ବାପା ମୋ' ଜନ୍ମ ଦିନରେ ଗଢ଼ି ଦେଇଛନ୍ତି ବୋଲି ସେ ସାହସର ସହିତ ନିର୍ବିକାର ଭାବରେ କହିଦେଇଥାଏ। ସାଙ୍ଗମାନେ ମନେମନେ ଶାନ୍ତାକୁ ଈର୍ଷା କରନ୍ତି। ମାତ୍ର ତା' ଆଗରେ ସେକଥା କେହି କହିପାରନ୍ତି ନାହିଁ। କୌଣସି ନାଁ କୌଣସି ଭାବରେ ସଭିଏଁ ଏ ପ୍ରଶ୍ନ ପଚାରିଲେ। ସେ ସଭିଙ୍କୁ ସେଇ ଏକା ଉତ୍ତର ଦେଲା। ଏତେ ସୁନ୍ଦର ମୋତିମାଳକୁ ଦେଖି କେତେଜଣଙ୍କ ଛାତିରେ ନିଆଁ ଲାଗିଗଲା। କଥା ଅନେକ ଦୂର ଆଗେଇଯାଇଥିଲେ ହେଁ ଶାନ୍ତାକୁ କିଛି ମାଲୁମ ନଥାଏ। ସେ ଧୈର୍ଯ୍ୟ ଧରି ରହିଥାଏ। ତା'ର ଧୈର୍ଯ୍ୟ କେତେଜଣ ବୁଢ଼ୀଙ୍କ ପକ୍ଷରେ ଅସହ୍ୟ ହୋଇଉଠିଲା।

ସେମାନେ ନିଜନିଜ ଝିଅଙ୍କୁ ସାବଧାନ କରାଇ ଦେଲେ। ସାରାବାଈ ଉଦ୍‌ଗାର କଲା, 'ଆରେ' ଚମ୍ପାର ଝିଅ, ଆଉ କେହି ନୁହଁ।'

କୃଷ୍ଣମାର ଝିଅ ମନ୍ଦାକିନୀ ସହିତ ଶାନ୍ତାର ଭାରୀ ବନ୍ଧୁତା। ଦିହିଙ୍କର ବନ୍ଧୁତା ଭାଙ୍ଗିନପାରି କୃଷ୍ଣମା ଭିନ୍ନ ରାସ୍ତାଟିଏ ବାହାର କଲା।

ଥରେ କୃଷ୍ଣମା ଘରେ, ଫୁଲ-ପାନ-ସୁପାରୀର ବ୍ୟବସ୍ଥା ହୋଇଥାଏ। କୃଷ୍ଣମା ଶାନ୍ତାକୁ ଟିକିଏ ଆଗରୁ ଡାକି ଅନେକ କାମ କରାଇନେଲା। ଗୌରୀଙ୍କର ମଣ୍ଡପ ସଜାଇବାରେ ଶାନ୍ତା ତିନିଘଣ୍ଟା ପରିଶ୍ରମ କଲା। ଘର ଯେତେବେଳେ ଲୋକରେ ପୂରି ଉଠିଲା, ସେତେବେଳେ ଶାନ୍ତା ବ୍ଲାଉଜ ଭିତରେ ଲୁଚି ରହିଥିବା ମୋତିମାଳକୁ ବାହାରକୁ କାଢ଼ି ଏମିତିଭାବରେ ପିନ୍ଧିଲା ଯେମିତି ସଭିଙ୍କୁ ଦେଖାଯିବ। ଏହା ଦେଖି କୃଷ୍ଣମା ନିଜର ଚାରିପାଖରେ ସ୍ତ୍ରୀ ଲୋକମାନଙ୍କୁ ଚୁପ୍‌ରହିବାକୁ ଇଶାରାକରି ମଣ୍ଡପ ପାଖରେ ବସିଥିବା ଶାନ୍ତା ପାଖକୁ ଆସି କହିଲା, 'ଏବେ ଭଲ ଦିଶିଲା। ଗୌରୀ ମା' ମଣ୍ଡପରେ ଅଛନ୍ତି ନାଁ ମଣ୍ଡପ ବାହାରେ ବୁଝା ପଡୁନାହିଁ। ଏ ମୋତି ଠିକ୍ ତୋ' ଦେହ ରଙ୍ଗ ପରି, ନାଁ କଣ କହୁଛ ସମସ୍ତେ ?'

ଶାନ୍ତା ବଡ଼ ଲଜ୍ଜିତ ହୋଇ କପଟ ବିନୟ ଦେଖାଇ କହିଲା, 'ଆରେ ଛାଡ଼, ଇଏ ନକଲି ମୋତି, ଅସଲି ନୁହଁ।'

ଗହଳି ଭିତରୁ ଦି'ଜଣ ସ୍ତ୍ରୀଲୋକ ହସି ଉଠିଲେ। କେତେଜଣ କହିଲେ 'ଆମେ ତା' ହେଲେ ଏଥର ଯାଉଛୁଁ।' ଅଧିକାଂଶ ସ୍ତ୍ରୀଲୋକ ଏଇ ପରିହାସକୁ ଶୁଣିଲେ, ମାତ୍ର ଡରରେ ଚୁପ୍ ରହିଲେ। କେତେଜଣ ମୁହଁ ମୋଡ଼ିଲେ।

ଶାନ୍ତା ସେଠାରୁ ରାଗରେ ଘରକୁ ଫେରିଲା; ପ୍ରତିଜ୍ଞା କଲା ତା'ପରଠୁ ପାଖପଡ଼ୋଶୀ କାହାରି ଘରକୁ ଯିବନାହିଁ। ବଜାରରୁ ଭଲ ରେଶମ କନା ଆଣି ନିଜର ଭାବୀ-ଭାଇ ପାଇଁ ମୋଜା ଓ ସ୍ୱେଟର ବୁଣି, ଉପନ୍ୟାସ ପଢ଼ି ସମୟ ବିତାଇବାକୁ ଲାଗିଲା।

ଏ ସବୁ ଅନର୍ଥର ମୂଳ ବସନ୍ତ। ସେ ଏପଟେ ଆସିବା ବନ୍ଦ କରିଦେଇଛି। ଶାନ୍ତା ମନେମନେ ତାକୁ ଗାଳିଦେବାକୁ ଲାଗିଲା। ସ୍ଥିର କଲା, ଯଦି କେବେ ବସନ୍ତ ସହିତ ସାକ୍ଷାତ ହୁଏ ତେବେ ସେ ଏ ମାଳାକୁ ନିଶ୍ଚୟ ତା' ମୁହଁକୁ ଫୋପାଡ଼ି ଦେବ। ସେଥି ପାଇଁ ସେ ପନ୍ଦର ଦିନଯାଏଁ ବସନ୍ତର ବାଟ ଚାହିଁରହିଲା। ଗଳାରେ ଝୁଲୁଥିବା ମାଳ ତାକୁ କଣ୍ଟା ପରି ବିନ୍ଧିବାକୁ ଲାଗିଲା। ମାସେ ଗଡ଼ିଗଲେ ହେଁ ବସନ୍ତ ସେପଟେ ମୁହାଁଇଲା ନାହିଁ।

ଅଚାନକ ବସନ୍ତ ସେଇଦିନ ଆସିଲା।

ଅନେକ ଦିନରୁ ଶାନ୍ତାକୁ ଦେଖିନଥିବାରୁ କାଞ୍ଚନିକ ଚିନ୍ତାରେ ମନ ଅସ୍ଥିର ଥାଏ। ବିବାହ ବିଷୟରେ ବାପାଙ୍କ ସହ କଥାହେବାକୁ ଅସମର୍ଥ ହୋଇଥିବାରୁ ଏଆଡ଼େ ଆସିବା ସେ ଛାଡ଼ି ଦେଇଥିଲା। ଚମ୍ପାର ବେମାର ଖବର ଶୁଣି ସେଇ ବାହାନାରେ ଥରେ ଶାନ୍ତାର ମୁହଁ ଦେଖିବାପାଇଁ ଧାଇଁ ଆସିଥାଏ।

କବାଟ ବନ୍ଦ ଥାଏ। ଭିତରେ କେହି ଦିଶୁ ନଥାଏ। ବୋଧହୁଏ ଚମ୍ପାର ଶୋଇବା ଘରେ ସଭିଏଁ ଅଛନ୍ତି। ଏହା ଭାବି କବାଟ ଖୋଲି ସେ ମଝିଘରେ ପହଞ୍ଚିଲା।

ଚୁପ୍‌ଚାପ୍ ଭିତରକୁ ଆସିଥିବା ବସନ୍ତକୁ ଦେଖି ଶାନ୍ତା ପ୍ରଥମେ ବିବ୍ରତ ହୋଇଉଠିଲା। ଚମ୍ପାକା ହସପିଟାଲ ଯାଇଥିବା କଥା କହିସାରି ଏତେ ଦିନର ଅନୁଭବକୁ ମନେପକାଇ ରାଗିଉଠିଲା। ପୂର୍ବ ସିଦ୍ଧାନ୍ତ ଅନୁଯାୟୀ ଗଳାରୁ ହାର କାଢ଼ି ଫେରାଇଦେବାକୁ ବସିଲା। ସେ ହାର ହେତୁ ହୋଇଥିବା ତିକ୍ତ ଅନୁଭୂତିକୁ ଦି'ଚାରୋଟି ଖାପ୍‌ଛଡ଼ା ଶବ୍ଦରେ ବ୍ୟକ୍ତ କଲା।

ବସନ୍ତ କ୍ଷମା ଯାଚନା କରି ପାଦ ଛୁଇଁପକାଇଲା। ଏମିତି ଅନୁନୟ ବିନୟ କଲା ସତେଯେମିତି ତାଙ୍କର ବିବାହ ହୋଇସାରିଛି। ଭଗବାନଙ୍କ ଉପରେ ଚଢ଼ାହେବା ଫୁଲ ତାର ନିର୍ମାଲ୍ୟ ହୋଇଗଲା।

ହସପିଟାଲରୁ ଘରକୁ ଆସୁଥିବା ରାଘବା ଘରଠୁ ପ୍ରାୟ ଏକ ଫର୍ଲଙ୍ଗ ଦୂରରେ ଅଛି, ଦେଖିଲା ତାଙ୍କରି ଘରୁ ବସନ୍ତ ବାହାରି ଆସୁଛି। ତା'ର ଛାତି ଧଡ଼ପଡ଼ ହେବାକୁ ଲାଗିଲା। ସେ ଖରତର ହୋଇ ଆଗେଇ ଚାଲିଲା। ଦିନ ଦି'ପହର-ଗୋଟାଏ ବେଳର ମୁଣ୍ଡଫଟା ଖରା। ଦଉଡ଼ି ଦଉଡ଼ି ଆସି ରାଘବା ଘରେ ପଶିଲା। ମଝି ଘରେ ଥକ୍କା ହୋଇ ଭୟଭୀତ, ଶୂନ୍ୟ ଦୃଷ୍ଟିରେ କାନ୍ଥଆଡ଼େ ଚାହିଁରହିଥିବା ଝିଅକୁ ଦେଖିବାମାତ୍ରେ ସେ 'ରାଣ୍ଡୀ' ବୋଲି ଚିତ୍କାରକରି ତା'ର ବାହୁ ଧରି ଭୂଇଁ ଉପରେ କଚାଡ଼ିଦେଲା। ତା'ପରେ ଅନ୍ଧାରିଆ ଗାଲ ଓ ପିଠିରେ ବାଡ଼େଇ ଗଲା। ପରିଶେଷରେ ଥକି ଯାଇଁ ''ରାଣ୍ଡୀ, ତୁ ମୋତେ ବୁଡ଼େଇ ଦେଲୁ'' କହି କାନ୍ଥକୁ ଆଉଜି ମୁଣ୍ଡରେ ହାତଦେଇ ବସିପଡ଼ିଲା।

ଏତିକିବେଳେ ଦୁଆରେ ଶବ୍ଦ ହେଲା। ଭୀମସେନ ଭିତରକୁ ପଶି ଆସିଲା। ରାଘବାକୁ ଦେଖିବାମାତ୍ରେ ସୁଁ ସୁଁ କରି କାନ୍ଦି କହିଲା, 'ମାଇଁ ଚାଲିଗଲେ।'

ଶୁଣିବା ମାତ୍ରେ ଟାଙ୍ଗୀଟିଏ କରି ରାଘବା ହସପିଟାଲ ଦଉଡ଼ି ଆସିଲା। ପ୍ରସବ ସମୟରେ ହିଁ ସ୍ତ୍ରୀର ଜୀବନ ଯାଇଛି। ପ୍ରାଣଗଲାପରେ ପିଲା ଜନ୍ମ ହେଲା। ମଲା ପୁଅ।

ନିର୍ବିକାର ଭାବରେ ରାଘବା ସ୍ତ୍ରୀ ଓ ପୁଅର ଅନ୍ତିମ ସଂସ୍କାର କଲା। ପାଖଆଖ ଲୋକେ 'ଆମେ ସାଙ୍ଗରେ ଅଛୁ' ବୋଲି କହିବା ସତ୍ତ୍ୱେ ବି ସେ କାହାରି କଥା ଶୁଣିଲା ନାହିଁ। ସ୍ତ୍ରୀର ଶବ ପଛେ ପଛେ ପୁଅର ଶବକୁ କୋଳରେ ଧରି ହସପିଟାଲରୁ ଶ୍ମଶାନଯାଏଁ ଆସିଲା।

ସବୁ ବ୍ୟବସ୍ଥା କରିବାପାଇଁ ନିଜେ ଦେଶାଇଜୀ ଆସି ପହଞ୍ଚିଲେ। କିନ୍ତୁ ତା' ପୂର୍ବରୁ ରାଘବା କୋକେଇ ଆଦିର ବନ୍ଦୋବସ୍ତ କରିସାରିଥାଏ। ଯାହାକୁ ଯାହାକୁ

ଖବର ଦେବା କଥା ତା'ର ବ୍ୟବସ୍ଥା ନିଜେ କରିଥାଏ। ଦେଣ୍ଡାଇଜୀ ପହଞ୍ଚିଲାବେଳକୁ କେବଳ କୋକେଇରେ କାନ୍ଧ ଦେବା କାମ ବାକି।

କିଛି ବୁଝି ନପାରି ବସନ୍ତ ଚମ୍ପାଙ୍କାର ଅନ୍ତିମ ଦର୍ଶନ ପାଇଁ ହସପିଟାଲକୁ ଆସିଲା। ରତ୍ନା ଓ ଶାନ୍ତା ଅନେକ କାନ୍ଦିଲେ। ତାଙ୍କୁ ସାନ୍ତ୍ୱନା ଦେଉଁ ଦେଉଁ ବିଶ୍ୱୁବାଇ କାନ୍ଦି ପକାଇଲେ। ଗଙ୍ଗୱା ସାହସ ବାନ୍ଧି ଆଗେଇଆସି ଦିହିଙ୍କୁ ଛାତିରେ ଜାକି ସାନ୍ତ୍ୱନା ଦେଇ କହିଲା, 'ମୋତେ ନିଜର ମା' ବୋଲି ଭାବ।

ସେଇ ସମୟତକ ଗଙ୍ଗୱା ''ଶୋକଘରେ'' ରହିଲା। ଭାଇକୁ ଅନେକପ୍ରକାର ସାନ୍ତ୍ୱନା ଦେଲା। ରାଘଷା ସବୁ ଚୁପ୍‌ଚାପ ଶୁଣିଲା। ଏବେ ତା'ର ସାନ୍ତ୍ୱନାର ଆବଶ୍ୟକତା ନଥିଲା।

# ୩୬. ଦେଶାଈବାବୁଙ୍କ ନାମରେ ଖଣ୍ଡିଏ ଚିଠି

ପରଦିନ ରାତି ଦଶଟାରେ କିଙ୍ଗୀ ଯେତେବେଳେ ନିଜ ଘରକୁ ଶୋଇବାକୁ ଯିବାକୁ ବାହାରିଛି, ସେତେବେଳକୁ ରାଘପ୍ପା ଆପଣା ଶୋଇବା ଘରେ ଅନେକ ସମୟରୁ ବସି କଣ ଲେଖୁଥିଲା । କିଙ୍ଗୀକୁ ଡ଼ାକି କହିଲା, 'ଏ ଚିଠି କାଲି ସକାଳେ ନିଶ୍ଚୟ ଦେଶାଈଜୀଙ୍କୁ ଦେଇଦେବ । ଏବେ ଶୋଇଥିବେ, ଉଠେଇବ ନାହିଁ । କାଲି ଯାଇ ଦେଇଦେବ ।'

ସେଦିନ ରାତିରେ କିଙ୍ଗୀକୁ ସହଜ ନିଦ ହେଲାନାହିଁ । ସଭିଏଁ ରାଘପ୍ପାର ନିନ୍ଦା କରୁଛନ୍ତି, କିଙ୍ଗୀର ମଧ୍ୟ ତା'ପ୍ରତି ମମତା କିଞ୍ଚିତ କମିଯାଇଛି । ତା'ଛଡ଼ା ତା'ର ମନରେ ଏକପ୍ରକାର ଭୟ-ତା'ର ମନକୁ କଥାଟିଏ କୋରି ପକାଉଥାଏ ଯେ ଦୋଷୀକୁ ଦଣ୍ଡ ଏଇ ସଂସାରରେ ମିଳିଯାଏ । ଏତେକଥା ଆଖିଆଗରେ ଘଟିଯିବାପରେ ଭୟ ଜାତହେବା ସ୍ୱାଭାବିକ ନୁହଁକି ?

ପରଦିନ ଡ଼େରିରେ ନିଦ ଭାଙ୍ଗିଲା । ଉଠିବାମାତ୍ରେ ହାତମୁହଁ ଧୋଇ ଦେଶାଈଜୀଙ୍କ ଘରେ ସେ ଚିଠିଟି ଦେଇ ''ଶୋକ ଘର''କୁ ସହଳ ଚାଲିଲା ।

ସେ ଅଧାରାସ୍ତାରେ ପହଞ୍ଚିଛି ପଛରୁ ଦ୍ରୁତଗତିରେ ଦେଶାଈଜୀଙ୍କର ଟାଙ୍ଗା ଆସି ତା' ପାଖରେ ଅଟକିଗଲା । ଦେଶାଈଜୀ କହିଲେ, 'ମୁଁ ମଧ୍ୟ ସେଠାକୁ ଯାଉଛି । ଟାଙ୍ଗାକୁ ଉଠିଆସ ।' ଆଶ୍ଚର୍ଯ୍ୟଚକିତ କିଙ୍ଗୀ ଟାଙ୍ଗାରେ ଚଢ଼ିବସିଲା । ଦିହେଁ ରାଘପ୍ପା ଘରେ ପହଞ୍ଚିଲାବେଳକୁ ସକାଳ ପ୍ରାୟ ନଅଟା ବାଜିବ । ଚାରିଆଡ଼େ ଲୋକ ଜମା ହୋଇଯାଇଛନ୍ତି । ଭିତରୁ ସ୍ତ୍ରୀଲୋକମାନଙ୍କର କାନ୍ଦରୋଳ ଶୁଣା ଯାଉଥାଏ । ଦୁଆର ମୁହଁରେ ଜଣେ ସିପାହୀ ଠିଆହୋଇ ପହରା ଦେଉଥାଏ ।

ରାତିରେ ରତ୍ନା ଥରେ ଦି'ଥର କାତର ଧ୍ୱନି ଶୁଣିଥିଲା । ଶାଶୁ ନିଦରେ ବିଲବିଲେଇ ଉଠିବା ଶୁଣିଶୁଣି ତାର ଅଭ୍ୟାସ ହୋଇଯାଇଥିଲା । 'ଶୋକଘର' ବୋଲି ସେ ଡ଼ରରେ ସେମିତି ଶୋଇ ପଡ଼ିଲା ।

ଅନ୍ୟମାନେ ଥକ୍କା ହୋଇଥିବାରୁ ବେମାଲୁମ ଶୋଇଯାଇଥାନ୍ତି । ସବୁଦିନପରି ଗଙ୍ଗାଓ୍ୱା ଛ'ଟା ବେଳକୁ ଉଠିଲା । ଦେଖିଲା ଭାଇଘର କବାଟ ବନ୍ଦ । ସେ ଡ଼କାଡ଼କି କଲାନାହିଁ । ଆଠଟା ବାଜିଗଲେ ସୁଦ୍ଧା ରାଘପ୍ପା ବାହାରକୁ ନବାହାରିବାରୁ ତାକୁ

ଉଠାଇଦେବାପାଇଁ ଗଙ୍ଗୱା ରତ୍ନାକୁ ପଠାଇଲା । ଭିତରୁ ଛିଟିକିଣି ବନ୍ଦ, ଅନେକବେଳଯାଏଁ ଖଡ଼ଖଡ଼ କଲେ ମଧ୍ୟ କବାଟ ଖୋଲିଲା ନାହିଁ। ଶେଷରେ ଭୀମସେନକୁ ଡ଼କାଇ ପଛପଟ ଝରକାରେ ଚଢ଼ି ଦେଖିବାକୁ କହିଲା । ଝରକାର ଲାଲ ରଙ୍ଗ ହେତୁ ଭିତରର କିଛି ଦେଖା ନଯିବାରୁ ରତ୍ନା କାଚ ଭାଙ୍ଗିଦେବାକୁ କହିଲା । କାଚ ଭାଙ୍ଗି ଭିତରକୁ ଚାହିଁଲାବେଳକୁ ରାଘୱାର ଶବ କଡ଼ିରୁ ଝୁଲୁଥିବାର ଦେଖି ଭୀମସେନ ଠିଆହୋଇଥିବା ଜାଗାରୁ ପାଟିକରି ଡ଼େଇଁପଡ଼ିଲା । ସାଇରେ କଥାଟା ଜଣାଜଣି ହୋଇଯିବାମାତ୍ରେ ଲୋକେ ଅଜାଡ଼ି ପଡ଼ିଲେ ।

ସେତିକିବେଳକୁ ପୋଲିସ ଆସି ପହଞ୍ଚିଥାଏ । ଶବର କାମିଜ ପକେଟରୁ ଚିଠିଟିଏ ମିଳିଲା । ‘‘ଉପସ୍ଥିତ ସମସ୍ତଙ୍କୁ ମୁଁ ରାଘବେନ୍ଦ୍ରବାମନ ବିନ୍ଦୁଗୋଠୁ ଏହା ସୂଚିତ କରୁଛି ଯେ ମୁଁ ନିଜ ସ୍ତ୍ରୀର ମୃତ୍ୟୁଶୋକ ଏବଂ ଅନ୍ୟାନ୍ୟ ଚିନ୍ତାରେ ଅତିଷ୍ଠହୋଇ ପାପପୁଣ୍ୟ ବିଚାର ନକରି ଖୁସିରେ ନିଜ ଘରେ କଡ଼ିରୁ ଦଉଡ଼ିବାନ୍ଧି ଗଳାରେ ଫାଶିଲଗାଇ ମରୁଛି । ମୁଁ ଏହା ସ୍ୱେଚ୍ଛାରେ କରୁଛି । ଏଥିପାଇଁ କେହି ଦାୟୀ ନୁହଁନ୍ତି ବା କାହାକୁ ଦାୟୀ କରାଯିବନାହିଁ। କେହି ଦୁଃଖ କରିବେ ନାହିଁ। ମୋର ସଂସ୍କାର ପାଇଁ ଆମ ଗଳିମୋଡ଼ କାଠଗୋଦାମର ମାଲିକକୁ ମୁଁ ପନ୍ଦରଟଙ୍କା ଦେଇଛି କାଠ ପାଇଁ; ସେ ରସିଦ ଏ ଚିଠି ସହ ଅଛି । କେତେଦିନ ହେଲା ମୋତେ ଡ଼ରଲାଗୁଥିଲା ଯେ ମୁଁ ହୁଏତ ପାଗଳ ହୋଇଯିବି । ସେଥିପାଇଁ ତିନିମାସ ଆଗେ ମୁଁ ଏକ ‘ଉଇଲ’ ତିଆରି କରିଥିଲି, ମୁଁ ନିୟମକରି କହୁଛି ଏହାକୁ ମୋର ଯଥାର୍ଥ ‘ଉଇଲ’ ଭାବରେ ଯେପରି ଗ୍ରହଣ କରାଯାଏ । ‘ଉଇଲ’ ସିନ୍ଦୁକରେ ରଖିଛି । ତା’ର ଚାବି ଏଥିସହିତ ରହିଲା । ସିନ୍ଦୁକରେ ଶହେପଚସ୍ତରିଟଙ୍କା ଆଠଅଣା ଛଅ ପଇସା ସର୍ବମୋଟ ଅଛି । ଉଇଲ ଓ ଟଙ୍କାକୁ ମୋ, ଜୋଇଁ ଚିରଂଜୀବ କୃଷ୍ଣଜୀ ସ୍ୱାମୀରାୟ କୁଲକର୍ଣ୍ଣୀ ନିଜର ଅଧିକାରକୁ ନେବେ । ଏ ପଇସାରେ ମୋ ସ୍ତ୍ରୀର କ୍ରିୟାକର୍ମ କରାଯିବ । ସମସ୍ତ ଉତ୍ତରାଧିକାର ତାଙ୍କୁ ମିଳିବ । ଏସବୁ ମୁଁ ସଂପୂର୍ଣ୍ଣ ସଜ୍ଞାନରେ ଥାଇ ଲେଖୁଛି ଏବଂ ମୁଁ କୌଣସିପ୍ରକାର ମାଦକ ଦ୍ରବ୍ୟ ସେବନ କରିନାହିଁ।

ତଳେ ରାଘୱାର ଦସ୍ତଖତ ଓ ଆଗଦିନର ତାରିଖ ପଡ଼ିଥିଲା । କାଠଗୋଦାମର ରସିଦ ଉପରେ ମଧ୍ୟ ସେଇ ତାରିଖ ପଡ଼ିଥିଲା । କାଠଗୋଦାମବାଲା କହିଲା, ‘ରାଘୱାଜୀ ଟଙ୍କା ଦେଇ କହିଲେ ‘କାଲି ଦି’ ଗାଡ଼ି କାଠ ଦରକାର ।’ ମୁଁ ଭାବିଲି ସାରା ବର୍ଷର ଖର୍ଚ୍ଚ ପାଇଁ ଦରକାର, ତେଣୁ ସେ କହିଲା ମାତ୍ରେ କାଠ ପଠେଇ ଦିଆଯିବ ।’

ରାଘୱାର ଅନ୍ତିମପତ୍ର ଦେଖି ପୋଲିସବାଲା ଅଧିକ ଖୋଳତାଡ଼ କଲେନାହିଁ। କବାଟ ଭିତରୁ ବନ୍ଦଥିବାରୁ ସେମାନେ କବାଟ ଭାଙ୍ଗି ଭିତରେ ପଶିଥିଲେ; ତେଣୁ କୌଣସିପ୍ରକାର ସଂଦେହ କଲେ ନାହିଁ।

କିଙ୍ଗୀ ସନ୍ଦେହଭରା ଦୃଷ୍ଟିରେ ଦେଶାଇଜୀଙ୍କ ଆଡ଼କୁ ଚାହିଁଲା । ଦେଶାଇଜୀ କହିଲେ ‘ତୁମେ ଯେଉଁ ଚିଠି ନେଇ ଦେଇଥିଲ ତାହା ତୁମକୁ ଦେଖାଇବି । ସେକଥା ଏଠି ଉଠାଇବ ନାହିଁ। ତାହା ଫଳରେ ଭବିଷ୍ୟତରେ ବିପଦ ଆସିପାରେ ।’

ପୋଲିସ 'କାରଣ କଲମରେ' 'ପତ୍ନୀର ମୃତ୍ୟୁ ଓ ଅନ୍ୟାନ୍ୟ ଚିନ୍ତା' ବୋଲି ଲେଖି ଶବକୁ ଉତ୍ତରାଧିକାରୀ କିଟ୍ଟୀର ଦାୟିତ୍ୱରେ ଦେଲେ। ଶବକୁ ଦେଖି ଦେଶାଈଜୀ, ଯେମିତି କୌଣସି ଝିଅକୁ ଦେଖା ନଯାଏ ବୋଲି କହିଲେ। କିଟ୍ଟୀ ମଧ୍ୟ ଥରୁଟିଏ ମାତ୍ର ଡ଼ରିକରି ଚାହିଁଲା। ସେଇ ସୁନ୍ଦର ମୁହଁ ଏମିତି ଓଠ କାମୁଡ଼ି ଥାଏ ଯେମିତି କଳିକରିବାକୁ ପ୍ରସ୍ତୁତ ହୋଇଛି। ଗୋଟିଏ ଆଖି ଆରଆଖିଠାରୁ ଅଧିକ ବାହାରକୁ ବାହାରିପଡ଼ିଥାଏ।

ଆଉ କିଛି ନଭାବି ଶବ ପାଖକୁ କାହାକୁ ଆସିବାକୁ ନଦେଇ କିଟ୍ଟୀକୁ ତାଗିଦ କରି ଦେଶାଈଜୀ ପରବର୍ତ୍ତୀ କାମରେ ଲାଗିପଡ଼ିଲେ। ଘଣ୍ଟାକ ଭିତରେ ଶବ ଶ୍ମଶାନରେ ପହଞ୍ଚିଗଲା।

ବାରଦିନ ପରେ ଦେଶାଈଜୀ କିଟ୍ଟୀକୁ ଘରକୁ ଡ଼ାକି ରାଘପ୍ପା ପଠାଇଥିବା ଚିଠି ଦେଖାଇଲେ।

କ୍ଷେମ ଶ୍ରୀ ଧାରୱାଡ଼

ଶ୍ରୀମାନ ବାହାଦୂର ଦେଶାଈଜୀଙ୍କ ସେବାରେ ରାଘପ୍ପାର ସାଷ୍ଟାଙ୍ଗ ନମସ୍କାର। ଆପଣଙ୍କର ସ୍ନେହ ହେତୁ ଆପଣଙ୍କ ଆଗରେ ଦି'ପଦ କଥା କହିବି। ପରାଜୟକୁ ମୁଁ ଡ଼ରେ। ଏଠାରେ ମୁଁ ଏତକ କହିବାକୁ ଚାହେଁ ଯେ ମୁଁ ଆପଣଙ୍କଠାରେ ହାରିନାହିଁ। ଆପଣ ଅଚ୍ୟୁତର ଚିଠି ମୋପାଖକୁ ପଠାଇ ମୋତେ ଡ଼ରାଇବାର ପ୍ରୟାସ କରିଥିଲେ। ଯଦି ଆପଣ ଭାବିଥାନ୍ତି ଯେ ମୁଁ ତାଦ୍ୱାରା ଡ଼ରିଯାଇଛି, ତେବେ ତାହା ଠିକ୍ ହେବ, ନାହିଁ। ମୁଁ ତାହା ପ୍ରମାଣ କରି ଦେଖାଉଛି। ଆପଣ ଯଦି ମୋତେ ଖଳ ବୋଲି ଭାବୁଥାନ୍ତି ତେବେ ତହିଁରେ ମୋର କିଛି ଦୁଃଖ ନାହିଁ। ମୁଁ ନିଜ ସିଦ୍ଧାନ୍ତରେ ଚାଲୁଛି। ଆଜି ଆଦୌ ପଶ୍ଚାତ୍ତାପ ନକରି ପାପ-ପୁଣ୍ୟଠାରୁ ଉର୍ଦ୍ଧ୍ୱକୁ ଉଠି ସମଦୃଷ୍ଟିରେ ନିଜକୃତ କର୍ମକୁ ଦେଖୁଛି। ଆଜି ସେଇ ଦୃଷ୍ଟିକୋଣ ହଜିଯିବାରୁ ମୋତେ ଦୁଃଖ ଲାଗୁଛି। ଯେବେଠାରୁ ମୋତେ ସଦ୍‌ବିବେକ ପୀଡ଼ା ଦେବାକୁ ଆରମ୍ଭ କଲାଣି ସେବେଠାରୁ ମୋର ଶକ୍ତି ଯେପରି କମିଯାଇଛି। ଆଗପରି ନିଜରହୋଇ କାମ କରିପାରିବାର ଶକ୍ତି ଯଦି ମୋ'ଠାରେ ଥା'ନ୍ତା ତେବେ ଆଗକୁ ଘଟିବାକୁ ଯାଉଥିବା ଘଟଣା ଘଟନ୍ତା ନାହିଁ। ମୋ'ଠାରେ ଯେତେବେଳେ ସଦ୍‌ବିବେକବୁଦ୍ଧି ଜାଗ୍ରତ ହୋଇଛି, ସେତିକିବେଳେ ଆପଣ ଆପଣଙ୍କ ପୁଅ ଅଚ୍ୟୁତର ଚିଠି ପଠାଇ ମୋତେ ଭୂତକାଳ କଥା ମନେପକାଇ ତଳକୁ ଖସାଇଦେବାର ଚେଷ୍ଟାକଲେ। ମୁଁ ଯଦି ଆଗର ରାଘପ୍ପାହୋଇରହିଥାନ୍ତି ତେବେ ଆପଣଙ୍କର ଚିଠିପାଇ କେବେ ବିବ୍ରତ ହୋଇନଥାନ୍ତି। ବିବ୍ରତ ମୁଁ ଏବେମଧ୍ୟ ହେଉନାହିଁ। ସେ ଚିଠିର ବିଶେଷ କିଛି ମହତ୍ତ୍ୱ ନାହିଁ।

ଉଦାହରଣ ସ୍ୱରୂପ ଆପଣ ଚାହିଁଲେ ପୂନା ଯାଇ ଦଶବର୍ଷ ତଲାଶ କରନ୍ତୁ। ମୋର କ୍ଷତିହେଲାପରି କୌଣସି କଥାର ସଂଧାନ ସେଠାରେ ପାଇବେ ନାହିଁ। ଏକଥା ଆପଣଙ୍କୁ ମୁଁ ଲେଖିଦେଉଛି, ଆପଣ ଏଥିରୁ ସତକଥା ଜାଣିପାରିବେ। ଏକଥା ମଧ୍ୟ ଏଥିରୁ ସ୍ପଷ୍ଟ ହୋଇଯିବ ଯେ ମୋର ଆପଣଙ୍କୁ ଡ଼ରିବାର କୌଣସି କାରଣ

ନାହିଁ। ଏଥିରୁ ଆପଣ ମୋର ଖରାପ ଓ ଭଲ ଉଭୟ ଗୁଣର ସନ୍ଧାନ ପାଇବେ।

ଆମର ପିତୃଅର୍ଜିତ ସମସ୍ତ ସଂପତ୍ତି ବନ୍ଧା ପଡ଼ିଥିଲା। ଆମେମାନେ କୌଣସିପ୍ରକାରେ ଧାରୱାଡ଼ରେ ରହି ଦିଅକ୍ଷର ପଢ଼ିଲୁଁ। ଏଠାରେ ମୋତେ ଚାକିରୀ ନମିଳିବାରୁ ଭେଙ୍କଟ ପାଖକୁ ପୂନା ଯିବା କଥା ଆପଣ ଅଚ୍ୟୁତ ଚିଠିରୁ ଜାଣିପାରିଥିବେ। ସେତେବେଳକୁ ମୋର ବିବାହ ହେବାର ଦି' ବର୍ଷ ହେଲାଣି। କୌଣସି କାରଣରୁ (ହୁଏତ କାରଣ ଆପଣ ଜାଣିଥିବେ।) ଚାକିରି ପାଇବା ଆଗରୁ ମୋତେ ବିବାହ କରିବାକୁ ପଡ଼ିଲା। ବିବାହ ବର୍ଷ ହିଁ ଆମର ରତ୍ନାର ଜନ୍ମ। ରୋଜଗାର ଅଳ୍ପ। ଏମିତି ନିର୍ଦ୍ଧନ ଅବସ୍ଥାରେ ମୁଁ ଚାକିରୀ ଖୋଜି ପୂନା ଗଲି। ପୂନାରେ ଚାକିରୀ ପାଇଁ ବେଙ୍କରେ, ଦପ୍ତରରେ ଚକ୍କର କାଟିଲି। ଖବରକାଗଜର ବିଜ୍ଞାପନ ଉପରେ ଆଖି ପକାଏଁ। ଏମିତି ଭାବରେ ସେଠାରେ ସପ୍ତାହଟିଏ ବିତିଗଲା। ଚାକିରୀ ମିଳିବାର କୌଣସି ଆଶା ନଥାଏ। ଭେଙ୍କଟ ପରି ଚୌକିଦାର ହେବା ମୋ ପକ୍ଷରେ ସମ୍ଭବ ନଥିଲା।

ଭେଙ୍କଟ ଚେକ୍ ଭଙ୍ଗାଇଆଣିବାର ପରଦିନ ସକାଳୁ ମୁଁ ଖବରକାଗଜ କରେ ତାଜମୁଦ୍ଦିନ ଡ୍ରାଇଭର ବିଷୟରେ ଏକ ଖବର ପଢ଼ିଲି। ଖବରକାଗଜର କୋଣରେ ଛପାହୋଇଥିଲା ଯେ ସେ ଆଗଦିନ ଲକ୍ଷ୍ମୀ ରୋଡ଼୍‌ରେ ଏକ ବୁଢ଼ା ଉପରେ ମୋଟର ଚଢ଼ାଇଦେଇଥିବାରୁ ତାକୁ ପୋଲିସ ଧରିନେଇ ଯାଇଛି। ଭେଙ୍କଟ ରାଓ ଖବରକାଗଜ ପଢ଼ିବା ଲୋକ ନୁହେଁ। ଯଦିବା କେବେ ଭୁଲଭଟକାରେ ପଢ଼େ ତେବେ କୋଣରେ ଛପାହୋଇଥିବା ଖବର ପଢ଼ିବା ଅସମ୍ଭବ। ତେଣୁ ଏ ଦୁର୍ଘଟଣା ବିଷୟରେ ସେ ଜାଣିବା ସମ୍ଭବ ନୁହେଁ। ସୁବିଧା ଦେଖି ଲାଭଉଠାଇବାପାଇଁ ସାହସର ଆବଶ୍ୟକତା ପଡ଼େ। ଏଇ ସୁଯୋଗକୁ ମୁଁ ଆପଣାର ପେଟ ଖାତିରରେ ନଷ୍ଟ ହେବାକୁ ଦେଲି ନାହିଁ। ଯେତେବେଳେ ଭେଙ୍କଟ ପୂଜାକରିବସିଥାଏ, ସେତେବେଳେ ମୁଁ ତାକୁ ତାଜମୁଦ୍ଦିନ ଆସିଛି କହି ତା'ଠାରୁ ଚାବି ନେଇଆସି ଟଙ୍କା ଦି'ହଜାର ବାକ୍ସରୁ କାଢ଼ି ନେଲି। ଭଗବାନ ଆପଣଙ୍କୁ ଏମିତି ଅବସର ନଦିଅନ୍ତୁ ଯେତେବେଳେ ଆପଣ ନିଜର ସ୍ତ୍ରୀପିଲାଙ୍କୁ ଉପବାସ ରହୁଥିବାର ଦେଖିବେ। ସେପରି ପରିସ୍ଥିତିରେ ଏପରି କାମ କରୁଥିବା ଲୋକଙ୍କୁ ଅନାଦର ଦୃଷ୍ଟିରେ ଦେଖିବା ଉଚିତ ହେବ ନାହିଁ।

ମୁଁ ଜାଣିନଥିଲି ଯେ ଜାଲିଆତି ମାମଲା ହେବ। ଭେଙ୍କଟ ରାୟ ସେକଥା ଏକାବେଳକେ ଭୁଲିଯାଇଥିଲା। ମୁଁ ଧାରୱାଡ଼ ଫେରିଆସିଲି। ସପ୍ତାହକ ଭିତରେ ଭେଙ୍କଟର ଚିଠି ପାଇଲି; ଲେଖିଥାଏ ଜାଲିଆତି ମାମଲା, ତେଣୁ ପୋଲିସ ତାକୁ ହାଜତରେ ରଖିଛି। ପୂନା ଯିବାଲାଗି ଓକିଲ ସହ ପରାମର୍ଶ କଲି। କୌଣସି ପ୍ରକାରେ ଭେଙ୍କଟକୁ ଜେଲରୁ ମୁକୁଳାଇବା ଲାଗି ଜାମିନ ପାଇଁ ଆବଶ୍ୟକୀୟ କାଗଜପତ୍ର ତିଆରି କଲି। ମୋର ଭିଣୋଇ ସାହସ ଦେଖାଇ ଜାମିନ ଦେବାପାଇଁ ଆଗେଇ ଆସିଲେ, କାରଣ ମୁଁ ଜାମିନ ଦେବା ସମ୍ଭବ ନଥିଲା। ମୋର ଜମି ବନ୍ଧା ପଡ଼ିଥାଏ। ମୋ ପାଖରେ ଦି' ହଜାର ଟଙ୍କା ଯେମିତିସେମିତି ରହିଥାଏ। ସାଙ୍ଗରେ ସ୍ୱାମୀରାୟଙ୍କୁ ଘେନି ପୂନା ଗଲି। ସେଠାରେ ଯାଇ ଭେଙ୍କଟକୁ ଖଲାସ କଲି, ସ୍ୱାମୀରାୟ ତା ପାଇଁ ପାଞ୍ଚହଜାର

ଟଙ୍କାର ଜାମିନ ଦେଲେ। ତିନିହେଁ ଧାରୱାଡ଼ ଫେରିଲୁଁ। ସ୍ୱାମୀରାୟଙ୍କ ତଦାରଖରେ ଭେଙ୍କଟ ତାଙ୍କରି ଘରେ ରହିଲା।

ଭେଙ୍କଟର ବାଉଳା ସ୍ୱଭାବ ଦେଖି ବାହାରେ ସାହସ ଦେଖାଉଥିବା ସ୍ୱାମୀରାୟ ଭିତରେ ଭିତରେ ହୁଏତ ଡ଼ରିଲେ; କାହିଁକିନା ସେ ମୋତେ ନକହି ଭେଙ୍କଟଙ୍କୁ କହିଲେ "ମୁଁ ତୁମ ଦାୟିତ୍ୱ ନେଇଛି। ତୁମେ ତୁମ ଅଂଶ ମୋ ନାଁରେ ଲେଖିଦିଅ।" ଆପଣଙ୍କୁ ଯେଉଁ ଦାନପତ୍ର ମିଳିଛି ତାହାକୁ ପ୍ରସ୍ତୁତ କରି ସ୍ୱାମୀରାୟ ଭେଙ୍କଟଙ୍କୁ ଦସ୍ତଖତ୍ କରିବା ପାଇଁ କହିଲେ। ଭେଙ୍କଟ ଜିଦ୍ କଲା, "ଯଦି ଭାଇ ଦସ୍ତଖତ୍ କରେ ତେବେ ମୁଁ କରିବି।" ସ୍ୱାମୀରାୟ ମୋତେ ଡ଼ାକି କହିଲେ "ତୁମ ସମ୍ପତ୍ତି ଲୋଭରେ ନୁହଁ, କେବଳ ଭେଙ୍କଟର ସ୍ୱଭାବ ପାଇଁ ମୁଁ ଦାନପତ୍ରଟିଏ ଚାହୁଁଛି। ପାଞ୍ଚହଜାର ଟଙ୍କା କିଛି ଅଳ୍ପସଳ୍ପ ନୁହଁ। କଥାଟା ମୋର ଠିକ୍ ମନେହେଲା। ମୁଁ ଦସ୍ତଖତ କଲି। ତହୁଁ ଭେଙ୍କଟ ମଧ୍ୟ ଦସ୍ତଖତ କଲା।

ଏହାପରେ ମଧ୍ୟ ଭେଙ୍କଟର ଅସ୍ଥିରତା ବନ୍ଦ ହେଲାନାହିଁ। ସେ ଏକ ଅଦ୍ଭୁତ ଢ଼ଙ୍ଗର ମଣିଷ। କାହିଁକି କେଜାଣି ତାର ହଠାତ୍ ସମ୍ପତ୍ତି ଉପରେ ମୋହ ବସିଗଲା। "ମୋ ସମ୍ପତ୍ତି ମୋତେ ଧୋକା ଦେଇଦେଉଛନ୍ତି" କହି ସେ ରାତିଦିନ ଗଣ୍ଡଗୋଳ କଲା। ଆପଣଙ୍କ ପୁଅ ଯାହା ଅନୁମାନ କରିଛନ୍ତି ସେମିତି ଭାବରେ ମୁଁ ଦାନପତ୍ର ଫେରାଇ ଦେବାଲାଗି ଭେଙ୍କଟଙ୍କୁ କହିନଥିଲି। ମାତ୍ର ଦିନେ ସ୍ୱାମୀରାୟ ରାଗିଯାଇ ମୂଳ ଦାନପତ୍ରକୁ ତାର ନକଲ ମନେ କରି ଭେଙ୍କଟ ଉପରକୁ ଫୋପାଡ଼ି ଦେଲେ। ସେ ତାକୁ ନେଇ ଆମ ଘରକୁ ଆସିଲା। ତାହା ଓକିଲକୁ ଦେଖାଇ ତାର ସମ୍ପତ୍ତି ଫେରାଇଆଣିବାକୁ କହି ମୋତେ ଅସ୍ଥିର କରିପକାଇଲା। "କାଲି ଓକିଲ ପାଖ ଯିବି" କହି ମୁଁ ତାକୁ ଆଶ୍ୱାସନା ଦେଲି। ସେ କାଗଜକୁ ଦେଖିବାମାତ୍ରେ ମୁଁ ବୁଝିପାରିଲି ଯେ ଏହା ମୂଳର ନକଲ ନୁହଁ, ମୂଳ କାଗଜ। ଆଶ୍ଚର୍ଯ୍ୟ ହୋଇ ହେଉ ବା ଭେଙ୍କଟ ଉପରେ ବିରକ୍ତ ହୋଇପଡ଼ିଥିବା ହେତୁ ହେଉ, ମୋ ମୁହଁରୁ ବାହାରି ଗଲା, "ତୁ କାହିଁକି ବ୍ୟସ୍ତ ହେଉଛୁ? ଏଇଟି ମୂଳ ଦାନପତ୍ର, ସେ ଦେଇଦେଇଛନ୍ତି; ତୁ ଯାକୁ ଫେରାନାହିଁ। ତୋ ସମ୍ପତ୍ତି ତୋତେ ମିଳିଯିବ।" ମନେ ହେଲା ସେ ବାତୁଳ ଏକଥାରୁ ଟିକିଏ ସାନ୍ତ୍ୱନା ପାଇଲା। ରାତିରେ ଖିଆ ସରିଲା। ମୋ' ଦୁର୍ଭାଗ୍ୟ, ମୁଁ ତାକୁ ଆମରିଘରେ ଖୁଆଇ ଆମରିଘରେ ଶୁଆଇଲି। ସେଇ ରାତିରେ ଗାଁର ଜଣେ ଲୋକ ଆସି କବାଟ ଖଡ଼ଖଡ଼ କଲା। "ପୋଲିସ ଆସିଗଲା, ମୋତେ ଧରିବା ପାଇଁ ପୋଲିସ ଆସିଗଲା" କହି ଭେଙ୍କଟ ବାରିପଟକୁ ପଳାଇଆସିଲା। ସେ ଆଉ ଯିବ କୁଆଡ଼େ ଭାବି ମୁଁ ଆଗନ୍ତୁକଙ୍କୁ ସ୍ୱାଗତ କଲି। ମାତ୍ର ସେଇଦିନୁ ଭେଙ୍କଟ ଯେ ଯାଇଥିଲା ତାର ଖବର ଅନ୍ତର ଆପଣଙ୍କ ଚିଠିରୁ ଯାହା ଏବେ ମିଳିଲା।

ଭେଙ୍କଟ ପାଖରେ ସତ ଓ କଳ୍ପନା ଅଲଗା ନୁହଁ। ମୂଳ ଦାନପତ୍ର ମିଳିଯିବା ହେତୁ ବା ସତରେ ପୋଲିସ ଭୟରେ ସେ ପଳାଇଗଲା ଏହା ମୁଁ ବୁଝି ପାରିଲି

ନାହିଁ। ଦି'ଟା ଯାକ କଥା ସମ୍ଭବ ହୋଇପାରେ। ମାତ୍ର ଯାର ପରିଣାମ ହେଲା ମୋର ଭଉଣୀର ଘର ଉଜୁଡ଼ିଗଲା, ଭଉଣୀ ବିଧବା ହେଲା। ଆଉ ସେ ଘଟଣାର ବଦନାମ ମୋ'ରି ଉପରକୁ ଆସିଲା। ମୁଁ ନିଜେ ଯଦି ନିଜ ଭିଣୋଇକୁ ଉଜାଡ଼ କରିଥାନ୍ତି ତେବେ ମୋର ଦୁଃଖ ନଥାନ୍ତା। ଆପଣ ଶୁଣିଥିବେ, ପିଲା ମୁହଁରେ ଥନ ଚାକିଦେଇ ଶୋଇଥିବା ମା' ଜାଗିଉଠି ଦେଖିଲା ଯେ ପିଲା ଶ୍ୱାସରୁଦ୍ଧହୋଇ ମରିଯାଇଛି। ....ମୋର ଅବସ୍ଥା ସେଇପରି। ଯେତେବେଳେ ମୁଁ ଅସମର୍ଥ ଥିଲି, ସେତେବେଳେ ଏସବୁ ଘଟଣା ମୋ'ରି ଆଖି ଆଗରେ ଘଟିଯାଇଛି। ସେଇ ଦି'ହଜାର ଟଙ୍କାର କୁକର୍ମ ମୋର ପିଛା ଧରିଥାଏ। ସ୍ୱାମୀରାୟ ସହିତ ବନ୍ଧୁତା, ସେ ଥିବାବେଳେ ହିଁ ମାସକ ଭିତରେ ତୁଟିଗଲା। ସେ ଘାରିଘାରି ହୋଇ ମଲେ। ଆଗରୁ ଘର ଉଜାଡ଼ ହୋଇଯାଇଥିଲା। ସେଇ ଦି'ହଜାର ଟଙ୍କା ଦେଇ ମୁଁ କିଛି କରିବାକୁ ଚାହୁଁଥିଲି; କିନ୍ତୁ ଗଙ୍ଗଓ୍ୱା ମୋତେ କୁକୁର ପରି ଦୂର୍ ଦୂର୍ କରି ତଡ଼ିଦେଲା। ମୋ'ରି ଘରୁ ଭେଙ୍କଟ ଫେରାର ହୋଇ ଯାଇଥିବାରୁ ଓ ମୋ' ପ୍ରତି ଗଙ୍ଗଓ୍ୱା ଦ୍ୱେଷ ପୋଷଣ କରିବାର ଯଥେଷ୍ଟ ବଡ଼ କାରଣ ଥିଲା।

ଭଉଣୀଠାରୁ ମୁହଁ ଲୁଚାଇ ମୁଁ ଗାଁରେ ରହିବାକୁ ଆରମ୍ଭ କଲି। ବନ୍ଧା ପଡ଼ିଥିବା ଜମି ମୁକୁଳାଇ ବ୍ୟବସାୟ ଆରମ୍ଭ କଲି॥ ଘରର ପରିସ୍ଥିତି ସୁଧୁରି ଗଲା। ସୁଖରେ ଜୀବନ କାଟିବାକୁ ଲାଗିଲା। ନିଜ ଜୀବନରେ ଗୋଟିଏ ଆଦର୍ଶ ମାନିନେଲି-ଯଦି ଜୀବନରେ ପୁଣି କେବେ ହାରିବାକୁ ନଚାହେଁ, ତେବେ ଯେଉଁ କାମ ହାତକୁ ନେବି; ସେ କାମ ଯେପରି କାମ ହେଉନାଁ କାହିଁକି, ତାକୁ ପୂରା ନିଖୁଣ ଭାବରେ କରିବା ଦରକାର। କାମର ସଫଳତା ପାଇଁ ହାରଜିତ୍, ଭୟ ସଂକୋଚ ଆଦି ସବୁକିଛି ବିକାରକୁ ଛାଡ଼ିବାକୁ ପଡ଼ିବ। ଏଇ ବିଶ୍ୱାସରେ ମୁଁ ପ୍ରତ୍ୟେକ କାମରେ ନୀତି ଓ ଅନୀତି ପ୍ରଶ୍ନକୁ ଦୂରେଇ ରଖିଲି। ନିର୍ବିକାର ଭାବରେ କାମକୁ ପୂରା କରିବା ମୋ ଜୀବନର ନୀତି ହୋଇ ଗଲା। ସେଥିପାଇଁ ମୋତେ "ଭରାରି" ନାମ ମିଳିଥିଲା।

ଧାରଓ୍ୱାଡ଼କୁ ପୁଣି ଆସିଲା ପରେ ପୂର୍ଣ୍ଣପ୍ରଯତ୍ନ କରି ଚିରଞ୍ଜୀବ କୃଷ୍ଣକୁ ନିଜର ଝିଅ ଦେଲି। ମୋର ବହୁ ଉଦ୍ଦେଶ୍ୟ ମଧ୍ୟରୁ ଗୋଟିଏ ହେଲା ପୁରୁଣା କାହାଣୀକୁ ଶେଷ କରିଦେଇ ଗଙ୍ଗଓ୍ୱା ସହ ପୂର୍ବର ସମ୍ବନ୍ଧ ସ୍ଥାପନ କରିବା। ମାତ୍ର ତାର ଜିଦ୍ ଓ ଅହଂକାର ମୋର ଖଳପ୍ରକୃତି ପାଇଁ ଆହ୍ୱାନରେ ପରିଣତ ହେଲା। ତାର ତିରସ୍କାର ମୋ'ଭିତରେ ଜିଦ୍‌କୁ ଜନ୍ମଦେଲା। ମୁଁ ତା'ର କଥାକୁ କାଟିଦେଇ ଏ ବିବାହ କରାଇଲି। ସେ ବିବାହରେ ଆପଣଙ୍କୁ ମଧ୍ୟ ମଝିରେ ପୂରାଇଲି। ଆପଣ କଣ କେବେ ମନେ କରିନାହାନ୍ତି ଯେ ଏଥିରେ ଧୋକା ଦିଆଯାଉଛି ?

ଏହା ହେଲା ମୋର ଦ୍ୱିତୀୟ ପରାଜୟ କଥା। ମୋତେ ଜଣାଥିଲା ଯେ ବରପଣି ପାଇଁ ଟଙ୍କା ଅଭାବ ହୋଇଯିବ। ଚିରଂଜୀବ କୃଷ୍ଣର ଟଙ୍କା ଆପଣଙ୍କ ପାଖରେ ଜମା ଅଛି; ଏହା ଜାଣିଲା ପରେ ମୁଁ ଭାବିଲି ଯେ ପାଞ୍ଚଶହ ଟଙ୍କା ଆପଣଙ୍କଠାରୁ ପୂରା କରାଇନେବି। ଆପଣ ସେ ଫାନ୍ଦରେ ପାଦ ଦେଲେନାହିଁ।

ମାତ୍ର ଏଥିରେ ଆପଣ ମୋର ପ୍ରଶଂସା ନକରି ରହିପାରିବେ ନାହିଁ। କିନ୍ତୁ କରିବାକୁ ଯାଇଥିଲି କଥାଏ, କଲି ଆଉ କଥାଏ ! ମୋର ଜଣେ ଅତିଆପଣାର ଲୋକ ସେଇ ପାଞ୍ଚଶହକୁ ପୂରଣ କରିବାର ପ୍ରୟାସ ମୋର ଅଜଣାରେ କରି କାଳର ଗ୍ରାସ ହୋଇଗଲା। ସେ ବେଦନା ଏବେ ମଧ୍ୟ ଅନୁଭବ କରୁଛି। ମୋର ପତନ ବେଳେ ଏଇ ଦ୍ୱିତୀୟ ପରାଜୟ ମୋତେ ଭାଙ୍ଗିଦେଲା। ମୁଁ ଆଉରି କିଛି କରିପାରିଥାନ୍ତି। ମହବୁବର ମୃତ୍ୟୁ ଦୁଃଖ ଆପଣଙ୍କ ପରି ସମ୍ମାନିତ ବ୍ୟକ୍ତି ବୁଝିବେ ନାହିଁ। ମୋତେ ସେ ମାସ ତିନିଟାରେ ହିଁ ବୁଢ଼ା କରିଦେଲା। ମୋର କାର୍ଯ୍ୟକଳାପ ଶିଥିଳ ହୋଇ ପଡ଼ିଲା। ମୁଁ ଆଉ ଏକ ରାଘଷା ପାଲଟି ଗଲି। ମୋ' ମୁଠା ଢ଼ିଲା ହୋଇଗଲା।

ପାଣିରେ ପଥର ପକାଇ ଆମେ ଯଦି ଚାହୁଁ ଯେ ଲହରୀ ଆମଆଡ଼େ ଚାଲି ଆସୁ, ତେବେ ଲହରୀ କଣ ଆମ କଥା ଶୁଣିବ ? ମୁଁ ଦାର୍ଶନିକମାନଙ୍କ ପରି କଥା କହୁନାହିଁ। ଏହା ମୋର ଅନୁଭବର ସାରକଥା। ମୋ' କର୍ମର ଭୋଗଭାବରେ ଏ ପ୍ରଶ୍ନ ଚାରିବର୍ଷହେଲା ନିରବଚ୍ଛିନ୍ନ ଭାବରେ ମୋ' ଆଗରେ ଠିଆହୋଇଛି। କିଛି କରିବାକୁ ଯାଇଛି, ହୋଇଯାଇଛି ଅନ୍ୟକିଛି। ଏହା ପାଇଁ କିଏ ଦାୟୀ ହେବ ?....ଭୋଗିବା ଲୋକ କିଏ ? ମୁଁ ଅନୁଭବର କଥା କହୁଛି, ବେଦାନ୍ତ ନୁହଁ, ମାତ୍ର ଅନୁଭବହିଁ ବେଦାନ୍ତ ଆଡ଼କୁ ଯାଉଛି। ସେମିତି ଦେଖିଲେ ମୋର ମନ ଏବେ ନରମ ହୋଇଯାଇଛି। ପୁରୁଣା କଥାସବୁ ମନେକରି ମୁଁ ଏବେ ଦୁଃଖିତ ହେଉଛି। ମୁଁ ଅଶକ୍ତ ହୋଇପଡ଼ିଛି। ଦୈହିକ ଶକ୍ତି ଏବେବି କମିନାହିଁ। ମାତ୍ର ଏକ ଉଦ୍ଦେଶ୍ୟ ଆଡ଼େ ଲକ୍ଷ୍ୟରଖି ସଂଧାନ କରିବାର ଏକାଗ୍ରତା ଏବେ କମିକମି ଯାଉଛି।

ଏବେ ପରବର୍ତ୍ତୀ ଅନୁଭୂତି ଶୁଣନ୍ତୁ। ମୁଁ କାମରେ ଆଳସ୍ୟ ବୋଧ କରେନାହିଁ। ମାତ୍ର ଭୟ ଆରମ୍ଭ ହୋଇ ଯାଇଛି। କଥାଏ କରିବାକୁ ଯାଇ ଅନ୍ୟକଥା ହୋଇଗଲେ ତାର ଦାୟିତ୍ୱ ନେବ କିଏ ?-ଏଇ ପ୍ରଶ୍ନ ଦିନକୁ ଦିନ ତୀବ୍ରତର ରୂପରେ ଉଦ୍‌ଭାସିତ ହେବା ହେତୁ କାମ କରିବାବେଳେ ଅନାକାଂକ୍ଷିତ ପରିଣାମରେ ପହଞ୍ଚିବାର ଭୟ ଆରଂଭ ହୋଇଗଲା। ତେବେ କଣ ଛାଡ଼ିଦେବି ? କିନ୍ତୁ କାମ କରିବାକୁହିଁ ପଡ଼ିବ। ଏଥିପାଇଁ ପ୍ରଥମରୁ ଚିନ୍ତା କରି କାମ ଗ୍ରହଣ କରିବା କଥା ମୁଁ ଛାଡ଼ିଦେଲି। ପୂର୍ବସଂଚିତ ଭାବ ସ୍ୱଚ୍ଛନ୍ଦରେ ପ୍ରବାହିତ ହେବାକୁ ଲାଗିଲା। ନଚାହିଁଲେ ସୁଦ୍ଧା ମନରେ ନୂଆନୂଆ ଆକାଂକ୍ଷା ଜନ୍ମନେବାକୁ ଲାଗିଲା। ମୋର ଭୟର ମୂର୍ତ୍ତିମନ୍ତ ରୂପ ମୋର ଭଉଣୀକୁ ମୋ, ସଂପତ୍ତି ନମିଳୁ, ଏହି ଉଦ୍ଦେଶ୍ୟସାଧନପାଇଁ ପତ୍ନୀର ପ୍ରାଣକୁ ବିପଦ ମୁହଁକୁ ଠେଲିଦେଇ ପୁଅ ପାଇବା ପାଇଁ ପ୍ରଯତ୍ନ କରିଥିଲି। ଏଥିରେ ମୁଁ ଜିତିଯାଇଥିଲିଁ; ମାତ୍ର ଦୈବ ମୋର ବିରୋଧ କରିବାପାଇଁ ପ୍ରତିଜ୍ଞା କରିଥିଲା। ଏଥିରେ ମୋର କି ଚାରା ଅଛି !

ବଡ଼ ଦୁର୍ଦ୍ଦିନ ଭିତରେ ଆପଣ ସେ ଚିଠି ପଠାଇଥିଲେ। ତହିଁରେ ମୁଁ ଡ଼ରି ନଥିଲି। ପୁରୁଣା ସ୍ମୃତି ଅଧିକ ସ୍ପଷ୍ଟ ହୋଇପଡ଼ିଥିବା ହେତୁ ମୁଁ ଡ଼ରକୁଳା ପାଲଟିଗଲି। ମୋ, କାମର ପରିଣାମ ମୋ'ଇଚ୍ଛା ମୁତାବକ ହେଉ ନଥିବା ହେତୁ ମୋର ଭୟ

ହେବାକୁ ଲାଗିଲା। ମୋ' ଭଉଣୀ ଯେଉଁଦିନ ନିଜ ଘରୁ ଯାଇ ଆପଣଙ୍କ ଘରେ ଅଖିଆ ଅପିଆ ପହଞ୍ଚିଲା ସେଦିନ ଆପଣ କହିଥିବା ଭୟରେ ଝିଅକୁ ପଠାଇ ନଥିଲି। ପଠାଇଥିଲି, କାହିଁକିନାଁ ମୋ' ପରି ଲୋକ ମନରେ ଗଙ୍ଗୱା ପ୍ରତି ମାୟା ଜାତହୋଇଥିଲା। ସେ କଷ୍ଟ ପାଇଲେ ବି ମୁଁ ସହିଯାଇପାରେ, ମାତ୍ର ସେ ଉପାସ ରହିବ ଏହା ମୁଁ ସହିପାରିବି ନାହିଁ।

ମୋର ଶେଷ ପରାଜୟ ମୋର ସ୍ତ୍ରୀର ମୃତ୍ୟୁ। ମନେହେଉଛି ଭଗବାନ କେବେକେବେ ଦୁର୍ବୁଦ୍ଧି ମଧ୍ୟରୁହିଁ ସୁବୁଦ୍ଧି ପ୍ରଦାନ କରନ୍ତି। ମୁଁ ନିଜ ସ୍ତ୍ରୀକୁ ହଜାର ଭାବରେ ଭଲ ପାଇଥିଲି। ଆପଣ ହୁଏତ ତାହା ଅନୁଭବ କରିପାରିବେ ନାହିଁ। ମାତ୍ର ଏବେ ମୁଁ ବୁଝୁଛି, ହଜାର ଏକ ଗୁଣ ମଧ୍ୟ ସ୍ନେହ କରାଯାଇପାରେ। ମୁଁ ଯେତେବେଳେ ତା, ପ୍ରତି ଅନ୍ୟାୟ କରିଥିଲି, ଯେତେବେଳେ ସେ ଯଂତ୍ରଣା ସହିଥିଲା, ସବୁକିଛିକୁ ମୂକ ପରି ସହିଥିଲା ଓ ଶେଷରେ ଚାଲିଗଲା,ସେତେବେଳେ ମୋ, ପରି ଲୋକ ମନରେ ମଧ୍ୟ କରୁଣା, ମମତା, ମାୟା ଇତ୍ୟାଦି ପରିପୂର୍ଣ୍ଣଭାବରେ ଦେଖାଦେଲା ଅପାର ଦୟା, ସମୁଦ୍ରର ଲହରୀ ପରି ଉଠୁଥିବା ଦୟା; ମୋର ମନେ ହେଉଛି ଯେ ସାଧୁସନ୍ଥମାନେ ଏପରି ଭାବରେ ଭଗବାନଙ୍କୁ ପ୍ରେମ କରିଥିବେ କି ନାଁ ସନ୍ଦେହ। ଯେତେ ଲୁହ ବହୁ ପଛକେ ଏ ଦୟାର ସମାପ୍ତି ହେବନାହିଁ। ଦେହ ଏକ ହୋଇଗଲେ ସୁଦ୍ଧା ଏ ମମତାର ଶେଷ ହେବନାହିଁ। ମୁଁ କେବେ ଭାବିନଥିଲି ଯେ ମୋ'ରି ସ୍ତ୍ରୀ ପ୍ରତି ମୋ ମନରେ ଏତେ ଅପାର ଉନ୍ନତ ପ୍ରେମ ଜାତ ହୋଇ ଯିବ। ଅଥଚ ମୋର ବିବାହ ହୋଇଥିଲା କ୍ଷଣିକ ସୁଖ ଆଶାରୁ।

ଏବେ ଶେଷ କଥାକୁ ଆସୁଛି। ଆପଣଙ୍କ ପୁଅ ବସନ୍ତ ଦୃଢ଼ ବ୍ୟକ୍ତିତ୍ୱ-ସଂପନ୍ନ ପିଲା ନୁହଁ। ମାଡ଼କୁ ଡ଼ରିଯାଏ। ଆପଣଙ୍କର ସାନସାନ କ୍ଷତିକରି ମୋର ମନ ତୁଷ୍ଟ ହେଲାନାହିଁ। ସେ ଯଦି ଟିକିଏ ସାହସୀ ହୋଇଥାନ୍ତା ତେବେ ଆପଣ ମୋହର ଅସଲ ଚେହେରା ଦେଖିଥାନ୍ତେ। ଆପଣ ଦେଖୁଦେଖୁ ମୁଁ ନିଜ ଝିଅ ସହ ତାର ବିବାହ କରାଇ ତାର ଅଂଶ ଦିଆଇଦେବାପାଇଁ ଆପଣଙ୍କୁ କୋର୍ଟର କାଠଗଡ଼ାରେ ଠିଆନକରାଇ ଛାଡ଼ିନଥାନ୍ତି। ମାତ୍ର ଆପଣଙ୍କ ବସନ୍ତ ପରି ପ୍ରତିଦ୍ୱନ୍ଦ୍ୱୀକୁ ନେଇ ଅବାଟରେ ଚାଲିବା ମୋର ମୂର୍ଖତା ହୋଇଛି।

ବସନ୍ତକୁ ମୁଁ ଝିଅ ଦେବାକୁ ଚାହିଁଥିଲି। ମୁଁ ଯେତେବେଳେ ମୋ ସ୍ତ୍ରୀକୁ ହସପିଟାଲ ନେଇଯାଇଥାଏଁ ସେତେବେଳେ ସେ ମୋ ଝିଅକୁ ଲୁଣ୍ଠନ କରିଛି। ଏକଥା ଦିନେ ରାଷ୍ଟ୍ର ହୋଇଯିବ, ଏଥିରେ ସଂଦେହ ନାହିଁ। ମାତ୍ର ଏ ବିଷୟରେ ମୁଁ ଆପଣଙ୍କଠାରେ କୌଣସି ବିନତି କରିବାକୁ ଚାହେଁନାହିଁ। ଏତେ ଦିନ ହେଲା ମୁଁ ଆପଣଙ୍କ ସହିତ ଶତ୍ରୁତା କରିଛି। ଏବେ ଆପଣଙ୍କୁ ମଧ୍ୟ ଏକ ମଉକା ମିଳିଗଲା। ଏ ଭୁଲ୍ ଆୟୁଷ୍ମତୀ ଶାନ୍ତାର ଭୁଲ। ମୁଁ ମୋ ସ୍ତ୍ରୀକୁ ଲୁଣ୍ଠନ କରିଥିଲି, ମାତ୍ର ମୋ, ସ୍ତ୍ରୀ ରାଘଙ୍କାକୁ ଭଲ ପାଉଥିଲା। ମୋ ସ୍ତ୍ରୀ ଓ ମୋ ଝିଅ ମଧ୍ୟରେ ଆକାଶପାତାଳ ପ୍ରଭେଦ। ତାକୁ ତାର ଅବିବେକିତାର ମା'ସୁଲ ଦେବାକୁ ପଡ଼ିବ। ସେ ଯେତେବେଳେ ଚାହିଁବ

ମୋ ପାଖକୁ ଆସିପାରେ। ମୁଁ ଏଇ ଉଦାହରଣ ରଖି ଯାଉଛି।

ଆଜି ରାତି ଅଢ଼େଇଟା ବେଳକୁ ମୁଁ କର୍ମରୁ ନିବୃତ୍ତ ହେବି। ତାହା ପୂର୍ବରୁ ମୁଁ କୌଣସିଠାରେ ଯଦି ହାରିଥାଏଁ, ତାହା ଆପଣଙ୍କ ପାଖରେ ନୁହଁ, ଏହା ସ୍ପଷ୍ଟକରି କହିଯାଉଛି। ଏହା ମୋର ଅନ୍ତିମ କାର୍ଯ୍ୟ। ଦୟା ରଖିଥିବେ।

ଆପଣଙ୍କର ପୁରୁଣା ପ୍ରତିଦ୍ୱନ୍ଦୀ

ରାଘଷ୍ଠା

# 37. ଉପସଂହାର

ରାଘପ୍ପାର ମୃତ୍ୟୁର ଛଅମାସ ମଧ୍ୟରେ କିଟ୍ଟୀ ଘରର ବାତାବରଣ ବଦଳିଗଲା ।

ରାଘପ୍ପା ଉଇଲରେ ସ୍ପଷ୍ଟ ଲେଖିଦେଇଥିଲା ଯେ ମୋ, ଘରେ ଯଦି ପୁଅ ଜନ୍ମ ହୁଏ ତେବେ କୌଣସ ପ୍ରଶ୍ନ ଉଠୁନାହିଁ, ଯଦି ଝିଅ ଜନ୍ମହୁଏ ତା ହେଲେ 'ଦତ୍ତକ' ନିଏଁ ବା ନନିଏଁ ମୋ ସମ୍ପତ୍ତି ଆୟୁଷ୍ମାନ କୃଷ୍ଣକୁ ମିଳିବ । କୃଷ୍ଣକୁ ପୋଷ୍ୟପୁତ୍ର କରିବା କଥା; ମାତ୍ର ମୋର ଭୟ ହେଉଛି, ଯଦି ମୁଁ ପାଗଳ ହୋଇଯାଏଁ, ଫଳରେ ପୋଷ୍ୟ ନେଇନପାରେ, ତେବେ ମଧ୍ୟ ମୋର ସମ୍ପତ୍ତି କୃଷ୍ଣର ହେବ । ଏହାଛଡ଼ା ଏକଥା ମଧ୍ୟ ସ୍ପଷ୍ଟ କରି ଦେଇଥିଲା ଯେ ଭେଙ୍କଟ ରାଓ ତାର ଅଂଶ ଚାହିଁଲେ ତାକୁ ଦେଇଦିଆ-ଯିବ; ଶାନ୍ତାର ବିବାହ କରିଦିଆଯିବ; ଯେଉଁ ପିଲା ହେବ ତାକୁ ପାଳନ କରିବ । ସ୍ତ୍ରୀ ଯଦି ବଂଚେ ତେବେ ତାକୁ ମଧ୍ୟ ପାଳିବାକୁ ପଡ଼ିବ ।

ବ୍ରାହ୍ମଣମାନଙ୍କର ପରାମର୍ଶ ଅନୁସାରେ କିଟ୍ଟୀ ମାସେ ପର୍ଯ୍ୟନ୍ତ ରାଘପ୍ପାର ଘର ଛାଡ଼ିଦେଲା, ଓ ଶାନ୍ତାକୁ ନେଇ ଆପଣା ଘରେ ରଖିଲା । ତା'ପରେ ରାଘପ୍ପା ଘରେ ଗ୍ରହଶାନ୍ତି କରାଇ ସେ ସେଠାରେ ରହିବାକୁ ଲାଗିଲା । ଏଇ ସବୁ ଭୟାନକ ଘଟଣା କିଟ୍ଟୀ ମନରେ ହାତୁଡ଼ି ପାହାର ପିଟିଥିଲା; ତାର ଚିନ୍ତାଶକ୍ତି ଶିଥିଳ ହୋଇଯାଇଥିଲା । ଗୋଟିଏ ଡ଼ିଆଁରେ ସେ କର୍ମଠତା ଆଡ଼କୁ କୁଦିପଡ଼ିଲା । ଘରେ ଗ୍ରହଶାନ୍ତି-ମନ୍ତ୍ରୋଚ୍ଚାରଣର ଶୋରଗୋଳ ମଧ୍ୟରେ ଶାନ୍ତି ସ୍ଥାପିତ ହୋଇଗଲା । କର୍ମଠ ହୋଇପଡ଼ିବା ଫଳରେ ସେ ଅପାର ଆନନ୍ଦ ଲାଭକଲା । ସେ ଗଭୀର ଭାବରେ ଚିନ୍ତାକରିବା ଲୋକ ନୁହଁ । ଏବେ ସିନେମା ସ୍ଥାନରେ ସଂକୀର୍ତ୍ତନ ଓ ପୁରାଣ ଆସିଗଲା । ମାସେ ଦି'ମାସ ଛଡ଼ାରେ ସତ୍ୟନାରାୟଣ ପାଲା ହେବାକୁଲାଗିଲା । ଚା ଦୋକାନକୁ ଯିବା ପ୍ରାୟ ଏକାବେଳକେ ବନ୍ଦ ହୋଇ ଆସିଲା । ଜର୍ଜ ସହିତ ନାଁକୁ ମାତ୍ର ବନ୍ଧୁତା ଥାଏ । ତା'ଘରେ ମଧ୍ୟ ଚା ପିଇବା ବନ୍ଦ କରିଦେଲା । ବାଳ କାଟିପକାଇଲା ଓ ମଝିରେ ଚୁଟି ବଢ଼ାଇଲା । ଦେଢ଼ଅଣା ଦେଇ 'ଶାଳଗ୍ରାମ-ମହିମା' ନାମକ ମରାଠୀ ପୁସ୍ତକ କିଣି ତାକୁ ନିତିନିତି ପଢ଼ି ଶାଳଗ୍ରାମର ଅଭିଷେକ କରିବାକୁ ଲାଗିଲା । ପ୍ରତିଦିନ ସନ୍ଧ୍ୟାରେ ଅଧଘଣ୍ଟା ଜପ କରେ । କଚେରୀ ଓ ଦପ୍ତରରେ ଗପ ବନ୍ଦ ହୋଇଯିବାରୁ କାମ ଭଲ ହେବାକୁ ଲାଗିଲା । ଫଳରେ ଆଗେ ଯେଉଁ କଥା ବୁଝି ହେଉନଥିଲା,

ଏବେ ମନକୁମନ ବୁଝିହେଲା। ହାତରେ ପଇସା ରହିଲା। ବୈଦିକ ତେଜରେ ମୁହଁ ଚମକିଲା। ଦେହ ଟିକିଏ ପୂରି ଆସିଲା। ଏବେ କିଚ୍ଚୀ ଜୀବନରେ ଭାରସାମ୍ୟ ରକ୍ଷା ହେଲା।

କିଚ୍ଚୀ ଆପଣାର ସ୍ୱଭାବ ଓ ଆନ୍ତରିକ ମନୋବୃତ୍ତିକୁ ବୁଝିପାରିଲା। ସେ ସାମାନ୍ୟ ଲୋକ। ଏହାଠୁ ଆଗକୁ ଯିବା ତା'ପକ୍ଷରେ ସମ୍ଭବ ନଥିଲା। ଆଉରି କୋଡ଼ିଏ ବର୍ଷ ବିତିଯାଉ, ହେଲେ ତା'ଠି ବିଶେଷ କିଛି ପରିବର୍ତ୍ତନ ଆସିବାର ନୁହଁ।

ରତ୍ନାର ମୂଲ୍ୟ ଆଉରି କମିଗଲା। ମା' ବାପ ମଲାପରେ ମଧ୍ୟ 'ମୁଁ ତୋର ମା' ନୁହଁ ନାଁ କଣ ?-ଏକଥା କହିବା ପାଇଁ କେହି ଅଛି ଏହା ଜାଣି ସେ ଅଭିଭୂତ ହୋଇପଡ଼ିଲା। କେବେକେବେ ରାତିରେ ଦୁଧବାଟିଏ ଆଣି ଶାଶୁଙ୍କୁ ଶୋଇବା ପୂର୍ବରୁ ପିଇକରି ଶୋଇବାପାଇଁ ବଳାଏ। ସ୍ୱାମୀପ୍ରତି ସଭିଙ୍କର ଆଦର ଭାବ ଦେଖି ତା, ମନରେ ଅଧିକ ଆଦର ଜାତହେଲା। କିଚ୍ଚୀ ଖାଲି ପତି ନୁହଁ ଗୁରୁ ମଧ୍ୟ ପାଲଟିଗଲା। ଧୀରେଧୀରେ ରତ୍ନା ମୁହଁରେ ହଳଦୀ ଲଗାଇଲା, ତୁଳସୀରେ ପାଣି ଦେଲା। ପୁତ୍ରପ୍ରାପ୍ତି ପାଇଁ ଗଙ୍ଗମ୍ମା କହୁଥିବା କଥା ଉପରେ ଗୁରୁତ୍ୱ ଦେଲା।

ଅନାଥହୋଇ କାନ୍ଦୁଥିବା ରତ୍ନା ଓ ଶାନ୍ତାଙ୍କୁ ଗଙ୍ଗମ୍ମା ଆପଣାର ପିଲାପରି ଦେଖିଲା। ସେମାନଙ୍କର ଦାୟିତ୍ୱ ନେଲା। ରାଘପ୍ପାର ପ୍ରଚଣ୍ଡ ଅସ୍ତିତ୍ୱ ଘୁଞ୍ଚି ଯିବାରୁ ଗଙ୍ଗମ୍ମାକୁ ସବୁ ଶୂନ୍ୟ ଦିଶିଲା। ରାଘପ୍ପାର ଭୂତ ତାକୁ ଧରିବ ଏଇ ଭୟ ତାକୁ ଭିତରେ ଭିତରେ କେତେଦିନଯାଏଁ ଅତିଷ୍ଠ କରିପକାଇଲା। ପାଞ୍ଚତଦିନ ଯାଏଁ ଭୟଙ୍କର ସ୍ୱପ୍ନରେ ରାଘପ୍ପାକୁ ଦେଖିବାକୁ ପାଇଲା। ରାଘପ୍ପାର ଝିଅମାନଙ୍କୁ ସ୍ନେହଦେଇ ଗଙ୍ଗମ୍ମା ଏଇ ଭୟକୁ ତଡ଼ିଦେବାକୁ ଚାହିଁଲା। ଦେଶାଇଜୀ ଯେତେବେଳେ କହିଲେ 'ଗଙ୍ଗମ୍ମା ଏବେ ତୋର ସତରେ ଉଦାରମନା ହେବା ଉଚିତ' ସେତେବେଳେ ସେ କହିଲା, 'ଗୋପର୍ଣ୍ଣା, ମୋର ଏମାନେ କେହି ପର ନୁହନ୍ତି। ସେତେବେଳେ ସମୟ ଥିଲା ସେମିତି।' ଘରେ ସଭିଙ୍କ ଆଦର ପାଇ ମାସଟିଏ ଭିତରେ ତାକୁ ବହୁତ ଶାନ୍ତି ମିଳିଲା। ବଦ୍ରିନାଥ ଯିବାକୁ ବସିଥିବା ଗଙ୍ଗମ୍ମାର ମନ ଏବେ ଏ ସୁଖ ଦେଖି ସଂସାରମୁହଁ ହୋଇ ଗଲା। ସୌଭାଗ୍ୟକ୍ରମେ ଗଙ୍ଗାମାତା ନିଜେ ଆସି ସେଠାରେ ପହଞ୍ଚଗଲେ।

କାଶୀରେ ସେମାନେ ଯାହା ଘରେ ରହିଥିଲେ, ସେମାନଙ୍କ ଭିତରୁ ଦି'ଜଣ ରାମେଶ୍ୱର ବାହାରିଲେ। ରାସ୍ତାରେ ଆପଣାର ଯଜମାନମାନଙ୍କ ଘରେ ରହି ଦକ୍ଷିଣା ନେଇ ଧାରୱାଡ଼ରେ ଆସି ପହଞ୍ଚିଲେ। ସେମାନଙ୍କର ବିଶିଷ୍ଟ ଯଜମାନ ଦେଶାଇଜୀଙ୍କର ଘରଖୋଜି ସେମାନେ ପହଞ୍ଚିଲେ। ଦେଶାଇଜୀ ଗଙ୍ଗମ୍ମାକୁ କହିପଠାଇଲେ। ଗଙ୍ଗମ୍ମା କିଚ୍ଚୀ ସହିତ ଆସିଲା। ସେମାନଙ୍କୁ ରାତିରେ ଖାଇବା ପାଇଁ ନିମନ୍ତ୍ରଣକଲା। ଭୋଜନ ପରେ, କିଚ୍ଚୀ ହାତରୁ ସେମାନଙ୍କୁ ଟଙ୍କାଟିଏ ଦକ୍ଷିଣା ଦେଲା। ଆଠଅଣା ଦେଇ ବୋତଲେ ଗଙ୍ଗାଜଳ ପୂଜା କରିବା ପାଇଁ ରଖିଲା। ଏଇପରିଭାବରେ ଗଙ୍ଗାମାତା ସ୍ୱୟଂ ଆସି ଘରେ ପହଞ୍ଚିଲେ।

ଦେଶାଇଜୀଙ୍କର ଚିଠି ପାଇ ଅଚ୍ୟୁତ ରାଓ ପୂନା ନଯାଇ ଘରକୁ ଆସିଲା। ତା'ଠାରୁ ବସନ୍ତ ଆଗେ ବାହା ହେଉଥିବା କଥାରେ ସେ କୌଣସି ଆପତ୍ତି କଲାନାହିଁ। ଦେଶାଇଜୀ ବସନ୍ତକୁ ଶାନ୍ତାକୁ ବିବାହ କରିବା ପାଇଁ କହିବାରୁ ସେ ଖୁସିରେ ରାଜି ହୋଇଗଲା। ରାଘସ୍ୱାର ଅନ୍ତିମ ଇଚ୍ଛାକୁ ପୂରଣ କରିବା ପାଇଁ ଦେଶାଇଜୀ ଶାନ୍ତାକୁ ବହୂ କରିନେଲେ। ଏହା ଫଳରେ ଲୋକେ ତାଙ୍କୁ ସଚ୍ଚୋଟ ଓ ମହତ୍ ବୋଲି କହିଲେ। ବିବାହ ତାରିଖ ସ୍ଥିର ହୋଇ ଯିବା ପରେ ଅଚ୍ୟୁତ ପୂନା ଚାଲିଗଲା। ଏଥିରେ ବିଣୁବାଈ ଭାରୀ ଦୁଃଖିତା ହେଲେ ଓ ଅପମାନିତ ବୋଧ କଲେ। ଦଶଏକର ଜମିର ମାଲିକ ରାଘସ୍ୱାର ଝିଅ, ଆତ୍ମହତ୍ୟା କରିଥିବା ଲୋକର ଝିଅ ତାଙ୍କର ବହୂ ହେବ, ପାହୁଲାଟିଏ 'ବରଦକ୍ଷିଣା' ନାହିଁ। ପୁଣି ଅଚ୍ୟୁତ ଥାଉଁଥାଉଁ ବସନ୍ତର ଆଗ ବିବାହ ହେବା-ଏସବୁ କଥା ବିଣୁବାଈଙ୍କ ମନକୁ ଅସ୍ଥିର କରୁଥାଏ। ଥରେଥରେ ଖାଇସାରି ପାନ ଭାଙ୍ଗୁଭାଙ୍ଗୁ କାନ୍ଦିବସନ୍ତି। ଦେଶାଈଜୀ ତାଙ୍କୁ କେବେ ସାନ୍ତ୍ୱନା ଦେବାର ପ୍ରୟାସ କରନ୍ତି ନାହିଁ, କାରଣ ଏ କାନ୍ଦଣାରୁ କେବେ ନିବର୍ତ୍ତାଇ ହେବ ନାହିଁ।

ବିବାହ ସ୍ଥିର ହୋଇଯିବାପରେ ବସନ୍ତ ଦେଇଥିବା ମୋତିମାଳ ଓ ମହବୁବଜାନର 'ଚନ୍ଦ୍ରହାର'କୁ ବେକରେ ପିନ୍ଧି ଶାନ୍ତା ସାଇର ଝିଅମାନଙ୍କୁ ଦେଖା କରିବାକୁ ଗଲା।

ଦେଶାଇଜୀ କିଙ୍ଗୀ ଓ ଗଙ୍ଗୁଆ ଦୁହିଁଙ୍କୁ ବସାଇ ତାଙ୍କର ହିସାବ ପଢ଼ି ଶୁଣାଇଲେ ଓ ସ୍ପଷ୍ଟ କହିଲେ ଯେ ଏବେ ମୁଁ ଏ ପଇସାର ବୋଝ ବୋହିପାରିବିନାହିଁ। ଏଯାଏଁ ଯାହା ସବୁ ହୋଇଥିଲା ସେଥିପାଇଁ କିଙ୍ଗୀ କ୍ଷମା ମାଗିଲା। କହିଲା, 'ଏ ଟଙ୍କାକୁ କଣ କଲେ ଭଲହବ କହନ୍ତୁ। କରଜ ମୁଁ ସୁଝିଦେବି।' ଶୁଣି ଦେଶାଇଜୀ କହିଲେ ଋଣ ତୁରନ୍ତ ସୁଝିଦେବା ଦରକାର; ବାକି ଟଙ୍କା ଗଙ୍ଗୁଆ ନାମରେ ଡ଼ାକରେ ଜମା କରିଦେଲେ ଭଲହେବ। ସେଇପରି ହେଲା। ଗଙ୍ଗୁଆ ନାମରେ ବାରଶହ ଟଙ୍କା ଡ଼ାକଘରେ ରଖିଦିଆଗଲା ଓ ଅପର ପକ୍ଷରେ କିଙ୍ଗୀ ମଧ ଋଣମୁକ୍ତ ହୋଇଗଲା।

''ଜର୍ଜ ୱାଶିଂଟନ କମ୍ପାର ଗର୍ଣୀବ''ର କଠୋର ସତ୍ୟନିଷ୍ଠା ହେତୁ ଯୋଶୀରାମ ରାୟ କିପରି ଆପଣା ପଦରୁ ହଟିଲା ତାହା ଏକ ଲମ୍ବା କାହାଣୀ। ରାମରାୟ ବଦଳି ହୋଇ ଯିବାପରେ ଜର୍ଜ କାର୍ଯ୍ୟକାରୀ ହେଡ଼କ୍ଲର୍କ ହେଲା ଓ ପରେ ଉପରିସ୍ଥ ଅଧିକାରୀଙ୍କ ସମ୍ମତିକ୍ରମେ ସେ ହେଡ୍‌କ୍ଲର୍କ ପଦରେ ସ୍ଥାୟୀ ହୋଇଗଲା। ଷ୍ଟିଫେନ ପରେ ତାର ଆଉରି ପୁଅଟିଏ ହୋଇଛି। ସାମୁଏଲ ଓସାରମ୍ପା ସହିତ ରାସ୍ତାର ଦେଖାହେଲେ ସେ ସ୍ନେହରେ ପିଲାକୁ କୋଳକୁ ନିଏ ଓ ଗେଲ କରେ।

ପୂନାରେ ପହଞ୍ଚି ଅଚ୍ୟୁତ ଏଇ ଚିଠି ଲେଖିଲା।

କ୍ଷେମ ଶ୍ରୀ ପୂନା

ତୀର୍ଥରୂପ ଚରଣାରବିନ୍ଦରେ ଅଜସ୍ର ପ୍ରଣାମ। ମୁଁ କୁଶଳରେ ଅଛି। ମୋର ମୂର୍ଖତା ପାଇଁ ମୋତେ ଲାଜ ଲାଗୁଛି। ଯଦି ଟିକିଏ ବୁଦ୍ଧିଖଟେଇ କାମ କରିଥାନ୍ତି ତେବେ ବମ୍ବେରେ ବସି ବସି ଅଧେ ସମସ୍ୟାର ସମାଧାନ କରିପାରିଥାନ୍ତି। ବମ୍ବେରେ ମୋର କେତେଜଣ ଗୁଜୁରାଟୀ ଓ ମାରୱାଡ଼ି ବନ୍ଧୁ ଅଛନ୍ତି। ସେମାନଙ୍କର ବ୍ୟବହାର

ଓ ରୀତିନୀତି ସହିତ ମୁଁ ପରିଚିତ। ସେମାନେ ବହୁତ ଧନୀ ଓ ବ୍ୟବସାୟୀ ହୋଇଥିବାରୁ କାଇଦା କାନୁନକୁ ଭାରୀ ଡ଼ରନ୍ତି। ଏକଥା ଜାଣିବା ପରେ ସୁଦ୍ଧା ମୁଁ ଏହାର ସଦ୍‌ବ୍ୟବହାର କରିନାହିଁ।

ଶେଠ ତଖ୍ତ ମଲ ଏବେବି ପୂନାରେ ଅଛନ୍ତି। ତାଙ୍କ ସହିତ ଦେଖାହେଲା। ତାଙ୍କର ଭଲଭାବରେ ମନେ ଅଛି ଯେ ଏଠାରେ ତାଙ୍କ ପାଖରେ ଭେଙ୍କଟରାୟ ନାମରେ ଲୋକଟିଏ କାମ କରୁଥିଲା। ଜାଲ ଚେକ୍ ବିଷୟରେ ପଚାରିବାରୁ ସେ ଉପରଠାଉରିଆ ଭାବରେ ଜବାବ ଦେଲେ। କହିଲେ 'ମୁଁ ଭୁଲି ଯାଇଥିଲି।' ଚେକ୍ ଠିକ୍‌ଥିଲା। ସେଥିପାଇଁ କେଶ୍ ଉଠାଇଆଣିଲି। ତାଙ୍କୁ ମୁଁ ପରବର୍ତ୍ତୀ ଘଟଣାକଥା କହିଲିନାହିଁ। ଦରକାର ପଡ଼ିଲେ ପୁଣି ଯାଇ ସବୁକଥା ତାଙ୍କୁ କହି ତାଙ୍କ ତ୍ରୁଟି ଧରାଯାଇପାରେ।

ଏ ବିଷୟରେ ମୋର ସ୍ପଷ୍ଟ ଯୁକ୍ତି ହେଉଛି ହିସାବରେ କମ ବେଶୀ ହେବାରୁ ଶେଠଜୀ ଆଗପଛ ନବିଚାରି ପୋଲିସ୍ ରିପୋର୍ଟ କରିଦେଇଥିବା ସମ୍ଭବ। ପୋଲିସ ଯେତେବେଳେ ଅନୁସନ୍ଧାନ ଆରମ୍ଭ କଲା, ସେତେବେଳେ କଥା ତାଙ୍କରି ପୁଅ ଉପରକୁ ଆସୁଛି ଦେଖି ଶେଠଜୀ ତୁରନ୍ତ କେଶ ଉଠାଇ ନେଇଥିବା ଅସମ୍ଭବ ନୁହେଁ। ଶେଠମାନଙ୍କର ପୁଅମାନେ ପିଲାଦିନେ ପ୍ରାୟତଃ ଏମିତି ଗଲ୍‌ତି କରନ୍ତି। ମାତ୍ର ସେଇମାନେ ଯେତେବେଳେ ଟିକିଏ ବଡ଼ ହୋଇ ଯାନ୍ତି ସେତେବେଳେ ନିଜ ବାପର କାରବାରକୁ ବାପଠାରୁ ଅଧିକ ଯତ୍ନରେ ଚଳାନ୍ତି। ଏଇଟା ସେମାନଙ୍କ ଭିତରେ ସାଧାରଣ କଥା। ଏବେ ଶେଠର ଦୋକାନ ଆଗରେ ଶେଠଙ୍କ ନାଁଥିବା ବୋର୍ଡ଼ ସହିତ ତାଙ୍କ ପୁଅ ବାବୁଭାଇର ନାମରେ ମଧ୍ୟ ବୋର୍ଡ଼ ଟଙ୍ଗା ହୋଇଛି। ଶେଠ ବ୍ୟବସାୟୀ। ତାଙ୍କର ଇଚ୍ଛା ନଥିଲା ଯେ ତାଙ୍କରି ପୁଅ ସାକ୍ଷୀ ଦେବାପାଇଁ କ୍ରିମିନାଲ କୋର୍ଟର କାଠଗଡ଼ାରେ ଠିଆହେଉ। ଏହା ତାଙ୍କ ବ୍ୟବସାୟ-ଧର୍ମ ବିରୁଦ୍ଧ। ଏହା ଫଳରେ ତାଙ୍କର ସମ୍ମାନ ନଷ୍ଟ ହୋଇଥାନ୍ତା। ସେଥିପାଇଁ ମନେହୁଏ ଶେଠ୍ ଚେକ୍ ଠିକ୍‌ଥିଲା ତାଙ୍କରି ଭୁଲ୍ ହୋଇଛି କହି କୋର୍ଟକୁ ନଯାଇ ଅନ୍ୟ କୌଣସି ବାଟରେ ବିନାଗଣ୍ଡଗୋଳରେ ରକ୍ଷାପାଇଯାଇଥିବେ। ତାଜିମୁଦ୍ଦିନଙ୍କୁ ହୁଏତ ଭୟ ଦେଖାଇ କିମ୍ବା ତାର ପକେଟକୁ ଗରମ କରିଦେଇ ଦୂରେଇ ଦେଇଥିବେ। ମୋର ମନେହୁଏ ବିନା କାରଣରେ କେସ୍‌ର ତାରିଖ ଗଡ଼ାଇ, ମୂଳ କାରଣହିଁ ଭିତ୍ତିହୀନ ବୋଲି ପ୍ରମାଣ କରାଇ କେଶ୍‌କୁ ସେଇଠି ବନ୍ଦ କରାଇ ଦେଇଥିବେ।

ମୋତେ ପିଲାମନେକରି ଶେଠଜୀ ବିଶେଷ କଥାବାର୍ତ୍ତା ହେଲେ ନାହିଁ। ସେଇ ଅପମାନରେ ମୁଁ କଥା ଆଗକୁ ନବଢ଼ାଇ ସେଇଠି ଶେଷ କରିଦେଲି। ତେଣୁ ଆପଣଙ୍କୁ ବମ୍ବେ ଆସିବାକୁ ପଡ଼ିବ। ଶେଠ ଭଲଲୋକ। ମୋର ବିଶ୍ୱାସ, ଯଦି ତାଙ୍କୁ ମାଲୁମ ହୋଇଯାଏ ସେ ଚେକଦ୍ୱାରା କିପ୍ରକାର ଅନର୍ଥ ହୋଇଯାଇଛି, ତେବେ ସେ ନିଜେ ଆଗୁଆ ହୋଇ ସାହାଯ୍ୟ କରିବେ। ତାଙ୍କ କେଶ୍ ନମ୍ବର ଯଦି ଜାଣିହୁଏ ତେବେ ତାହାହିଁ ଯଥେଷ୍ଟ। ତାର ପତ୍ତା ମୁଁ ନିଜେ ବାହାର କରିନେବି।

ଭାବୁଛି, ସ୍ୱାମୀରାୟର ଯେଉଁ କ୍ଷତିହୋଇଛି ତାହାକୁ ଆମେ ସରକାରଙ୍କ ଠାରୁ

ପୂରଣ କରାଇ ନେଇପାରୁଁ। କାହିଁକି ନାଁ ଜାମିନ ଦେଇଥିବାରୁ ସରକାର ସ୍ୱାମୀରାୟଠାରୁ ପାଞ୍ଚହଜାର ଟଙ୍କା ଅସୁଲ କଲେ। ମାମଲା ଆଗେଇଥିଲେ ମିଛ ପ୍ରମାଣିତ ହୋଇଥାନ୍ତା। କେଶ ବନ୍ଦହେବାର କାରଣ ଓ ତାର ପରିଣାମ ଜଣାପଡ଼ିନଥିବାରୁ, ପୁଣି ରିଫଣ୍ଡ ପାଇଁ ଆବେଦନ କରାଯାଇନଥିବାରୁ ଟଙ୍କା ସରକାରଙ୍କଠାରେ ଏବେବି ଜମା ଅଛି। ସେଥିପାଇଁ ଏବେ ସ୍ୱାମୀରାୟର ଉତ୍ତରାଧିକାରୀ କୃଷ୍ଣଜୀଙ୍କ ପକ୍ଷରୁ ରିଫଣ୍ଡ ପାଇଁ ଅର୍ଜି କରାଯାଇପାରେ। ତା'ଛଡ଼ା ଭେଙ୍କଟରାୟ ଏବେ ଅଜ୍ଞାତବାସ କରିବାର ଆବଶ୍ୟକତା ନାହିଁ। ପୋଲିସକୁ ଭୟ ନକରି ସେ ଚଳପ୍ରଚଳ ହୋଇପାରେ।

ଏ କାମରେ ଆମର ଶେଠ ତଖ୍ତ ମଲର ସହାୟତା ଆବଶ୍ୟକ। ତାହା ପାଇବା ମୋ' ଦ୍ୱାରା ସମ୍ଭବ ହେବନାହିଁ। ସେଥିପାଇଁ ଦୟାକରି ଆପଣ ଆସିବେ। ମୋର ବିଶ୍ୱାସ, ଆପଣଙ୍କ ଦ୍ୱାରା ଏ କାମ ସଂପୂର୍ଣ୍ଣ ହୋଇପାରେ। ଆପଣ ଏଠାକୁ ଆସିଲେ ମୋର ଏଠାକାର ତରୁଣ ଓକିଲ ବନ୍ଧୁସହ ପରାମର୍ଶ କରି ଆବଶ୍ୟକ ପଡ଼ିଲେ ତାଙ୍କୁ ସାଙ୍ଗରେ ନେଇ ପୁନା ଯାଇପାରୁଁ। ମା'ଙ୍କୁ ଅଜସ୍ର ନମସ୍କାର। ସେ ମୋତେ ଅନେକ କରି କହୁଥିଲେ – ମୁଁ ଯେପରି ବସନ୍ତ ସହ ଏକାସମୟରେ ବିବାହ କରିବାକୁ ରାଜି ହୋଇଯାଏଁ। ବଡ଼ କଠୋର ଭାବରେ ମୁଁ ତାଙ୍କ କଥାକୁ ଏଡ଼ାଇ ଦେଇଛି। ସେ ବହୁତ ଦୁଃଖିତ ହୋଇଥିବେ। ତାଙ୍କୁ ସାନ୍ତ୍ୱନା ଦେବେ। ଆସନ୍ତା ଚିଠିରେ ତାଙ୍କଠାରୁ ଅନ୍ତତଃ ଦି'ଧାଡ଼ି ଲେଖାଇନେଇ ଚିଠି ଦେବେ। ଏହା ମୋର ବିନମ୍ର ପାର୍ଥନା। ଭାଇମାନଙ୍କୁ ଆଶୀର୍ବାଦ। ଆସିଲାବେଳେ ଆୟୁଷ୍ମାନ ପୁରୁଷୋତ୍ତମକୁ ସାଙ୍ଗରେ ଆଣିବେ।

(ଇତି)
ଅପଣଙ୍କର
ଅଚ୍ୟୁତରାଓ।

ଗୋଲ୍ଡେନ ଗ୍ରାଫିକ୍ସ, ସୂତାହାଟ, ଅକ୍ଷର-ବିନ୍ୟାସକୃତ, ଭାରତ ମୁଦ୍ରଣାଳୟ, ନବୀନ ସାହାଦ୍ରା, ଦିଲ୍ଲୀରେ ମୁଦ୍ରିତ।